# ଋତୁ ବଦଳୁଛି

[ଗଳ୍ପ ସଂକଳନ]

ଭିକାରୀ ପାଇକରାୟ

ପ୍ରକାଶକ

**ସମୁଦ୍ର ପ୍ରକାଶନୀ**

ଏମ୍-୨, ଏମ୍ଆଇଜି-୩୩୨, ସତ୍ୟସାଇ ଏନ୍‌କ୍ଲେଭ୍

କୋଳଥିଆ, ଖଣ୍ଡଗିରି, ଭୁବନେଶ୍ୱର

# ଋତୁ ବଦଳୁଛି

(ଗଳ୍ପ ସଂକଳନ)

**ଭିକାରୀ ପାଇକରାୟ**



**ପ୍ରକାଶକ :**
ସମୁଦ୍ର ପ୍ରକାଶନୀ
ଏମ୍-୨, ଏମ୍ଆଇଜି-୩୩୨, ସତ୍ୟସାଇ ଏନ୍‌କ୍ଲେଭ୍,
କୋଳଥିଆ, ଖଣ୍ଡଗିରି, ଭୁବନେଶ୍ୱର
ମୋ : ୦୯୮୬୧୪୩୯୫୦୧

ପ୍ରଥମ ପ୍ରକାଶ : ୨୦୦୮

ପ୍ରଚ୍ଛଦ : ତନୁଜା ମଲ୍ଲିକ

**ଅକ୍ଷର ସଜ୍ଜା :**
ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

**ମୁଦ୍ରଣ :**
ଗୁରୁ ଗୌରାଙ୍ଗ ପ୍ରେସ୍ ଟ୍ରଷ୍ଟ
ନୟାପଲ୍ଲୀ, ଭୁବନେଶ୍ୱର

ମୂଲ୍ୟ : ଟ.୧୦୦.୦୦

**RUTU BADALUCHI**
(Collection of Short Story)

**Writer**
Dr. Bhikari Paikaray

**Published by**
Samudra Prakashani
M-II, MIG-332, Satya Sai Enclave
Kolathia, Khandagiri, Bhubaneswar
Cell : 09861439501
Cover : **Tanuja Mallick**

**Laser Type Setting**
Sarala Graphics, Bhubaneswar

**Printed at**
Guru Gauranga Press Trust
Nayapalli, Bhubaneswar

First Edition : 2008

Price : Rs. **100.00**

# ଉତ୍ସର୍ଗ

ଯେଉଁ ବାପା ଓ ବୋଉଙ୍କ ନିକଟରେ
ଏ ସଂକଳନ ମୋଟେ ପହଞ୍ଚି ପାରିବ ନାହିଁ
ସେଇ ମାନଙ୍କ ସ୍ମୃତିରେ ।

ଭିକାରୀ

# କୃତଜ୍ଞତା

ମନର ଅଭିବ୍ୟକ୍ତି ଛାପା ଅକ୍ଷରରେ ଗୋଟେ ପ୍ରତିଷ୍ଠିତ ପତ୍ରିକାର ପୃଷ୍ଠାରେ ପ୍ରକାଶିତ ହେଲେ ଯେଉଁ ବିଚିତ୍ର ଅନୁଭୂତି ଏବଂ ଯୁଗପତ୍ ଆନନ୍ଦ ତାର ପ୍ରଥମ ସ୍ୱାଦ ମିଳିଥିଲା ରମାକାନ୍ତ ଜେନାଙ୍କ ଦ୍ୱାରା ସଂପାଦିତ ଓ ପ୍ରେରିତ ଗୋକର୍ଣ୍ଣିକା ଦେଖିବା ଦ୍ୱାରା । ସେଇଟା ବୋଧହୁଏ ୧୯୮୫-୮୬ ସମୟର କଥା । ସଠିକ୍ ଭାବେ ସମୟ ନିରୂପଣ କରିବା ଏଥିପାଇଁ ସମ୍ଭବ ହୋଇପାରୁନି ଯେ ତାର ଗୋଟିଏ କପି ମୋ ନିକଟରେ ନାହିଁ । ତା'ପରେ ଅନେକ ପତ୍ରିକାକୁ ପାଣ୍ଡୁଲିପି ପଠାଇଥିଲେ ମଧ୍ୟ ସଫଳତା ମିଳିନଥିଲା । ୧୯୯୦ ମସିହା ବୁଲାରେ ସ୍ନାତକୋତ୍ତର ଶିକ୍ଷା ସମୟରେ ଗୋଟେ ଦୋକାନରେ ପତ୍ରିକା ଖେଳାଉ ଖେଳାଉ  ସେ ସମୟର ବହୁଳ ଭାବେ ଆଦୃତ 'କଥା'ରେ 'ଋତୁ ବଦଳୁଛି' ଗଳ୍ପଟି ନଜରରେ ପଡ଼ିଲା । ସେଇ ଗଳ୍ପଟି ମୋର ଥିଲା ଏବଂ ତାହା 'ଚାରୁ ରାୟ' ଛଦ୍ମ ନାମରେ ପ୍ରକାଶିତ ହୋଇଥିଲା । ଗଳ୍ପଟି ସେଇ ସଂଖ୍ୟାର ଶେଷ ଗଳ୍ପ ଥିଲା, ତେବେ ସୂଚିପତ୍ରରେ ତାର ଉଲ୍ଲେଖ ନଥିଲା । ସେଇ ତ୍ରୁଟି ସମ୍ବନ୍ଧରେ ସଂପାଦକଙ୍କୁ ଜଣାଇବା ପରେ ସେ ତ୍ରୁଟି ସ୍ୱୀକାର କରି ମୋ ନିକଟ୍କୁ ସୌଜନ୍ୟ ପତ୍ରିକାଟିଏ ପଠାଇଥିଲେ ଏବଂ କିଛି ପାରିତୋଷିକ ମଧ୍ୟ ଦେଇଥିଲେ । ଏହାପରେ କେତୋଟି ଗଳ୍ପ ସେଇ ଚାରୁ ରାୟ ନାମରେ ପ୍ରକାଶ ପାଇଥିଲା । କିନ୍ତୁ ପତ୍ନୀ ପ୍ରତିଭା ଓ ବନ୍ଧୁ ବିପିନ ରାଉତ ନିଜ ନାମରେ ପ୍ରକାଶ ନିମନ୍ତେ ଉତ୍ସାହିତ କରିଥିଲେ । ତାପର ଠାରୁ ଗପ ଗୁଡ଼ିକ ନିଜ ନାମରେ ପଠାଇଥିଲି ଏବଂ ସେଗୁଡ଼ିକ ସଂପାଦକ ମାନଙ୍କ ଦ୍ୱାରା ଗୃହୀତ ହୋଇଥିଲା ।

୧୯୮୫-୮୬ ଠାରୁ ୨୦୦୮ ଏକ ଦୀର୍ଘ ସମୟ । ଏଇ ଭିତରେ ଗୋଟେ ସଂକଳନ କରିବା ନିମନ୍ତେ ପ୍ରୟାସ ଜାରି ରହିଥିଲେ ମଧ୍ୟ ଚାକିରି ନିମନ୍ତେ ଅଗମ୍ୟ ସ୍ଥାନରେ ଅବସ୍ଥାପନ ଓ ବାରମ୍ବାର ସ୍ଥାନ ପରିବର୍ତ୍ତନ ସେ ଚେଷ୍ଟାର ଫଳପ୍ରସୂ ନିମନ୍ତେ ଅନ୍ତରାୟ ଥିଲା ।

ଗଳ୍ପ ସଂକଳନ ପ୍ରକାଶନ ନିମନ୍ତେ ଯେଉଁମାନଙ୍କ ପ୍ରେରଣା ମୋତେ ଉତ୍ସାହିତ କରିଥିଲା ସେମାନେ ହେଲେ ପତ୍ନୀ ପ୍ରତିଭା, ପୁତ୍ର ସବ୍ୟସାଚୀ ଓ ବିକାଶ, ପ୍ରଜାତନ୍ତ୍ର ସାପ୍ତାହିକୀର ସହ ସଂପାଦକ ସୁରେଶ ପରିଡ଼ା, ବନ୍ଧୁ ପ୍ରଫୁଲ୍ଲ, ଉଦୟ ଭାସ୍କର, ଅଗ୍ରଜ

ପ୍ରତିମ ଡା. ନଗେନ୍ଦ୍ର ବିଶ୍ୱାଳ, ଅନୁଜ ପ୍ରତିମ ସୁଶାନ୍ତ ହରିଚନ୍ଦନ ସହକର୍ମୀ ମନୋରମା ଓ କିରଣ ।

'ସମ୍ବାଦ'ର ମହାପ୍ରବନ୍ଧକ ଗୌରହରି ଦାସ ତାଙ୍କ ବହୁମୂଲ୍ୟ ସମୟକୁ ବ୍ୟୟ କରି ଉତ୍ସାହିତ ଓ ସହଯୋଗ କରିବା ସଙ୍ଗେ ସଙ୍ଗେ ମୁଖବନ୍ଧ ଲେଖିଥିବାରୁ ତାଙ୍କ ନିକଟରେ କୃତଜ୍ଞ ।

ଏଥିରେ ସଂକଳିତ ଗଳ୍ପଗୁଡ଼ିକ ବିଭିନ୍ନ ସମୟରେ 'ଗୋକର୍ଣ୍ଣିକା', 'କଥା', 'ସମାରୋହ', 'ସାଗରିକା', 'ତୀର ତରଙ୍ଗ', 'ରାଷ୍ଟ୍ରଦୀପ', 'ପ୍ରଜାତନ୍ତ୍ର', 'ସାପ୍ତାହିକୀ'ରେ ପ୍ରକାଶିତ ହୋଇଛି । ପୁସ୍ତକ ପ୍ରକାଶ ଅବସରରେ ମୁଁ ଉପରୋକ୍ତ ପତ୍ରିକାର ସଂପାଦକମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି । ପ୍ରଚ୍ଛଦ ପାଇଁ ତନୁଜ ମଲ୍ଲିକଙ୍କୁ ଧନ୍ୟବାଦ ଓ ଶେଷରେ ଜାକିର ବାବୁଙ୍କ ଅଦମ୍ୟ ଚେଷ୍ଟା ଯୋଗୁଁ ସଂକଳନ ଠିକ୍ ସମୟରେ ଆତ୍ମ ପ୍ରକାଶ କଲା । ତାଙ୍କୁ କେବଳ ଧନ୍ୟବାଦ ଦେବା ଅତିରଂଜିତ ହେବ ।

- ଭିକାରୀ

# ମୁଖବନ୍ଧ

ଡାକ୍ତର ଭିକାରୀ ପାଇକରାୟଙ୍କୁ ମୁଁ ବିଳମ୍ବରେ ଜାଣିଲି । ଆଗରୁ ଗାଳ୍ପିକ ଚାରୁ ରାୟଙ୍କୁ ମୁଁ ଜାଣିଥିଲି । ତାଙ୍କର ଗଳ୍ପଗୁଡ଼ିକ ମୋତେ ଭଲ ଲାଗୁଥିଲା ବୋଲି ସେସବୁ ନିୟମିତ ବ୍ୟବଧାନରେ 'କଥା' ପତ୍ରିକାରେ ପ୍ରକାଶ ପାଇଁ ଦେଉଥିଲି । ଏବେ ବି ତାଙ୍କ ପାଣ୍ଡୁଲିପି ଗୁଡ଼ିକର ଚେହେରା ମୋର ମନେ ଅଛି । ଧଳା କାଗଜ ଉପରେ କେବେ ସବୁଜ ତ କେବେ ନାଲି ଅକ୍ଷରରେ ଲେଖା ସେସବୁ ପାଣ୍ଡୁଲିପି ପଢ଼ିଲାବେଳେ ମୋର ଧାରଣା ହେଉଥିଲା ଏ ଲେଖକ ଜଣକ ମୋଠାରୁ ବୟସରେ ସାନହୋଇଥିବେ । ପ୍ରଥମ କାରଣ, ଚାରୁ ରାୟ ନାମଟି ଆଧୁନିକ ଏବଂ ଦ୍ୱିତୀୟ କାରଣ, ତାଙ୍କ ଲିଖିତ ଗପରେ ପ୍ରଣୟର ହାଲୁକା ସ୍ପର୍ଶ ଅନୁଭୂତ ହେଉଥିଲା । ବହୁ ବର୍ଷ ପରେ ଜାଣିଲି ଯେ ଚାରୁ ରାୟ ଡାକ୍ତର ଭିକାରୀ ପାଇକରାୟଙ୍କ ଛଦ୍ମନାମ । ବୟସରେ ମୋଠାରୁ ସାନ ନୁହନ୍ତି ବରଂ ବଡ଼, ସ୍ୱଭାବରେ ପରିପକ୍ୱ । ପରିମାଣ ଦୃଷ୍ଟିରୁ କମ୍ ଗପ ଲେଖିଥିଲେ ବି ସେ ଜଣେ ସ୍ୱାଭାବିକ ଲେଖକ । ଗପ ଲେଖିବା ଲାଗି ତାଙ୍କୁ କସରତ କରିବାକୁ ପଡ଼େ ନାହିଁ । ଲେଖକଟିଏ କାହିଁକି ଗପ ବା କବିତା ଲେଖେ ଏ ନେଇ କୌଣସି ଗୋଟିଏ କଥା ଶେଷକଥା ରୂପେ ଏ ପର୍ଯ୍ୟନ୍ତ ଗୃହୀତ ହୋଇନାହିଁ । ମୁଁ ନିଜେ ମଧ୍ୟ କେତେଥର ଏହି ପ୍ରଶ୍ନର ଗୋଟେ ସଂକ୍ଷିପ୍ତ ଉତ୍ତର ଦେବାକୁ ଚେଷ୍ଟା କରିଛି, ମାତ୍ର ପାଇନାହିଁ । ଏପର୍ଯ୍ୟନ୍ତ ମୁଁ ଯେଉଁ ଗୋଟିଏ ମତକୁ ନିଜର ମତଭାବେ କହି ଆସିଛି, ତାହାହେଲା ଲେଖକ ଜଣକ ଯେଉଁ ଧରଣର ସମାଜ ଆଶା କରିଥାଏ, ସେଇ ଧରଣର ସମାଜ ପାଉନଥିବାରୁ ସେ ତା' କଳ୍ପନାରେ ଗୋଟେ ସମାନ୍ତରାଳ ସମାଜ ଗଢ଼େ । ଏହା କେତେକାଂଶରେ ଠିକ୍ ହୋଇପାରେ ମାତ୍ର ଷୋଳଅଣା ଠିକ୍ ନୁହେଁ । ଆଉ ଗୋଟିଏ ମତ, ଯାହା ନିର୍ମଳ ବର୍ମା କହୁଥିଲେ, ଲେଖକ ଅନ୍ୟ କିଛି ହୋଇ ନ ପାରିଲା ବୋଲି ଲେଖକ ହେଲା । ମାତ୍ର ଏଥିରେ ବିନୟ ଭାବ ବେଶି ଓ ସତ୍ୟ କମ୍ ଅଛି । ଭିକାରୀ ପାଇକରାୟ ଜଣେ ଡାକ୍ତର । ଆମ ସମାଜର ସବୁଠାରୁ ମେଧାବୀ ଛାତ୍ର ଡାକ୍ତରୀ ପଢନ୍ତି । ତେଣୁ କିଛି ହୋଇ ନ ପାରିବାର ଅଭିଯୋଗ ତାଙ୍କ ପାଇଁ ଆଦୌ ପ୍ରଯୋଜ୍ୟ ନୁହେଁ । ନୋବେଲ ବିଜେତା ଓରହାନ ପାମୁକ୍ କହିଛନ୍ତି ଯେ ଲୋକମାନେ କାଳେ ତାଙ୍କୁ ଭୁଲିଯିବେ ତେଣୁ ସାହିତ୍ୟ ସୃଷ୍ଟି କରିଯାଇଛନ୍ତି । ଗୋଟିଏ ବାକ୍ୟରେ କହିଲେ ଅମରତ୍ୱର ଇଚ୍ଛା । ଆଉ କେତେଜଣ କହିଛନ୍ତି, ଲେଖାଲେଖିରୁ ସେମାନଙ୍କୁ ଯେଉଁ ପ୍ରକାର ଆନନ୍ଦ ମିଳେ ତାହା

ଅନ୍ୟ କୌଣସିଠାରୁ ମିଳେ ନାହିଁ, ତେଣୁ ସେମାନେ ଲେଖନ୍ତି । ମୋ ବିଚାରରେ ଡାକ୍ତର ଭିକାରୀ ପାଇକରାୟଙ୍କ ପାଇଁ ଏହି ମତଟି ଯୁକ୍ତିଯୁକ୍ତ ।

ମୋତେ ତାଙ୍କର ଗପଗୁଡ଼ିକ ଭଲ ଲାଗେ । ଏହାର କାରଣ ହେଉଛି ସେ ଅନ୍ୟର କଥାକୁ ନିଜର କଥା ଭାବେ ଓ ନିଜର କଥାକୁ ଅନ୍ୟର କଥା ଭାବେ ଲେଖିପାରନ୍ତି । ସାଧାରଣତଃ ନିଜ କଥା ଲେଖିଲା ବେଳେ ଆମେ ଅଧିକ ପରିମାଣରେ ଆସକ୍ତ ହୋଇପଡୁ ଓ ଅନ୍ୟର ତଥା ଲେଖିଲାବେଳେ ସଂପୂର୍ଣ୍ଣ ଅନାସକ୍ତ ହୋଇପଡୁ । ଦୁଇଟିଯାକ ସମସ୍ୟା ସୃଷ୍ଟି କରେ । ମାତ୍ର ଡାକ୍ତର ପାଇକରାୟ ଏ କ୍ଷେତ୍ରରେ ସଫଳ ହୋଇଛନ୍ତି । ଏ ସଂକଳନରେ ସ୍ଥାନୀତ ଅଧିକାଂଶ ଗଳ୍ପର ମୁଖ୍ୟ ଚରିତ୍ର ସିଏ ନିଜେ । ମାତ୍ର ସେସବୁ ଗଳ୍ପ ସେ ଏମିତି ଲେଖିଛନ୍ତି ଯେ ତାଙ୍କ ସ୍ଥାନରେ ଆଉ କେହି ଥିଲେ ବି ଗପର ପରିଣତି ଓ ଗଳ୍ପ ନାୟକର ପ୍ରତିକ୍ରିୟା ସମାନ ପ୍ରକାରେ ହୋଇଥାଆନ୍ତା ।

ମାପଚୁପ ଆବେଗ, ସ୍ୱଚ୍ଛ ପ୍ରକାଶ ଭଂଗୀ ଓ ସାଂପ୍ରତିକ ବିଷୟବସ୍ତୁ ଗୁଡ଼ିକୁ ନେଇ ଭିକାରୀ ପାଇକରାୟଙ୍କ ଗଳ୍ପର ଜଗତ । ବିଶ୍ୱସନୀୟତା ତାଙ୍କର ବିଶେଷତ୍ୱ । ସେଥିପାଇଁ ସେ ଯେଉଁ ଗପଗୁଡ଼ିକ ଲେଖିଛନ୍ତି ତାହା ପ୍ରତ୍ୟେକଟି ଉଚ୍ଚକୋଟୀର ହୋଇପାରିଛି । ସେଥିରେ ଯୌବନର ପ୍ରେମ ପାଇଁ ଅନୁରାଗ, ବର୍ତ୍ତମାନର ଘୋସରା ଜୀବନ ପାଇଁ ଉଦାସୀନତା, ନଷ୍ଟ ହୋଇଯାଉଥିବା ମୂଲ୍ୟବୋଧ ପ୍ରତି ପ୍ରଚୁର ଭଲ ପାଇବା ଏବଂ ଭାଙ୍ଗିଯାଉଥିବା ସମ୍ପର୍କମାନଙ୍କ ପ୍ରତି ଶ୍ରଦ୍ଧା ସ୍ୱଷ୍ଟଭାବେ ଲକ୍ଷ୍ୟ କରିହୁଏ । ତାଙ୍କ ପରି ତାଙ୍କ ଗଳ୍ପର ଚରିତ୍ରମାନେ ମିତବାକ୍ ଏବଂ ସଂଯତ । ସମୟେ ସମୟେ ସେ କମ୍ ଶବ୍ଦ ବ୍ୟବହାର କରିଥିବା ପରି ଧାରଣା ହେଲେ ମଧ୍ୟ ଆବେଗ ତାହାର କ୍ଷତିପୂରଣ କରିପାରିଛି । 'ଋତୁ ବଦଳୁଛି' ଖୁବ୍ ବିଳମ୍ବରେ ପ୍ରକାଶ ପାଉଛି ଏବଂ ଡାକ୍ତର ଭିକାରୀ ପାଇକରାୟଙ୍କ ପ୍ରଚାର-ପ୍ରତିଷ୍ଠା ପ୍ରତି କୁଣ୍ଠା ହିଁ ଏହାର ଏକମାତ୍ର କାରଣ ।

ମୋର ଦୃଢ଼ ବିଶ୍ୱାସ, 'ଋତୁ ବଦଳୁଛି' ଡାକ୍ତର ପାଇକରାୟଙ୍କୁ ଓଡ଼ିଆ ଗଳ୍ପ ସାହିତ୍ୟ କ୍ଷେତ୍ରରେ ତାଙ୍କର ନ୍ୟାଯ୍ୟ ପ୍ରତିଷ୍ଠା ଆଣିଦେବ । ଏହି ସଂକଳନର ଲୋକପ୍ରିୟତା ତାଙ୍କୁ ଅଧିକ ଗପ ଲେଖିବାପାଇଁ ଏବଂ ନୂଆ ନୂଆ ସଂକଳନ ପ୍ରକାଶ ଲାଗି ଉତ୍ସାହିତ କରୁ, ଏହି ଶୁଭକାମନା ସହ ମୁଁ ତାଙ୍କୁ ଅଭିନନ୍ଦନ ଜଣାଉଛି ।

ଗୌରହରି ଦାସ

# ସୂଚୀ

# ଋତୁ ବଦଳୁଛି

ସନାତନକୁ ସତରେ କିଛି ଭଲ ଲାଗୁ ନଥିଲା । ଘର ଭିତରେ ଏପଟ ସେପଟ ହୋଇ ଦୀର୍ଘ ନିଃଶ୍ୱାସ ପକାଇବା, ଘରୁ ବାହାରକୁ ଆସି ଜହ୍ନ ଆଲୁଅକୁ ଗଛମାନଙ୍କ ଗହଳି ଯୋଗୁଁ ଦେଖି ନ ପାରୁଥିବା ଯନ୍ତ୍ରଣାରେ ଅତିଷ୍ଠ ହେବା, ରାସ୍ତାରେ ଚାଲୁ ଚାଲୁ କୌଣସି ଅଜଣା ସୁନ୍ଦରୀ ରମଣୀର କଳ୍ପନାରେ ନିର୍ଯାତିତ ହେବା ଏବଂ ଏହିପରି ଆହୁରି ଅନେକ ଜିନିଷରେ ନିମଗ୍ନ ହେବାଛଡ଼ା ଯେ ଆଉ କିଛି ଉନ୍ନତତର କାର୍ଯ୍ୟ କରାଯାଇପାରେ, ଏଇ ପରିବେଶରେ ତାହା ତା'ର ମସ୍ତିଷ୍କରେ ସ୍ଥାନ ପାଇ ନଥିଲା ।

କୌଣସି ଏକ ଜାତୀୟକରଣ ବ୍ୟାଙ୍କ୍‌ରେ କ୍ଷେତ୍ର ଅଧିକାରୀ ରୂପେ କାମ କରୁଥିବା ସନାତନ ସ୍ଥାନାନ୍ତର ନିର୍ଦ୍ଦେଶ ପାଇଲା ପୂର୍ବରୁ ତା' ନିଜ ଜନ୍ମସ୍ଥାନଠାରୁ ପ୍ରାୟ ଶହେ କିଲୋମିଟର ଦୂରରେ ଗୋଟେ ବ୍ୟାଙ୍କ୍‌ରେ କାମ କରୁଥିଲା । ତେଣୁ ସେ ପ୍ରତି ଶନିବାର ଦିନ ଯୋଗାଡ଼ କରି ଗାଆଁକୁ ଯାଇ ପାରୁଥିଲା ଏବଂ ଗାଆଁରେ ରବିବାର ଦିନଟି କଟାଇ ସୋମବାର ଦିନ ଫେରି ଆସୁଥିଲା । ଗାଆଁର ସର୍ବଶ୍ରେଷ୍ଠ ଆକର୍ଷଣ ଥିଲା ତାର ବୁଢ଼ୀ ମାଆଟି, ଯିଏ ସ୍ୱାମୀଙ୍କୁ ଅଳ୍ପ ବୟସରେ ହରାଇ ସନାତନକୁ ଶିଶୁ ଅବସ୍ଥାରୁ ଯୁବକତ୍ୱ ପ୍ରାପ୍ତ କରାଇବା ନିମନ୍ତେ ପ୍ରାଣାନ୍ତକ ଉଦ୍ୟମ କରିଥିଲେ । ଅବଶ୍ୟ ସନାତନକୁ ପାଠ ପଢ଼ିବାରେ ବା ପାଠ ପଢ଼ିସାରିବା ପରେ ଏଇ ଗୋଟିଏ ଲୋଭନୀୟ ଚାକିରି ପାଇବା ନିମନ୍ତେ ବିଶେଷ କିଛି ସହାୟତା କରି ନ ଥିଲେ । ଠିକ୍ ଭାବରେ କହିଲେ ସେଇ ଗାଉଁଲୀ ବିଧବା ସ୍ତ୍ରୀ ଲୋକଟିର ସେଭଳି ଜ୍ଞାନ ନ ଥିଲା ବା ଉଚ୍ଚାଭିଳାଷ ନଥିଲା । ତଥାପି ସନାତନ ବୁଢ଼ୀ ମାଆର କୌଣସି ଅଯତ୍ନ କରିବାକୁ ଚାହୁଁ ନଥିଲା । ତେଣୁ ଯେତେ ଅସୁବିଧା ହେଲେ ବି ସେ ଗାଆଁକୁ ଗୋଟିଏ ଦିନ ପାଇଁ ଯାଉଥିଲା । ସେଇ ଦିନଟିରେ ସେ କ୍ରମଶଃ ଲୋପ ପାଇଯାଉଥିବା ଆମ୍ବ ତୋଟା ବା ଶାଳ ଜଙ୍ଗଲ ଆଡ଼କୁ ଯାଇ ସାନ ଜୋର ନିକଟରେ ବସୁଥିଲା ବା ଜମି ଦେଖିବା ନାଆଁରେ ଗହୀର ବିଲରେ ଚାଷୀମାନଙ୍କ ସାଙ୍ଗରେ ଗପ କରୁଥିଲା । ସ୍ୱଚ୍ଛ ଜଳରେ ଖେଳୁଥିବା ମାଛମାନଙ୍କୁ ଲକ୍ଷ୍ୟ କରୁଥିଲା; ଆକାଶରେ ଉଡ଼ିଯାଉଥିବା ଧଳା ବଗମାନଙ୍କର ସଂଖ୍ୟା ଗଣୁଥିଲା ଅଥବା

ଦୂର ରାଜରାସ୍ତାରେ ଯାଉଥିବା ଦ୍ରୁତଗାମୀ ବସ୍ ଟ୍ରକ୍‌ମାନଙ୍କର ବେଗ ମନେ ମନେ ହିସାବ କରୁଥିଲା । ଏଇ ଗୋଟିଏ ଦିନରେ ସେ ମାଆ ମନରେ ଆନନ୍ଦ ଦେଇ ପାରୁଥିଲା ଏବଂ କ୍ରମବର୍ଦ୍ଧିଷ୍ଣୁ ଅସନ୍ତୋଷ ଏବଂ ଅଶାନ୍ତିରୁ ନିଜକୁ ଦୂରେଇ ରଖି ଏଯାବତ୍ କରିଥିବା ଭୁଲ୍‌ର ତାଲିକା ପ୍ରସ୍ତୁତ କରି ତା'ର ସଂଶୋଧନର ଉପାୟ ଖୋଜୁଥିଲା ।

ତା'ର ଭୁଲଗୁଡ଼ିକୁ ଏପଟ ସେପଟ କରି କେଉଁଟାକୁ ପ୍ରଥମସ୍ଥାନ ଦେବ, ଚିନ୍ତା କରିବା ପରେ ସିଦ୍ଧାନ୍ତରେ ଉପନୀତ ହୋଇଥିଲା ଯେ ବିବାହଟା ବୋଧହୁଏ ପ୍ରଥମ ସ୍ଥାନ ପାଇବ । କାରଣ ବାହାଘର ପରେ ନା ପାଇଛି ଶାନ୍ତି, ନା ସ୍ଥିରତା । ବାହାଘର ପୂର୍ବରୁ ସେ ଭଲ ପାଉଥିଲା ତା ଗାଆଁକୁ, ତା ବୁଢ଼ୀ ମାଆକୁ; ଅର୍ଥାଭାବ ଯୋଗୁଁ ଅସ୍ୱଚ୍ଛଳ ଜୀବନଯାପନ କରୁଥିବା ତା'ର ଏକମାତ୍ର ବଡ଼ ଭଉଣୀକୁ ଏବଂ ତା'ର ପରିବାରକୁ- ତା'ଛଡ଼ା ଜଣେ ସମ୍ପର୍କୀୟ ପିଉସାଙ୍କୁ ଯିଏ ତା'ର ପଢ଼ାପଢ଼ି ପାଇଁ କିଛି ସାହାଯ୍ୟ କରିଥିଲେ ଏବଂ ସମୟାନୁକ୍ରମେ ନିର୍ଦ୍ଧନ ହୋଇ ଯାଇଥିଲେ । ସ୍ୱଳ୍ପଭାଷୀ ଓ ଈଷତ୍ ବଦ୍‌ରାଗୀ ସନାତନର ଗାଆଁରେ କେହି ସାଙ୍ଗ ନଥିଲେ କହିଲେ ଚଳେ । ଯେଉଁମାନେ ଥିଲେ ସେମାନଙ୍କ ସହିତ ଦେଖାହେଲେ ସେମାନେ ତା'ଠୁ ଦୂରେଇ ଯିବାକୁ ଚେଷ୍ଟା କରୁଥିଲେ । କାରଣ ସେମାନେ ଭାବୁଥିଲେ, ଗୋଟେ ବଡ଼ ପଦବୀରେ ଥିବାରୁ ସନାତନ ସେମାନଙ୍କୁ ତଳେଇ କରି ଦେଖିବ । ତା'ଛଡ଼ା ସେମାନେ ଛୋଟିଆ ବ୍ୟବସାୟ ବା ଚାଷବାସ କରି ଚଳୁଥିଲେ । ଛୁଟି ଦିନଟିରେ ଗାଁ ପରିବେଶରେ ନିଜକୁ କିଛି ସମୟ ଆତ୍ମୀୟ କରିବା ପରେ ମାଆ ପାଖକୁ ଫେରି ଆସୁଥିଲା ସନାତନ । ତା ନିକଟରେ ବସି ଭଲମନ୍ଦ ବୁଝୁଥିଲା- ଗତ ସପ୍ତାହରେ କିଛି ଅସୁବିଧା ହୋଇଛି କି ନାହିଁ ଏବଂ ଆଗାମୀ ସପ୍ତାହର ସମ୍ଭାବ୍ୟ ଅସୁବିଧା । ମାଆ କିଛି ଅସୁବିଧା ହୋଇନି ବୋଲି ବାରମ୍ବାର କହିଲେ ସୁଦ୍ଧା ତା'ର ମନ ମାନୁ ନଥିଲା । ବଡ଼ ଭଉଣୀ କିଛି ଚିଠି ଦେଇଛି କି ନାହିଁ ଏବଂ ସିଏ କେବେ ଆସିବ ସେଇ ଖବର ପଚାରୁଥିଲା, ମାଆ ନାସ୍ତିସୂଚକ ମୁଣ୍ଡ ହଲାଇଲେ ସନାତନ ବିମର୍ଷ ହୋଇପଡୁଥିଲା । ସିଏ ଭାବୁଥିଲା ମାଆ ଏବଂ ଭଉଣୀ ବୋଧହୁଏ ରାଗ କରିଛନ୍ତି । ମାଆ ପ୍ରତି ତା'ର କର୍ତ୍ତବ୍ୟ ସିଏ କରିନି ବୋଲି ମନେ କରୁଥିଲା, ଯଦିଓ ମାଆ ତା ନିକଟରେ ଯାଇ ରହିବା ପାଇଁ ଅନୁରୋଧକୁ ପ୍ରତ୍ୟାଖାନ କରୁଥିଲେ ବାରମ୍ବାର । ଥରଟିଏ ମାତ୍ର ମାଆ ଯାଇ ରହିଥିଲା ତା ନିକଟରେ ନୂଆ ବୋହୂଟିକୁ ସାହାଯ୍ୟ କରିବା ପାଇଁ । ତାଙ୍କ ମନରେ ଧାରଣା ହୋଇଥିଲା- ବୋହୂ ବୋଧହୁଏ ଘରକାମ ଜାଣିନି ଅଥବା ସଂସାର ବିଷୟରେ ଅନଭିଜ୍ଞା ପୁଷ୍ପା ସନାତନର ଠିକ୍ ଯତ୍ନ ନେଇ ପାରିବନି । ସହରର ଭିନ୍ନ ପରିବେଶରେ ବଢ଼ିଥିବା ପୁଷ୍ପା କିନ୍ତୁ ନିଜକୁ ରୁଚିଶୀଳା ଏବଂ ପ୍ରଗତିବାଦୀ ମନେ କରୁଥିଲା । ବୋଉର ପ୍ରାତଃ ସ୍ନାନକୁ ମଫସଲୀ ଓ ଗାଧୋଇବା ପରେ ରନ୍ଧନକୁ

କୁସଂସ୍କାରର ଆଖ୍ୟା ଦେଇଥିଲା । ସନାତନର ବାରମ୍ବାର ବୋଉ ଡାକ ତାକୁ ବିବ୍ରତ ଏବଂ ଅସଂଯମୀ କରି ପକାଉଥିଲା । ବିଛଣାରେ ପଡୁ ପଡୁ ନିଦଯାଉଥିବା ସନାତନକୁ ପୁଷ୍ପା ଯେଉଁଭଳି ଆକ୍ଷେପ କରୁଥିଲା ତା'ର ସାରମର୍ମ ହେଲା- ଯଦି ଏତେ ମାଆ ସୋହାଗିଆ ହେବାର ଥିଲା ତେବେ... ସେ ଆଦୌ ବିଭା ହୋଇ ନଥାନ୍ତା । ସେ ଏତେ ଯୋର୍‌ରେ ଏହି କଥାଟାକୁ କହୁଥିଲା ଯେପରି ପାଖଘରେ ଶୋଇଥିବା ମାଆ ଅସୁସ୍ଥ ହେଲେ ବି ଶୁଣି ପାରିବ । ସନାତନ କିଛି ନ ଶୁଣିବାର ଛଳନା କରୁଥିଲା ।

ମାଆ ସନ୍ତୁଷ୍ଟ ଥିଲା ବୋଲି କୁହା ନ ଗଲେ ବି ସେ ଅସନ୍ତୁଷ୍ଟ ନଥିଲା ନିଶ୍ଚୟ । ସେ ଗାଧୋଉଥିଲା ନିୟମିତ । ଠାକୁର ପୂଜା କରୁଥିଲା । ଘର କାମରେ ସାଧ୍ୟମତେ ସାହାଯ୍ୟ କରୁଥିଲା । ସବୁଠାରୁ ବଡ଼କଥା ହେଲା, ସେ କେବେ ବିଷର୍ଣ୍ଣ ହେବାର ସନାତନ ଦେଖେନି । ତେଣୁ ତାକୁ ଖୁସି କରାଇବା ପାଇଁ ସନାତନ ଚେଷ୍ଟା କରୁଥିଲା । ମାଆ ନିକଟରେ ସେ ନିଜକୁ ଛୋଟ ପିଲାଟିଏ ଭଳି ମନେ କରୁଥିଲା । ତା'ର କିଛି ପ୍ରାପ୍ତିର ଆଶା ନଥିଲା । ତେଣୁ ଅଭିଯୋଗ ବି ନଥିଲା । ପୁଷ୍ପା କିନ୍ତୁ ସଦାବେଳେ ବିମର୍ଷ । ଅଭାବ ଏବଂ ଅଭିଯୋଗ ଅନେକ । ସନାତନ ଜାଣିଥିଲା ତା'ର ଅଭିଯୋଗ ସମାଧାନ କରିବାକୁ କେହି ଆଗେଇ ଆସିବେନି । କାହାର ସମୃଦ୍ଧିରେ ଈର୍ଷାନ୍ୱିତ ହେବାର ଲୋକ ସିଏ ନଥିଲା । ତାର ଦୈନନ୍ଦିନ ଖର୍ଚ୍ଚ ତୁଲାଇବା ପାଇଁ ବେତନ ଯଥେଷ୍ଟ ନଥିଲା । ତେଣୁ ସେ ବିମର୍ଷ ପୁଷ୍ପାକୁ ଉତ୍ସାହିତ କରୁଥିଲା । ଖର୍ଚ୍ଚକାଟ କରି ତା'ର ଅଭାବ ପୂରଣ କରୁଥିଲା । ଅନିଚ୍ଛା ସତ୍ତ୍ୱେ ମାଆକୁ ଗାଆଁରେ ଛାଡ଼ିଦେଇ ଆସିଥିଲା । ସିନେମା ଦେଖିବାର ଆଗ୍ରହ ନଥିଲେ ବି ପୁଷ୍ପା ସାଙ୍ଗରେ ଯାଇ ପ୍ରେକ୍ଷାଳୟରେ ଘୁମାଉଥିଲା ବା ହାଇ ମାରୁଥିଲା । ବନ୍ଧୁବାନ୍ଧବଙ୍କ ଘରକୁ ସ୍କୁଟରରେ ବସି ସେମାନେ ଯାଉଥିଲେ । କେବେ କେମିତି ଅସ୍ୱସ୍ତି ବୋଧକଲେ ହୋଟେଲ୍‌ରେ ଖାଇଦେଉଥିଲେ ।

ଜଣେ କେବଳ ସାଲିସ୍ କରି ଚାଲିଥିଲା, ଆଉ ଜଣେ ସାଲିସ୍ କ'ଣ ବୁଝୁନଥିଲା ।

ସନାତନର ସହରରେ ଗୋଟାଏ ସରକାରୀ ପରିଚାଳିତ ଡାକ୍ତରଖାନା ଥିଲା ଯେଉଁଠି ଅନେକ ପ୍ରତିଷ୍ଠିତ ଡାକ୍ତର ବି ଥିଲେ । ସେ ଭାବୁଥିଲା ପ୍ରଥମ ସନ୍ତାନଟି ଜନ୍ମହେବା ବେଳକୁ ସେ ସ୍ତ୍ରୀରୋଗ ବିଶେଷଜ୍ଞାଙ୍କର ସାହାଯ୍ୟ ନେଇ ପାରିବ । ବ୍ୟାଙ୍କ୍ ପରିଚାଳକଙ୍କ ସ୍ତ୍ରୀର ପ୍ରଥମ ଛୁଆଟି ସେଠି ସୁରୁଖୁରୁରେ ହୋଇଯାଇଥିଲା । ସେ ପ୍ରସ୍ତାବ ସେ ପୁଷ୍ପା ନିକଟରେ ଦେଲା । ହେଲେ ସନାତନକୁ ହାର ମାନିବାକୁ ହୋଇଥିଲା । ପୁଷ୍ପାକୁ ନେଇ ସହରର ଗୋଟେ ନର୍ସିଙ୍ଗ୍ ହୋମ୍‌ରେ ଭର୍ତ୍ତି କରିବାକୁ ହୋଇଥିଲା । ଛୁଟି ନେବାକୁ ହୋଇଥିଲା । ଆଉ ତା' ନିଜ ସହରର ଡାକ୍ତରଙ୍କ ବିଷୟରେ ଭଲ ମନ୍ତବ୍ୟ ଦେଇଥିବାରୁ ଭର୍ତ୍ସନା ଶୁଣି ସହ୍ୟ କରିବାକୁ ହୋଇଥିଲା ।

ନବଜାତ କନ୍ୟାଟିକୁ ଧରି ସେମାନେ ଯେତେବେଳେ ପୁରାତନ ସହରକୁ ଫେରିଆସିଲେ, ସନାତନ ହିସାବ ଫର୍ଦ୍ଦକୁ ମନେ ମନେ ଓଲଟାଇଲା । ଏଣିକି ଆଡ୍‌ଭାନ୍‌ସ ବାବଦକୁ ଶହେଟଙ୍କା ଦରମାରୁ କଟିବ । ଛୋଟ ଝିଅଟିର ଯତ୍ନ ନେବାପାଇଁ ଗୋଟେ ଚାକରାଣୀ, ଯାହାପାଇଁ ମାସକୁ ଖର୍ଚ୍ଚ ହେବ ଦୁଇଶହ, ଶିଶୁଖାଦ୍ୟ, ନାପ୍‌କିନ୍, ଔଷଧ ଏବଂ ଆନୁଷଙ୍ଗିକ ଖର୍ଚ୍ଚ ବାବଦରେ ଖୁବ୍ କମ୍‌ରେ ଶହେଟଙ୍କା । ତା'ଛଡ଼ା ମାଆକୁ କର୍ତ୍ତବ୍ୟର ବଶବର୍ତ୍ତୀ ହୋଇ ଆଗରୁ ଯେପରି ଦେବାକୁ ପଡୁଥିଲା ଏବେ ସେହିପରି ଦେବାକୁ ହେବ ।

ନୂତନ ପହିଲା ତାରିଖଟି କ୍ୟାଲେଣ୍ଡରରେ ସଜାଡ଼ିବା ପୂର୍ବରୁ ସନାତନର ସ୍ଥାନାନ୍ତର ନିର୍ଦ୍ଦେଶ ଆସିଲା ଏବଂ କାର୍ଯ୍ୟରୁ ଅବ୍ୟାହତି ମିଳିଲା । ତେଣୁ ହିସାବ ଫର୍ଦ୍ଦଟି ସେଠି କାର୍ଯ୍ୟକାରୀ ହୋଇ ପାରିଲାନି ଆଉ । ସେଇ ପୁରୁଣା ସହର ଛାଡ଼ିବା ପୂର୍ବରୁ ଗସ୍ତଖର୍ଚ୍ଚ ଆଗତୁରା ନେଲା । ପୁଷ୍ପାକୁ ଏବଂ ଶିଶୁ କନ୍ୟାଟିକୁ ଶଶୁର ଘରେ ଛାଡ଼ିଦେଇ ଆସିଲା । ମାଆ ନିକଟକୁ ଯାଇ କିପରି ଦୂର ଯାଗାକୁ ବଦଳି ହୋଇଯାଇଛି ଏବଂ ଏହାପରେ ସେ ଆଉ ପ୍ରତି ଶନି ରବିବାର ଦିନ ଗାଆଁକୁ ଆସି ପାରିବ ନାହିଁ, ତାହା ବିଶେଷ ଭାବେ ବୁଝାଇ କହିଲା । ମାଆ ମନଦୁଃଖ କଲେ ଏବଂ ଏତେ ଦୂରକୁ ନ ଯାଇ ଅନ୍ୟ କୌଣସି ଉପାୟରେ ରହି ହେବ, ତା'ର ବ୍ୟବସ୍ଥା କରିବାକୁ କହିଲେ । ଆଦେଶ ବଦଳି ପାରିବ ନାହିଁ ବୋଲି ଜଣାଇ ସେ ନୂତନ କର୍ମସ୍ଥଳୀକୁ ଆସିଲା ।

ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ କାର୍ଯ୍ୟାଳୟ, ତହସିଲ, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ଥାନା ଏବଂ ଛୋଟକାଟିଆ ବଜାର ଥିବା ଯାଗାଟିରେ ସୁବିଧାଜନକ ଘରଟିଏ ମିଳିବାର ସମ୍ଭାବନା ନଥିଲା । ତେଣୁ ସେ ପ୍ରଥମେ ତା'ର ଜଣେ ଅବିବାହିତ ସହକର୍ମୀ ସହିତ ରହିଲା । ଅରୁଚିକର ଏବଂ ଅସ୍ୱାସ୍ଥ୍ୟକର ହୋଟେଲ୍‌ର ଭଙ୍ଗା ଚଉକିରେ ବସି ଖାଇଦେଉଥିଲା । ଦରମା ପାଇବା ପରେ ତା'ର ଇଚ୍ଛା ହେଉଥିଲା ଗାଆଁରେ ଯାଇ ମାଆକୁ ଦେଖି ଆସିବ । ମାତ୍ର ଚାରିଶହ କିଲୋମିଟର ଦୂରରୁ ଗାଆଁକୁ ଗଲେ ବହୁତ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । ତେଣୁ, ମାଆକୁ ଦେଖିବାର ପ୍ରିୟ ଇଚ୍ଛାଟିକୁ ଦମନ କରି ମନିଅର୍ଡରରେ ଟଙ୍କା ପଠାଇଦେଲା। ପୁଷ୍ପାର ଦୁଇ ତିନିଟା ଚିଠିକୁ ପଢ଼ି ଥୋଇ ଦେଉଥିଲା । ସେ ଭାବୁଥିଲା, କେବଳ ଟଙ୍କା ପଠାଇଦେଲେ ଯଦି ସେ ତା' ବାପାଘରେ ଭଲରେ ଚଳି ପାରିବ, ତେବେ ତା'ର କୌଣସି ଆପତ୍ତି ନାହିଁ । ସେ ବରଂ ଖୁସି ହେଉଥିଲା, ତା'ର ପ୍ରତ୍ୟକ୍ଷ ଆକ୍ରମଣରୁ ମୁକ୍ତି ମିଳିବ । ସେ କୌଣସି ଚିଠି ଲେଖୁନଥିଲା । ସାଙ୍ଗଟି ଦିନେ ଦୁଇଦିନ ପାଇଁ ଘରକୁ ଚାଲିଗଲେ ତାକୁ ଏକାକୀତ୍ୱ ଗ୍ରାସ କରୁଥିଲା । ତେଣୁ ହୋଟେଲ୍‌ରୁ ଖାଇଦେଇ ଆସିବା ପରେ ବିଛଣାରେ ଅର୍ଦ୍ଧଶାୟିତ ଅବସ୍ଥାରେ ବସି

ସାମ୍‌ନାରେ ଥିବା ଦଳୁଆ ପୋଖରୀ ଆଡକୁ ଚାହିଁ ରହୁଥିଲା ଅଥବା ବହୁବାର ପଢ଼ିଥିବା ପତ୍ରିକାର ପୃଷ୍ଠା ଓଲଟାଉଥିଲା । ସାମ୍‌ନାରେ କେତୁଟା କୃଷ୍ଣଚୂଡ଼ା ଗଛ ଏବଂ ଆଉ ଅଳ୍ପ ଦୂରରେ ଧାଡ଼ି ଧାଡ଼ି ଇଉକାଲିପଟସର୍ ଚାରା । ବାଦୁଡ଼ିଗୁଡ଼ା ଫଡ୍‌ଫଡ୍ ହୋଇ ଉଡିବାରେ ବା ନିକଟସ୍ଥ ନଳକୂଅ ନିକଟରେ ପାଣିପାଇଁ ପିଲାମାନଙ୍କର କଳିତକରାଳରେ ସେ ବିବ୍ରତ ହେଉନଥିଲା । ଯେଉଁଥିପାଇଁ ସେ ବ୍ୟସ୍ତ ହେଉଥିଲା, ସେଇଟା ହେଲା ତା'ର ନୂଆକରି ଆରମ୍ଭ ହୋଇଥିବା ଆଲର୍ଜି । ତା'ର ଗୋଡ଼ହାତ କୁଣ୍ଡାଇ ହେଉଥିଲା ଏବଂ ନାଲି ନାଲି ହୋଇ ଫୁଲି ଯାଉଥିଲା । ସେଇଟା ଏଇ ପରିବେଶ ଯୋଗୁଁ ନା ହୋଟେଲ୍‌ରେ ଖାଉଥିବା ଆଜେବାଜେ ଖାଦ୍ୟ ଯୋଗୁଁ, ତାହା ନିର୍ଦ୍ଧାରଣ କରିବା ସମ୍ଭବପର ନଥିଲା; ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତର ମଧ୍ୟ କହିପାରିଲେନି । କେବଳ ଉପଦେଶ ଦେଲେ ଘରଟାକୁ ପରିବର୍ତ୍ତନ କରିଦେବା ପାଇଁ । ହୋମିଓପାଥି ଅଭ୍ୟାସ କରୁଥିବା ଜଣେ ଶିକ୍ଷକଙ୍କୁ ମଧ୍ୟ ପଚାରିଥିଲା । ଦୁଇଟଙ୍କା ନେଇ ଦେଉଥିବା ଔଷଧ ଛଅପାନ ଖାଇବା ପରେ ମଧ୍ୟ କୁଣ୍ଡିଆ ବନ୍ଦ ହେଲାନି । ତେଣୁ ସେ ସିଦ୍ଧାନ୍ତ କଲା, ଗୋଟେ ଘର ଭଡ଼ା ନେବ ଏବଂ ହୋଟେଲ୍‌ରେ ନ ଖାଇ ହାତରେ ରୋଷେଇ କରି ଖାଇବ ।

ବହୁ କଷ୍ଟରେ ଘରଟିଏ ଠିକ୍ କଲା । ଗୋଟିଏ ପରିବାର ଚଳିବା ପାଇଁ ଆବଶ୍ୟକୀୟ ଘର ଥିଲେ ମଧ୍ୟ ଆଲୋକ ପାଇଁ ଯଥେଷ୍ଟ ଝରକାର ଅଭାବ । ତା'ଛଡ଼ା ଚାରିଆଡ଼େ ଦୁଇଟା ବଡ଼ ବଡ଼ ଶିମଳି ଗଛ ଏବଂ ଗୋଟେ ଭାଲିଆ ଗଛ । ପାଖାପାଖି ଖୁବ୍ କମ୍ ପରିବାର ରହୁଥିଲେ । ଟିଣ ଛପର ଛାତ ଉପରେ ଖପରମାନ ସଜଡ଼ା ଯାଇଥିଲା । ବାରି ପାଚେରି କବାଟସବୁ ଅର୍ଦ୍ଧଭଗ୍ନ । କାନ୍ଥମାନ ଫାଟି ଯାଇଥିଲା ଏବଂ ଘର ବୁଢ଼ିଆଣୀ ଜାଲରେ ଭର୍ତ୍ତି ହୋଇଯାଇଥିଲା ।

ଗୃହ ପ୍ରବେଶର ପ୍ରଥମ ଦିନ- ଛୋଟକାଟର ଭୋଜିଟିଏ କରି ସହକର୍ମୀମାନଙ୍କୁ ଖାଇବାକୁ ଡାକିଥିଲା ସନାତନ । ବହୁଦିନରୁ ଅବ୍ୟବହୃତ ଘରଟି କିଛି ସମୟ କୋଳାହଳରେ ପୂର୍ଣ୍ଣ ହେବା ପରେ ପୁଣି ନିସ୍ତବ୍‌ଧତା ଏବଂ ଶୂନ୍ୟତା ଓଜାଡ଼ି ହୋଇ ପଡ଼ିଥିଲା ତା' ଉପରେ । ବାହାରେ ଛାପି ଛାପିକିଆ ଜହ୍ନ । ଦୂରରୁ ଗ୍ରାମରକ୍ଷୀର ହୁଇସିଲ୍ । ଭାଲିଆ ଗଛରେ ବାଦୁଡ଼ିମାନଙ୍କର ମଝିରେ ମଝିରେ ଫଡ୍ ଫଡ୍ ଶବ୍ଦ ଭୟ ଓ ଆଶଙ୍କା ନିମନ୍ତେ ଯଥେଷ୍ଟ କାରଣ ହେଲେ ବି ସନାତନ ନିଶ୍ଚେଷ୍ଟ ହୋଇ ବିଛଣାରେ ପଡ଼ିରହିଥିଲା । ତା'ର ବୋଉ କଥା, ଗାଆଁର ବଣ, ଗୋହିରୀ ବିଲ ଏବଂ ସର୍ବୋପରି ଟିକି ଝିଅକଥା ମନେପଡୁଥିଲା । ମନେ ମନେ ପୁଷ୍ପା ଉପରେ, ତା' ବାପା ବୋଉ ଉପରେ ରାଗୁଥିଲା । ସିଏ ଯଦି ଅନ୍ତତଃ ଅବୁଝା ହୋଇ ନଥାନ୍ତା, ତେବେ ତାକୁ ନ ଆଣି ବାପଘରେ ଛାଡ଼ିଦେଇ ଆସି ନଥାନ୍ତା । ଏବେ ଆଉ ଅନୁଶୋଚନା ନିମନ୍ତେ

ଅବସର ନାହିଁ । ବାହାଘର ପରେ ଯା'ର ସ୍ମୃତି ଜୋର୍ କରି ପୋଛିଦେବା ନିମନ୍ତେ ଚେଷ୍ଟା କରିଛି ସେଇ ଶ୍ରୀଲତାର ସ୍ମୃତି କିନ୍ତୁ ଜୋର୍ କରି ତା' ଭିତରକୁ ଚାଲି ଆସୁଛି । ଏକଦା ସହାଧ୍ୟାୟୀ କୋଉ ବାଳିକା ବିଦ୍ୟାଳୟର ଶିକ୍ଷୟିତ୍ରୀ ଶ୍ରୀଲତା ହୁଏତ ଆଜି ପାଖରେ ଥାନ୍ତା, ଯଦି ବୋଉ କଥାକୁ ସମ୍ମାନ ଦେଇ ପୁଷ୍ପା ନାମ୍ନୀ ଅଝଟିଆ ଝିଅର ବାପା କଥାରେ ସମ୍ମତି ପ୍ରଦାନ କରିନଥାନ୍ତା ।

ଖାଲି ଖାଲିଟାରେ ବିଛଣାରେ ଶୋଇ ଆଖି ବୁଜୁଥିଲେ ବି ନିଦ ଆସୁ ନଥିଲା ।

ସନାତନ ବିଛଣାରୁ ଉଠିଲା । ଲାଇଟ୍ ଜାଳି ଦୈନିକ କର୍ମଲିପିର ପ୍ରଥମ ପୃଷ୍ଠା ଖୋଲି ଶ୍ରୀଲତାର ଠିକଣା ବାହାର କଲା, ପ୍ୟାଡ଼୍‌ରୁ କାଗଜ ଖଣ୍ଡେ ଚିରି ଲେଖିଲା-

ଶ୍ରୀଲତା,

ମୋତେ ଏଠି ଖୁବ୍ ଡର ମାଡୁଛି ଏକୁଟିଆ । ତମେ ଯଦି ଏଇଠି କିମ୍ବା କୌଣସି ଆଖପାଖ ଯାଗାରେ ଥାଆନ୍ତ, ତୁମ ପାଖରେ ଯାଇ ଆରାମରେ ଶୋଇ ପଡ଼ନ୍ତି ।

ଇତି

ସନାତନ

ଲଫାପାରେ ଚିଠିଟି ପୁରାଇ ଠିକଣା ଲେଖି ସାରିବା ପରେ ସେ ଲାଇଟ୍ ଲିଭାଇ ଶୋଇ ପଡ଼ିଲା ।

ସନାତନ ଅଫିସ୍ ଯାଏ, ହୋଟେଲ୍‌ରେ ଖାଏ, ଜହ୍ନ ପଡ଼ିଥିବା ଆକାଶକୁ ଚାହିଁ ଚାହିଁ ରାଜରାସ୍ତାରେ ଏକୁଟିଆ ଚାଲେ । ସହକର୍ମୀମାନଙ୍କୁ ଦେଖି ସମ୍ଭାଷଣ ବିନିମୟ କରେ । ଋଣ ଗ୍ରହୀତାମାନଙ୍କ ନିକଟକୁ ଯାଇ ପରିଶୋଧ କରିବା ନିମନ୍ତେ ତାଗିଦା କରେ । ସନ୍ଧ୍ୟାବେଳେ ଘରକୁ ଫେରିଆସି ପତ୍ରିକା ପଢେ । ହେଲେ ତା' ମନରେ ସବୁଠାରୁ ବେଶୀ ଦୁଃଖ- ବୋଉ ଏତେ ଦୂରରେ ଅଛି ଯେ, ତାକୁ ଆସିବା ଦିନଠାରୁ ଆଉ ଦେଖି ହେଉନି, ପାଖକୁ ଆସନ୍ତା ହେଲେ । ପୁଷ୍ପା ତ ଏବେ ନାହିଁ । କେବେ ଆସିବ ତା'ର ଠିକଣା ବି କିଛି ନାହିଁ । ଏତେ ଦୂର ତା'ର ପସନ୍ଦ ନୁହେଁ । ସହରଠାରୁ ବି ବେଶୀ ଦୂର । ଟଙ୍କା ପଠାଇବା ପରେ ସନାତନର ମୁଣ୍ଡ ଉଶ୍ୱାସ ହୋଇଯାଏ ଏବଂ ସେ ଅଫିସ୍ କାମ ଠିକ୍ ଠିକ୍ କରେ । କିନ୍ତୁ ମୁଣ୍ଡ ପୁଣି ଭାରାକ୍ରାନ୍ତ ହୋଇଯାଏ ଯେତେବେଳେ ପୁଷ୍ପାର ଚିଠି ଆସି ପହଞ୍ଚିଯାଏ । ଚିଠି ନ ଖୋଲି ମଧ୍ୟ ସେ ବୁଝିପାରେ ପଠାଇଥିବା ଟଙ୍କା ଶେଷ ହୋଇଗଲାଣି । ଆହୁରି ଟଙ୍କା ପଠାଅ । ସେଇ ଲିପିର ପୁନରାବୃତ୍ତି, ତା' ମୁଣ୍ଡକୁ ସତକୁ ସତ ଗରମ କରି ପକାଏ । ତା'ର ଇଚ୍ଛା ହୁଏ ସେଇ ମୁଣ୍ଡଟା ଅଲଗା ହୋଇଯାଆନ୍ତା କି ? ମୁଣ୍ଡ ସିନା ଅଲଗା ହୁଏନା, କିନ୍ତୁ ସ୍ରୋତ ଅଲଗା ହୋଇଯାଏ । ଅଫିସ୍ କାମରେ ଠିକ୍ ମନ ଲଗାଇ ପାରେନା । ପାହାଡ଼ ଆଡକୁ ଚାହିଁ ଆତ୍ମ ବିସ୍ମୃତ ହୁଏନା ! ମାସର ବଳକା ଦିନତକ ଛଟପଟ ହୁଏ ।

ଅତ୍ୟଧିକ କ୍ରୋଧ ବଶତଃ କାହା ପାଖକୁ ଚିଠି ଖଣ୍ଡିଏ ମଧ୍ୟ ଲେଖେନା । ପୁଷ୍ପା ନିକଟକୁ ଲେଖିବା ଅନାବଶ୍ୟକ ।

ଦିନେ ଅଫିସ୍‌ରେ ବସିଥିବା ସମୟରେ ପୋଷ୍ଟ୍‌ମ୍ୟାନ୍ ଦୁଇଟି ଚିଠି ଦେଇଗଲା । ପ୍ରଥମଟି ଶ୍ରୀଲତାର । ଖୋଲି ପକାଇଲା ଉଦ୍‌ବେଗରେ, ଲେଖିଛି ସିଏ-

ସନାତନ,

ମୋତେ ବି ଡର ମାଡୁଥିଲା ଏଠି ଏକୁଟିଆ । କିନ୍ତୁ ସବୁବେଳେ ତ ମନେ ହେଉଛି ତମେ ମୋ ପାଖରେ ଅଛ ବୋଲି । ଆସନ୍ତ ଯଦି କେବେ ଆଉ ହାଲିଆ ହୋଇ ଶୋଇ ପଡ଼ିବାକୁ ଇଚ୍ଛା କରନ୍ତ, ତେବେ ଗପ କହି ଚିଆଁଇ ରଖନ୍ତି ।

ଇତି

ଶ୍ରୀଲତା

ଦୁଇଠୋପା ଲୁହ ଖସିପଡ଼ିଲା ସନାତନର ଆନନ୍ଦର ଆତିଶଯ୍ୟରେ । ଏବେ ବି ସ୍ୱପ୍ନଦେଖୁଛି ଶ୍ରୀଲତା ।

ଦ୍ୱିତୀୟ ଚିଠିଟିର ପ୍ରେରିକା ପୁଷ୍ପା । ଏତେ ଶୀଘ୍ର କ'ଣ ଟଙ୍କା ଶେଷ ହୋଇଗଲା ? ନା, କ୍ଷୁଦ୍ର ଚିଠିଟିରେ ଟଙ୍କା କଥା ମୋଟେ ଲେଖା ହୋଇନି । ଅମୁକ ତାରିଖରେ ପହଞ୍ଚୁଛି ବୋଲି ଜଣାଇ ଦେଇଥିଲା ଏବଂ ବସ୍‌ଷ୍ଟାଣ୍ଡ୍‌କୁ ଆସିବା ନିମନ୍ତେ ତାଗିଦା ମଧ୍ୟ କରିଦେଇଥିଲା । କ୍ୟାଲେଣ୍ଡର୍‌ର ତାରିଖ ସଙ୍ଗେ ମିଳାଇଲା ସନାତନ । ଆଜି ସେଇ ତାରିଖଟା ।

ଦୀର୍ଘ ନିଃଶ୍ୱାସ ପକାଇ ମ୍ୟାନେଜର୍‌ଙ୍କ ନିକଟରେ କାର୍ଯ୍ୟରୁ କେତେ ଘଣ୍ଟା ଅବ୍ୟାହତି ଦେବାପାଇଁ ଅନୁରୋଧ କଲା । ତାକୁ ବସ୍‌ଷ୍ଟାଣ୍ଡ୍‌କୁ ଯିବାକୁ ପଡ଼ିବ ।

□□

# ଖରା ଛାଇର ମଝାମଝି

ସତରେ ଦିନଗୁଡ଼ା କେଡ଼େ ଶୀଘ୍ର ଚାଲିଯାଉଛି । କାଲି ପରି ଲାଗୁଛି, କିନ୍ତୁ ୟା ଭିତରେ ଗୋଟେ ବର୍ଷ ପୂର୍ଣ୍ଣହେଇ ଆଉ କେତେମାସ ବିତିଗଲାଣି । ଗେଙ୍ଗୁଟି ନଈର କୂଶଧାର ସ୍ଫୀତ ହୋଇ ପୁଣି କାର୍ତ୍ତିକ ମାସରେ ହବିଷାନ୍ନ ପାଳନ କରୁଥିବା ବିଧବା ନାରୀପରି ସ୍ୱଚ୍ଛ, ନମନୀୟ ଆଉ ଶାନ୍ତ ହୋଇଗଲାଣି । ଉତୁରି ପଡୁଥିବା ଦୁଧପରି, ଆଉଟା ସୁନାର ରଙ୍ଗପରି ଅଶ୍ୱିନ ମାସର ପହିଲି କିରଣ, କ୍ଷୀର ଢୋକୁଥିବା ଧାନ କିଆରୀରେ ନଦି ହୋଇ ପଡ଼ିଛି । ମାଟି ସଡ଼କର ରାସ୍ତା ଉପରକୁ ନଇଁ ପଡୁଥିବା ଧାନ ଗଛକୁ ଗୋଡ଼ରେ ଆଡ଼େଇ ଚାଲୁଥିବା ଗୌରୀ ଭାବୁଛି –

ସକାଳୁ ବସ୍‌ରେ ଓହ୍ଲାଇଲା ବେଳକୁ ଚିହ୍ନା ରିକ୍ସାବାଲା ଜଣକର ବି ଦେଖା ମିଳିଲାନି । ଯେଉଁ ଗୋଟାଏ ଦୁଇଟା ଥିଲା, ସେମାନେ ତାଙ୍କ ଗାଆଁକୁ ଯିବାକୁ ରାଜି ହେଲେନି । ଅଗତ୍ୟା ଚାଲିବାକୁ ହେଲା । ଅନ୍ୟଦିନ ହୋଇଥିଲେ ସିଏ ମୋଟେ ରାଜି ହୋଇନଥାନ୍ତା, କିନ୍ତୁ ଆଜି କଥା ଭିନ୍ନେ । ବର୍ଷକଠୁ ଅଧିକ କାଳ ଗାଆଁକୁ ଆସିନି । କେତେ କଥା ବଦଳିଯିବଣି ଗାଆଁରେ, ଯୋଉଟା କି ଖୁବ୍ ସ୍ୱାଭାବିକ । କାକରଲଗା ଧାନପତର ଲାଗି କାଳେ ଛନ୍ଦି ହୋଇ ପଡ଼ିବ, ସେଥିପାଇଁ ବଳାଗଣ୍ଠି ଉପରକୁ ସିଲ୍କ୍ ଶାଢ଼ୀଟା ଟେକି ଦେଇଛି । ନଈ ଦେଖାଯାଉଛି । କିଏ ଜଣେ ବନ୍ଧ ଉପରେ ସାଇକେଲ୍‌ରେ ଯାଉଛି । କଲେଜ ପିଲା ହେବ ବୋଧହୁଏ । କଲେଜ ଜୀବନର ସ୍ମୃତିଗୁଡ଼ା ମନ ଭିତରକୁ ପଶି ଆସୁଆସୁ ଗୋଡ଼ଟା ମୋଡ଼ି ହୋଇଗଲାଣି । ଗୋରୁଚଲା ରାସ୍ତାଟି ଶୁଖିଯିବା ପରେ ଅସମତଳ ହୋଇଛି । ଚପଲ ଖୋଲି ହାତରେ ଧରିଲା । ଭାଙ୍ଗିଯାଇଥିବା ନୂଆ ବ୍ରିଜ୍‌ଟା ପୁଣି ଥରେ ତିଆରି ହେଲାଣି । ଚାଲି ଚାଲି କ୍ଳାନ୍ତ ହୋଇପଡୁଥିଲେ ବି ବାପାକୁ ସେକଥା ଜଣାଇବାକୁ ସେ ପ୍ରସ୍ତୁତ ନଥିଲା । ଲୋକମାନେ ରାସ୍ତାରେ ଚାଲିବା ଆରମ୍ଭ କରିଦେଇଥିଲେ । ଅଗତ୍ୟା ସେ ଖଜୁରୀଗଛ ଅଗରେ ବନ୍ଧାହୋଇଥିବା ମାଠିଆ ଆଡ଼କୁ ଚାହୁଁଥିଲା, ଅଥବା ଧୂଳି ଝାଡ଼ିବା ବାହାନାରେ ଟିକିଏ ଠିଆହୋଇ ପଡୁଥିଲା । ମାଟିରାସ୍ତା, ନଦୀବନ୍ଧ ଏବଂ ଶେଷରେ ଗାଆଁ ଦଣ୍ଡା ଏବଂ ଦାଣ୍ଡରେ ଚାଲି ଚାଲି ଶେଷରେ ସେମାନେ ଯେତେବେଳେ ଘରେ ପହଞ୍ଚିଲେ

ସେତେବେଳକୁ ଚାଳକୁ ଖରା ଅଧା ଉଠି ଆସିଲାଣି, ଆଉ ପାଖାପାଖି ଘରମାନଙ୍କରୁ ସକାଳ ରୋଷେଇର ଧୂଆଁ ଛପର ଟପି ଆକାଶରେ ମିଶିବାକୁ ଆରମ୍ଭ କଲାଣି ।

ଗୌରୀକୁ ଘେରିଗଲେ ପିଲାଏ । କେତେକଥା କିଏ ପଚାରିଲେ, ସିଏ କାହାକୁ କିଛି ଉତ୍ତର ଦେଉନଥିଲା କିମ୍ବା ଦେବା ସମ୍ଭବପର ନଥିଲା । ବୋଉ ପିଲାମାନଙ୍କୁ ବିଦା କରିଦେଲା, କେତେ ବେଳକୁ ରଞ୍ଜୁ ଆସିଲା ଆଉ ରତି ବି । ସେମାନଙ୍କୁ ଦେଖି ଖୁବ୍ ଖୁସିଟିଏ ହୋଇଗଲା ଗୌରୀ । ମାଉସୀଝିଅ ଭଉଣୀ ରଞ୍ଜୁ ଆଉ ବାନ୍ଧବୀ ରତି । ସେମାନେ କିନ୍ତୁ ଖୁସି ଥିବାର ମନେ ହେଲାନି । ଅଧିକନ୍ତୁ ମନେ ହେଉଥିଲା ଯେପରି ସେମାନେ ଟିକିଏ ସମୟ ପୂର୍ବରୁ କାନ୍ଦୁଥିଲେ । ରଞ୍ଜୁର ବାହାଘର ଆଗାମୀ କାଲି ଗଲେ ପରଦିନ, ଆଉ ରତି ? ଭାଇ ଅର୍ଦ୍ଧଶିକ୍ଷିତ, ବେକାର । ବାପାଙ୍କ ଦ୍ୱାରା ନିର୍ମିତ ହୋଇଥିବା ଏବଂ ସମୟର ପ୍ରବାହରେ ଅର୍ଦ୍ଧଜୀର୍ଣ୍ଣ ଅବସ୍ଥାରେ ଉପହାସ କରୁଥିବା କୋଠାଘରେ କେବଳ ନୀରବ ଅଶ୍ରୁ ଢାଳିବା ପରେ ବାହାହୋଇ ଏବଂ ସଂସାର ଗଢ଼ି ସୁଖସ୍ୱପ୍ନ ଦେଖିବା ତା' ନିକଟରେ ଏକ ଅବାସ୍ତବ ଏବଂ ଅବାନ୍ତର ଘଟଣା ନିଶ୍ଚୟ ଥିଲା । ତେବେ ବି ରତି ଖୁବ୍ ଅନ୍ତରଙ୍ଗ ବାନ୍ଧବୀ । ଦୀର୍ଘ ସମୟଧରି ବସ୍‌ଯାତ୍ରା, ଆବଡ଼ା ଖାବଡ଼ା ମାଟି ରାସ୍ତାରେ ଚାଲି ଚାଲି ବଡ଼ କ୍ଲାନ୍ତି ବୋଧ କରୁଥିଲା ସିଏ । ନିଦ ବି ଲାଗୁଥିଲା । ଗୋଡ଼ହାତ ଭିଡ଼ିମୋଡ଼ି ହୋଇ ସେ ହାଇମାରୁଥିଲା । ରଞ୍ଜୁ ଚୁପ୍‌ଚାପ୍ ବସିଥିଲା । ରତି ନିମ୍ନ ସ୍ୱରରେ ଯାହା କହୁଥିଲା ସେଥିରୁ ସିଏ କିଛି ବୁଝିବାକୁ ଚେଷ୍ଟା କରିନଥିଲା ।

ଛାତ ଖୋଲା ଏବଂ କବାଟ ନଥିବା ଗାଧୁଆଘରେ କୌଣସି ମତେ ଦୁଇବାଲ୍‌ଟି ପାଣି ଢାଳିହେଲା ପରେ, ତାକୁ ଏତେ ଆସକ୍ତି ଲାଗୁଥିଲା ଯେ ରୋଷେଇ ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା ନକରି କୌଣସି ମତେ ବାସି ପଖାଳ ଖାଇ ବିଛଣାରେ ଗଡ଼ି ପଡ଼ିଲା ।

ନିଦ ଭାଙ୍ଗିବା ବେଳକୁ ଦିନ ତିନିଟା କିମ୍ବା ତା'ଠାରୁ ବେଶି ହୋଇପାରେ । ଘରେ ବୋଉ ଶୋଇଯାଇଥିଲା । ଗାୟତ୍ରୀ ସ୍କୁଲ୍‌ରୁ ଫେରି ନଥିଲା । ଗଗନର ସ୍କୁଲ୍ ବ୍ୟାଗ୍ କନ୍ଥରେ ଟଙ୍ଗା ଯାଇଥିଲା । ସେ ବୋଧହୁଏ ସ୍କୁଲ୍‌ରୁ ଫେରି ଖେଳିବାକୁ ଚାଲିଯାଇଛି କିମ୍ବା ମୋଟେ ଯାଇନି । ଦିନକୁ ଦିନ ତାର ଦୁଷ୍ଟାମୀ ବଢ଼ୁଛି । ବାପାଙ୍କ ଅନୁପସ୍ଥିତିରେ ରୁଗ୍‌ଣା ବୋଉ ତାକୁ ଶାସନ କରିପାରୁନି । ଏମିତି ଶାସନ ଅଭାବରେ ସେ ହୁଏତ ଦିନେ ସମସ୍ତଙ୍କ ନିକଟରେ ଦୁଃଖର କାରଣ ହେବ । ଭବିଷ୍ୟତରେ ଦୁଷ୍ଟ ପିଲାଙ୍କ ସାଙ୍ଗରେ ଗଗନ କିପରି ବିଶୃଙ୍ଖଳ ହେବ ଏବଂ ତା'ର ସାରାଜୀବନ କିପରି ଦୟନୀୟ ହେବ, ତା'ର ଏକ କରୁଣ ଚିତ୍ର ସିଏ ମନେ ମନେ ଆଙ୍କିଦେଲା । ସେଇ ଚିତ୍ରରେ ସିଏ ଦେଖୁଥିଲା- ଗଗନ ହୁଏତ ଖାଇବାକୁ ପାଉନି କିମ୍ବା ଅସାମାଜିକ ବ୍ୟକ୍ତିମାନଙ୍କ ଆକ୍ରମଣରେ କ୍ଷତବିକ୍ଷତ ହେଉଛି । ଏମିତି ଏକ ଚରିତ୍ର ତଥା ଅନୁଷଙ୍ଗିକ ପରିସ୍ଥିତିର

ମୁକାବିଲା କରିବା ନିମନ୍ତେ ମାନସିକ ପ୍ରସ୍ତୁତି ବିଷୟରେ ଏବେ ଚିନ୍ତା କରିବା ଅତ୍ୟନ୍ତ ଅବାନ୍ତର ଥିଲା, ଯେହେତୁ ସେଇ ନିର୍ଦ୍ଦିଷ୍ଟ ଘଟଣାଟି ଏବେ ଘଟିବାର ନଥିଲା । ମଧ୍ୟାହ୍ନ ଭୋଜନର ସମୟ ଅତିକ୍ରାନ୍ତ ହୋଇ ଯାଇଥିଲେ ବି ଗୌରୀକୁ ଭୋକ ଲାଗୁନଥିଲା । ତା'ର ରଞ୍ଜୁ ସଙ୍ଗେ ଗପ କରିବାକୁ ଇଚ୍ଛା ହେଲା ।

ମାଉସୀ ଉଠି ନଥିଲେ । ତାଙ୍କର ଶାଶୁ ଚାକରାଣୀକୁ କିଛି ବରାଦ କରୁଥିଲେ । ଗୌରୀ ତାଙ୍କୁ ମୁଣ୍ଡିଆ ମାରିବା ସତ୍ତ୍ୱେ ଖାଲି କେତେବେଳେ ଆସିଛୁ ପଚାରିବା ଛଡ଼ା ଆଉ କିଛି କହିଲେନି । ରଞ୍ଜୁ କୋଠରୀର ଦୁଆରଟା ବନ୍ଦ ଥିଲା । ସେ ଶୋଇଛି କି କୁଆଡ଼େ ଯାଇଛି ତାହା ବୁଝା ପଡୁନଥିଲା । ଅଗତ୍ୟା କୋଠା ଛାତ ଉପରକୁ ଉଠିଗଲା ସିଏ । ଏତେ ବଡ଼ ଛାତରେ କେହି ନ ଥିଲେ - ସଂଲଗ୍ନ ରତି ଘର ଛାତରେ ମଧ୍ୟ ।

ସେ ଏପରି ଏକ ଯାଗାରେ ବସିଲା ଯେଉଁଠାରୁ ନଈ ଆଡ଼କୁ ଚାହିଁହେବ ଏବଂ ଅନ୍ୟମାନଙ୍କ ଘରର ଲୋକମାନଙ୍କ ଚଳପ୍ରଚଳ ଉପରେ ମଧ୍ୟ ନଜର ରଖିହେବ ।

ଆକାଶରେ ମେଘ ନାହିଁ । ଶୀତ ବି ପଡ଼ିବାକୁ ଆରମ୍ଭ କଲାଣି, ନଈଆଡୁ ଶୀତୁଆ ପବନ ବହିଆସି ଶାଢ଼ୀଟାକୁ ଅସ୍ତବ୍ୟସ୍ତ କରିପକାଉଛି - ଯେପରି କ୍ଷୀର ଖାଇବାକୁ ଥିବା ପିଲାଟା ସ୍ଥାନ କାଳ ନିର୍ବିଶେଷରେ ମାଆର ସ୍ତନ ଅଣ୍ଡାଳୁ ଥାଏ । ସେମିତି ଏକ ଦୃଶ୍ୟ ଦେଖିଲେ ମନେପଡ଼େ ସୁକୁମାରର କଥା । ଆହୁରି ମନେପଡ଼େ ତା' କଥା ଯେତେବେଳେ ପ୍ରବଳ ଗରମ ପଡ଼େ; ଅସରାଏ ଅଦିନିଆ ବର୍ଷା ଝରିପଡ଼େ । ସେମିତି ଏକ ବର୍ଷାଭିଜା ସନ୍ଧ୍ୟାରେ ଆସିଥିଲେ ସିଏ, ଯଦିଓ ସେଇଟା ଥିଲା ଏକ ସୌଜନ୍ୟମୂଳକ ସାକ୍ଷାତ । ସେଇ ଦିନଟାକୁ ଭୁଲି ପାରୁନି ଗୌରୀ, ଆଉ ଭୁଲି ପାରିବ କି ନା, କିଏ ଜାଣେ ?

ସୁକୁମାର, ସୁକୁମାର, ସୁକୁମାର - କେଡ଼େ ମିଠା ମିଠା ଲାଗୁଛି ସେଇ ନାମଟାକୁ ସ୍ୱଗତୋକ୍ତି କଲେ ! ତାଲା ତାଲା ସୁଗନ୍ଧିତ ଫୁଲର ବାସ୍ନାରେ ମହକି ଉଠୁଛି ଦେହଟା ଆଉ ମନଟା । ମଧୁର ସାହାନାଇର ଝଙ୍କାରରେ ପ୍ରତିଧ୍ୱନିତ ହେଉଛି କର୍ଣ୍ଣପୁଟ । ଟିକିଏ ଓଠର କମ୍ପନ ନହୋଇ ପରୀ ରାଇଜର କଥା ବି କୁହାଯାଇପାରେ - ଯେମିତି କହିପାରେ ସୁକୁମାର କେବଳ ଚକ୍ଷୁ ପତାକୁ ନଚାଇ ନଚାଇ ଆଉ ଚକ୍ଷୁ ଡୋଳାକୁ ଗୋଟିଏ ବିନ୍ଦୁରେ ସ୍ଥିର ରଖି । ମନଟା ଆର୍ଦ୍ର ହୋଇଗଲା । କୋଉଠି ଆଜି ସୁକୁମାର ! ସେଇ ଯେ ଦେଖାହୋଇଥିଲା ବର୍ଷାଭିଜା ଆଗତ ସନ୍ଧ୍ୟାରେ । ଆଉ ଥରେ ସେ ଆସିଥିଲା, କିନ୍ତୁ ଦେଖା ନ କରି କ'ଣ ଗୋଟାଏ ଉପହାର ଥୋଇଦେଇ ପଳାଇଗଲା କାମର ବାହାନାରେ । ଖୁବ୍ ରାଗି ଯାଇଥିଲା ଗୌରୀ, ହେଲେ ପର ମୁହୂର୍ତ୍ତରେ ତାହା ମିଳାଇଗଲା । ଇଚ୍ଛା କରି ବି ତା' ଉପରେ ରାଗି ହେଉନି । ଗୌରୀର ଅସହାୟ ମନ

କ୍ଷମା କରିଦେଉଛି ଅତୃପ୍ତ ଅହଂକାରୀ ସୁକୁମାରକୁ । ନିଜକୁ ଖୁବ୍ ପୁରୁଷ ମନେ କରୁଥିଲା ନିଶ୍ଚୟ । ଆତ୍ମାଭିମାନ ତା'ର ସ୍ୱାତନ୍ତ୍ର୍ୟ । ସେଇ ଯେ ଯାଇଛି, ଆଉ ଫେରିନି । ଏଇଥର କିନ୍ତୁ ନିଶ୍ଚୟ ଆସିବ, ସେଇ ଆଶା ରଖିଛି ଗୌରୀ । ତା' ବାହାଘରକୁ ସିନା ଉପହାରଟାଏ ଥୋଇଦେଇ ଚାଲିଗଲା । ଦେଖା ବି କଲାନି, ଏବେ କିନ୍ତୁ ଜବରଦସ୍ତ ଗୌରୀ ତା'ସାଙ୍ଗେ ଦେଖାକରିବ ଏବଂ କୈଫିୟତ ତଲବ୍ କରିବ । ଚପଳ ସୁକୁମାର ସାଙ୍ଗେ ରଞ୍ଜୁ ବାହାଘର ଉପଲକ୍ଷେ ମିଶିବାକୁ କେହି ବାରଣ କରିବେନି ।

ନଈ ଆଡ଼କୁ ଚାହୁଁ ଚାହୁଁ ତା'ର ମନେ ପଡ଼ିଲା ଯେ ସୁକୁମାର ନଈକୁ ଭଲ ପାଉଥିଲେ । ସନ୍ଧ୍ୟାହେବାକୁ ଅଳ୍ପ ବାକିଥିବ । ଆଖୁଫୁଲ ଶିଶିରଭିଜା ପବନ ଯୋଗୁଁ ଶୂନ୍ୟରେ ମଥା ପିଟୁଥିବ । ବାୟା ଚଢ଼େଇର ବସାସବୁ ଓହଳିଥିବ ବିଦ୍ୟୁତ୍ ତାରରେ । ଗାଆଁର ଝିଅ ବୋହୂମାନେ ବନ୍ଧ ହୁଡ଼ାରୁ ନଈକୁ ଓହ୍ଲାଉଥିବେ ଗାଧୋଇବା ପାଇଁ । ପାହାଡ଼ ନିକଟ ଦିଗ୍‌ବଳୟକୁ ଟପି ବୁଡ଼ିଯାଉଥିବା ସୂର୍ଯ୍ୟର ଶେଷ ରଶ୍ମୀ ଛୁଇଁ ଯାଉଥିବ ନଈ ପଠାର କଅଁଳ ଛନଛନ ବାଇଗଣ ଆଉ ମକା ଗଛମାନଙ୍କୁ । ଆଉ କୌଣସି ଆଡ଼କୁ ଦୃଷ୍ଟି ନଦେଇ ଜାକିଜୁକି ହୋଇ ଚାଲିଥିବେ ସୁକୁମାର ।

ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଚାକିରିର ଅବସ୍ଥାନ କାଳରେ ନୂତନ ନିଯୁକ୍ତି ପାଇ ଆସିଥିଲେ ସୁକୁମାର । ସେତେବେଳେ ତାଙ୍କର ବୟସ କେତେଥିଲା କେଜାଣି ! ତେବେ ତାଙ୍କ ଚେହେରାରୁ ମନେହେଉଥିଲା ଚବିଶ କିମ୍ବା ତା'ଠାରୁ ସାମାନ୍ୟ ବେଶି । ନାମଟି ସହ ସାମଞ୍ଜସ୍ୟ ରଖି ଖାଦ୍ୟପେୟ ଏବଂ ପୋଷାକ- ପତ୍ରରେ ସତରେ ସିଏ ସୁକୁମାର । ତଥାକଥିତ ଅର୍ଦ୍ଧସହରରେ ଥିବା ହୋଟେଲ୍‌ର ଖାଦ୍ୟ ତାଙ୍କ ମନକୁ ଆସୁ ନଥିଲା । ଉଦ୍ଦିଷ୍ଟ ବାସଗୃହ ସାମ୍ନାରେ ଗୋଲାପ ଗଛ ଲଗାଇ ଫୁଲ ଫୁଟାଉଥିଲେ । ଚାକରାଣୀର କାମରେ ସନ୍ତୁଷ୍ଟ ନହୋଇ ନିଜେ ଘରର ଅଳନ୍ଧୁ ଝାଡୁଥିଲେ । କଲମ ଗୁଡ଼ିକରେ ବିଭିନ୍ନ ରଙ୍ଗର ସ୍ୟାହି ଭର୍ତ୍ତିକରି ଟେବୁଲ ଉପରେ ସଜାଉଥିଲେ । ମୁଣ୍ଡବାଳକୁ କେବେ ବି ଅସଜଡ଼ା ହେବାକୁ ଦେଉ ନଥିଲେ, ଆଉ ଟିକି ପିଲାଙ୍କ ସାଙ୍ଗେ ଖେଳୁ ଖେଳୁ ସେମାନଙ୍କୁ ନୂତନ ନାମରେ ନାମିତ କରୁଥିଲେ । ଆଉ ତା' ନିଜ ବିଷୟରେ ତ ଟିପ୍ପଣୀ କାଟିଥିବେ ନିଶ୍ଚୟ, ତା'ର ଜମି ଉଠିଥିବା ଚର୍ବି ବିଷୟରେ ଶୁଣାଇ ଶୁଣାଇ କହିଛନ୍ତି ଅନେକ ଥର । ହେଲେ ବି କାହିଁକି ତାଙ୍କୁ ଭଲ ଲାଗୁଥିଲା ।

ପୂଜା ପାର୍ବଣରେ ନିମନ୍ତ୍ରିତ ହୁଅନ୍ତି । ହୋଟେଲ୍‌ରେ ଖାଉଥିବା ଲୋକଙ୍କର ଘରେ ଖାଇବା ନିମନ୍ତେ ଯେପରି ଆଗ୍ରହ । ଖାଇବା ଥାଳିରେ ବସିବା ପରେ ଖୁବ୍ ସାବଧାନ ହେବାକୁ ପଡ଼େ । ଖାଇବା ସମୟରେ କିଛି କହନ୍ତିନି, କିନ୍ତୁ କୋଉ ଡାଟିଆରେ ଥରେ ଖାଇବା ପରେ ଆଉ ହାତ ବାଜେନା ତ କୋଉଟା ଶୀଘ୍ର ଶୀଘ୍ର ଶେଷ ହୋଇଯାଏ ।

ଦେଖି ଦେଖି ଦେବାକୁ ହୁଏ । କିଛି ମାଗନ୍ତିନି । ଜୋର୍ କରିବା ଯେପରି ତାଙ୍କର ନୀତି ବିରୁଦ୍ଧ । ପରେ ରାନ୍ଧଣା ଉପରେ ମନ୍ତବ୍ୟ ଦିଅନ୍ତି- କୋଉଟା ତାଙ୍କୁ ଭଲ ଲାଗେନି, କୋଉଟା ରନ୍ଧା ଭଲ ହୋଇନି, ମାଉସୀ ଭଲ ରାନ୍ଧନ୍ତି । ସମସ୍ତେ ତାଙ୍କର ପ୍ରଶଂସା କରନ୍ତି । ହେଲେ ସୁକୁମାର କେବେହେଲେ ତ କହନ୍ତିନି - ଏସବୁ ଭଲ ହୋଇଛି । ଦିନେ ସେମିତି କୌଣସି ଏକ ପର୍ବ ଉପଲକ୍ଷେ ଆସିଥିଲେ ସୁକୁମାର । ସେଦିନ ମାଉସୀ ଅସୁସ୍ଥ ଥିଲେ । ତେଣୁ କେତେ ସାବଧାନତା ସହକାରେ ରାନ୍ଧିଥିଲା ଗୌରୀ, ଆଉ ଯତ୍ନ ସହକାରେ ବାଢ଼ି ଦେଇଥିଲା । ସେଦିନ କ'ଣ ହୋଇଥିଲା ତାଙ୍କର ? ଚୁପ୍‌ଚାପ୍ ଖାଇ ଉଠିଲେ । ଖୁସି ହୋଇ ଯାଉଥିଲା ସିଏ, ଯାହାହେଉ ଏତେଦିନ ପରେ ସିଏ ଖୁସି ହୋଇଛନ୍ତି ତା' ରନ୍ଧାରେ । ଆଗ୍ରହ ଆତିଶଯ୍ୟରେ ପଚାରିଦେଲା ଯେତେବେଳେ ସିଏ ଫେରି ଯାଉଥିଲେ-

"ସବୁ ଭଲ ଲାଗିଲା ନା ?"

ଦଣ୍ଡେ ଅଟକିଯାଇ ତା ମୁହଁକୁ ଚାହିଁଲେ ସୁକୁମାର । ଟିକିଏ ହସି କହିଲେ, "ନାଁ ତ ।"

ଆଶ୍ଚର୍ଯ୍ୟ ହେଲା ସିଏ । "ତେବେ କ'ଣ କିଛି ଭଲ ଲାଗିଲାନି ?" ଗୌରୀର ସନ୍ଦିଗ୍ଧ ଦୃଷ୍ଟି ଘୁରୁଥିଲା ସୁକୁମାରଙ୍କ ଦେହସାରା ।

ସେମିତି ଅମ୍ଳାନ ଭାବେ ଉତ୍ତର ଦେଲେ ସୁକୁମାର, "ହଁ ଲାଗିଲା,"

"କ'ଣ ?"

ଦୁଇଟି ମୁହଁ ମଧ୍ୟରେ ଥିବା ଦୂରତ୍ୱକୁ ଯଥାସମ୍ଭବ କମାଇଦେଇ ନିମ୍ନକଣ୍ଠରେ ହସର ପାଖୁଡ଼ା ମେଲିଦେଇ କହିଲେ, "ତମେ, ତମେ ଭଲ ଲାଗିଲ ।"

ବୋକିଙ୍କ ପରି ଚାହିଁ ରହିଥିଲା ସିଏ, ତାର ହାତରନ୍ଧା ଖାଦ୍ୟ ଭଲ ଲାଗିଲାନି ଅଥଚ... । ସୁକୁମାର ଦୃଢ଼ ପଦକ୍ଷେପରେ ଚାଲିଯାଉଥିଲେ । ତାଙ୍କ ମନରେ ଅନୁଶୋଚନା ନଥିଲା । ନିରୁଦ୍‌ବିଗ୍ନ ସୁକୁମାର ଦୃଷ୍ଟିରୁ ଅନ୍ତରାଳରୁ ଲୁଚିଯିବା ପର୍ଯ୍ୟନ୍ତ ଚାହିଁ ରହିଥିଲା ଗୌରୀ ।

ତା'ପରେ ଅନେକବାର ଆସିଛନ୍ତି ସୁକୁମାର । କେବେ ମଉସାଙ୍କ ସାଙ୍ଗରେ କିଛି ଆଲୋଚନା କରିବା ପାଇଁ ତ କେବେ ମାଉସୀଙ୍କ ସାଙ୍ଗରେ ଲଘୁ ଗଳ୍ପ କରିବା ପାଇଁ । ଦିନେ ବି କିଛି କହିବାକୁ ସୁଯୋଗ ମିଳେନା । ସେ ଚାଲିଯାଉଥିବା ବେଳେ ଝରକା ଦେଇ ଚାହିଁରହେ ସିଏ । ତାଙ୍କ ଚାଲିରେ ବି ସ୍ୱାତନ୍ତ୍ୟ; ସ୍ପ୍ରିଂ ଦିଆ କଣ୍ଢେଇ ନାଚିବା ପରି । ମନକୁମନ ଶୂନ୍ୟରେ ଭଲିବଲ୍ ବା କ୍ରିକେଟ୍ ଖେଳିବା ଭଳି ହାତ ବା ଗୋଡ଼ର ଅଙ୍ଗଭଙ୍ଗୀ । ଏହାଛଡ଼ା ଅଧିକାଂଶ ସମୟ ସୁସୁରି ମାରି ଚାଲିଥିବେ । ଝରକା ନିକଟରେ ସିଏ ଚାହିଁରହେ । ମାତ୍ର ସୁକୁମାରଙ୍କ ଦୃଷ୍ଟି ଫେରେନି ତା'ଆଡ଼େ । ଯେପରି

ସୁସୁରି ମାରି ତା' ମନକୁ ଉତଲା କରିଦେବା ତାଙ୍କର ଏକମାତ୍ର କାମ୍ୟ । କେବେ ବା ଯଦି ସେ ଚାହୁଁଥିବେ, ସେ ଦେଖିପାରେନା ।

ରଞ୍ଜୁ ଯେତେବେଳେ ପରୀକ୍ଷା ଦେବାକୁ ଚାଲିଯାଇଥିଲା ଗୋଟେ ଦୂରବର୍ତ୍ତୀ ପରୀକ୍ଷା କେନ୍ଦ୍ରକୁ, ମାଉସୀ ଯାଇଥିଲେ ତା'ର ଦେଖାଶୁଣା କରିବାକୁ । ମଉସା ଚାଲିଯାନ୍ତି ତାଙ୍କ କର୍ତ୍ତବ୍ୟରେ । ଘରେ ଅବା ସିଏ ବୁଢ଼ୀ ଆଈ ସଙ୍ଗେ କେତେ ଗପ କରନ୍ତା ? ଲମ୍ବା ଦ୍ୱିପ୍ରହରଟା ମାଡ଼ି ମାଡ଼ି ପଡ଼େ । ଦିନେ ଝରକା ନିକଟରେ ସୁସୁରି ଶୁଣି ସେ ଦାଣ୍ଡକୁ ଚାଲି ଆସିଲା । ପାଖଦେଇ ଚାଲିଯାଉଥିବା ସୁକୁମାରକୁ ନିଜ ଅଜାଣତରେ କହି ପକାଇଲା, "ଟିକେ ଶୁଣିବେକି ।" ସିଏ ପାଖକୁ ଆସିଲେ ଏବଂ ହସିଦେଇ ମୁହଁକୁ ଚାହିଁଲେ, ଯାହାର ଅର୍ଥ- "କାହିଁକି ଡାକୁଥିଲ, କ'ଣ ଦର୍କାର ?"

କାହିଁକି ଡାକିଲା ସେ ନିଜେ ବି ବୁଝିପାରିଲାନି, "ଘରେ ଖରାବେଳଟାରେ କେହି ନାହାନ୍ତି ତ । ବଡ଼ ଏକୁଟିଆ ଲାଗୁଥିଲା"- ସେ ଆଉ କିଛି କହି ପାରିଲାନି, ପୁଣିଥରେ ସେଇ ଅନାବିଳ ହସ ହସି ଘର ଭିତରକୁ ପଶିଆସିଲେ ସୁକୁମାର ଆଉ ଚୌକି ଉପରେ ବସି ମୁଣ୍ଡ ଝାଳ ପୋଛି ପକାଇଲେ । ଠିଆ ହୋଇ ରହିଲା ଗୌରୀ, ସିଏ କିଛି କହି ପାରୁନଥିଲା । ସୁକୁମାର ବି କେତେବେଳେ ସଜଡ଼ା ହୋଇଥିବା ଚୌକି ଟେବୁଲ୍ ବା ତା' ଆଡ଼କୁ ଚାହିଁ ହସୁଥିଲେ । କେତେ ସମୟ ଏଇମିତି ନୀରବତା ପରେ ଗୌରୀର ଧାରଣା ହେଲା- ସେ ଅନ୍ତତଃ କିଛି କହିବା ଦର୍କାର, ଯେହେତୁ ସେ ଡାକିଛି ।

କ'ଣ କହିବ- "ଏବେ କିଛି ତରକାରୀ ଭଲ ଲାଗିଲାଣି ନା ?" ପ୍ରଶ୍ନଟା ବଡ଼ ଅବାଗିଆ ହେଲା ।

ସହସା ଛିଡ଼ାହୋଇପଡ଼ିଲେ ସୁକୁମାର । ତା'ର ଓହଳିଥିବା ମୁକୁଳା ବାଳକୁ ଦୁଇହାତରେ ଉଠାଇ ମୁଣ୍ଡକୁ ଜୋରରେ ଝାଙ୍କିଦେଲେ ଏବଂ ଫୁସ୍‌ଫୁସ୍ ସ୍ୱରରେ କାନ ପାଖକୁ ମୁହଁ ଆଣି କହିଲେ, "ସବୁ ତରକାରିର ସ୍ୱାଦ ତୁମେ । ଆଉ ତରକାରିର ସ୍ୱାଦ ଆସିବ କୋଉଠୁ ?" ତା'ପରେ ସେ ତା' ଅଣ୍ଟାକୁ ଧରି ଠିଆ ଠିଆ ଟେକିଦେଲେ ଏବଂ ତଳେ କଚାଡ଼ିଦେଲେ । ଗୌରୀ ପ୍ରତିବାଦ କରିପାରିଲାନି । ସେ କେବଳ ସେମିତି ଠିଆହୋଇ ରହିଲା କିଛି ସମୟ । ସୁକୁମାର ଯିବାକୁ ବାହାରିଲେ । ସେ ବାରଣ କରିପାରିଲାନି । ପାଖଘରୁ ଆଈର ଘୁଙ୍ଗୁଡ଼ି ଶୁଣାଯାଉଥିଲା । ଝରକା ରେଲିଂ ଧରି ସିଏ ଚାହିଁ ରହିଥିଲା ସୁକୁମାରଙ୍କୁ, ଯିଏକି ପୂର୍ବଭଳି ଶୂନ୍ୟରେ କୌଣସି ଏକ ପଦାର୍ଥକୁ ଫିଙ୍ଗି ଦେଉଥିଲେ ।

ରଞ୍ଜୁ ପରୀକ୍ଷା ଦେଇ ଫେରିଆସିଥିଲା । ଘରେ ପୁଣି ଲୋକ ଗହଳି ହୋଇଥିଲା, ରଞ୍ଜୁର ବନ୍ଧୁମାନେ ଆସୁଥିଲେ; ଆଉ ତା'ର ବି । ଅନେକ କାମ, ଦାୟିତ୍ୱ ବି । ତଥାପି

ସେ ବିମର୍ଷ ହୋଇପଡୁଥିଲା । ସୁକୁମାରଙ୍କ ସହ ନିରୋଳାରେ ପଦେ ଦୁଇପଦ କଥା ହେବାକୁ ଇଚ୍ଛା ହେଉଥିଲେ ବି ସେ ସୁଯୋଗ ମିଳୁନଥିଲା । ଚିଠିଟାଏ ବି ଲେଖିପାରୁନଥିଲା ସନ୍ଦିଗ୍ଧ ଏବଂ ସଙ୍କୋଚର ଏକ ମଝାମଝି ସ୍ଥାନରେ ଛିଡ଼ାହୋଇ । ଚିଠିଟାରେ ବି ସିଏ କ'ଣ ଲେଖନ୍ତା ? କିଛି କହିବାର ନଥିଲା, କିଛି ଲେଖିବାର ବି ନଥିଲା । ତଥାପି ଲେଖିବାକୁ ଇଚ୍ଛା ହେଉଥିଲା, କିଛି କହିବାକୁ ବି । ଦିନେ କିନ୍ତୁ ଏକ ଅପ୍ରତ୍ୟାଶିତ ଘଟଣା ଘଟିଲା । ତା' ବାପା ଆସି ପହଞ୍ଚିଲେ । ତା'ର ଇଚ୍ଛା ଅନିଚ୍ଛା, ଆଶା ଆକାଂକ୍ଷା ସମ୍ବନ୍ଧରେ କୌଣସି ପ୍ରଶ୍ନ ନକରି ଶୁଣାଇଦେଲେ ଯେ ବାହାଘର ଠିକ୍ ହୋଇଥିବା ଯୋଗୁଁ ସେ ଗାଁକୁ ଯିବ । ଯିବା ନିମନ୍ତେ ସମସ୍ତ ପ୍ରସ୍ତୁତି ଚାଲିଲା । ଜିନିଷପତ୍ର ସଜଡ଼ା ସଜଡ଼ି । ବନ୍ଧୁବାନ୍ଧବମାନଙ୍କଠାରୁ ବିଦାୟ । ହେଲେ ଏତିକି ବେଳକୁ କୁଆଡ଼େ ଚାଲିଗଲେ ସୁକୁମାର, ଅନ୍ତତଃ ସବୁଦିନ ପାଇଁ ଛାଡ଼ିଦେଇ ଗଲାବେଳେ ଟିକିଏ କଥା ହୋଇଥାନ୍ତା ହେଲେ । ଛୁଟିରେ ଯାଇଥିଲେ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବି ଆସିଲେନି । ଘରେ ବିବାହର ପ୍ରସ୍ତୁତି ଆରମ୍ଭ ହୋଇଥିଲେ ବି ସେ ଅନ୍ୟମନସ୍କ ଭାବେ ସୁକୁମାରଙ୍କୁ ଖୋଜୁଥିଲା । ଟିକିଏ ଆସନ୍ତେ ହେଲେ । ଥରେ ହେଲେ ଦେଖନ୍ତା । କେତେ ସୁନ୍ଦର କଥାଟାଏ କହିଦେଇଥିଲେ, "ସବୁ ତରକାରିର ସ୍ୱାଦ ତୁମେ ।" ଏତେ ଆନ୍ତରିକତାର ସ୍ୱର ଯିଏ ଉତ୍ତୋଳନ କରିବାକୁ ସଙ୍କୋଚ କରିନଥିଲେ, ତାଙ୍କ ମନରେ କ'ଣ ଟିକିଏ କ୍ଷୋଭ ନାହିଁ ତା ବିବାହର ଖବର ଶୁଣି ! ତା'ର ମନେହେଉଥିଲା ଏଇ ବାହାଘରଟା କୌଣସି ଅଜଣା କାରଣରୁ ଭାଙ୍ଗିଯାଆନ୍ତା ହେଲେ । ସେ ପୁଣି ମଉସା ମାଉସୀଙ୍କ ନିକଟକୁ ଫେରିଯାନ୍ତା । ଏମିତି କିଛି ଅଘଟଣ ଘଟିବାର ନଥିଲା । କିନ୍ତୁ ଯେଉଁ ଅଘଟଣଟି ଘଟିଲା, ସେଥିରେ ଗୌରୀ ଆଶ୍ଚର୍ଯ୍ୟ ହେଲା- ଆନନ୍ଦିତ ବି । ଦିନେ ମୁହଁସଞ୍ଜବେଳେ କୌଣସି ଖବର ନଦେଇ ସିଧା ସିଧା ଆସି ଛିଡ଼ା ହୋଇଗଲେ ସୁକୁମାର । ପୂର୍ବପରି ଚେହେରା । ପାହାଚ ଉଠୁ ଉଠୁ କହୁଥିଲେ, "ତମେ ବାହା ହୋଇ ଯିବ ତ, ଦେଖିବାକୁ ଚାଲି ଆସିଲି, କାଳେ ଆଉ ନଆସିପାରେ, ତା' ଛଡ଼ା ବଦଳି ତ ହୋଇଯାଇଛି ।" ଏମିତି ନିର୍ବିକାର ଭାବରେ ସିଏ କହିଯାଉଥିଲେ ଯେପରି ଗୌରୀର ବିବାହରେ ଏପରି କୌଣସି ବିଶେଷତ୍ୱ ନାହିଁ । କିଛି ନ କହି ପାରିଲେ ବି ତା'ର ମନ ହେଉଥିଲା ତାକୁହିଁ ଉପହାସ କରୁଛନ୍ତି । କହିବାର ସୁଯୋଗ ବି ନଥିଲା । କେତେ ହୃଦୟହୀନ ସତେ ଏଇ ସୁକୁମାର ! ଯାହାପାଇଁ ଏତେ ଭାବନା, ଯାହା ସହିତ ଆଉ କିଛି ଅନ୍ତରଙ୍ଗ ମୁହୂର୍ତ୍ତ କଟାଇବା ନିମନ୍ତେ ବାହାଘରଟା ଭାଙ୍ଗିଯାଉ ବୋଲି କାମନା କରୁଛି, ଯାହାକୁ ହୃଦୟର ବେଦିର ସର୍ବୋଚ୍ଚ ଆସନରେ ବସାଇ - ନୈବେଦ୍ୟ ଅର୍ପଣ କରୁଛି ମନେ ମନେ - ତାଙ୍କର ଟିକିଏ ବି ଆସକ୍ତି ନାହିଁ ତା' ପ୍ରତି । କେତେ ସହଜରେ କହିଦେଇ ପାରୁଛନ୍ତି,

"ତୋ ବାହାଘର ହୋଇ ଯିବ ତ ତେଣୁ ଦେଖିବାକୁ ଚାଲି ଆସିଲି ।" ଅଭିମାନରେ କୁହୁଳି ଉଠୁ ଉଠୁ କୌଣସି କାମରେ ମନ ଲଗାଇ ପାରୁନଥିଲା । ରୋଷେଇ କରିବାକୁ ଇଚ୍ଛା ନଥିଲା । ତାଙ୍କ ସମ୍ମୁଖକୁ ଯିବାକୁ ଭୟ ଲାଗୁଥିଲା । ରାତ୍ରିର ଅନେକ ପ୍ରହରରେ ସମସ୍ତେ ଯେତେବେଳେ ସୁପ୍ତ, ସେତେବେଳେ ଗୌରୀ ଯନ୍ତ୍ରଣାରେ ଛଟପଟ ହେଉଥିଲା । ନିଃଶବ୍ଦରେ ସିଏ ଛାତ ଉପରକୁ ଉଠି ଆସିଲା । ଅକାଶରୁ ବିଭୁ ଆଶୀର୍ବାଦ ଭଳି ଝରି ପଡୁଥିଲା କୌମୁଦୀ କିରଣ । ଯେଉଁଠି ଆସି ବସିଛି ଠିକ୍ ସେଇଠି ବସିଥିଲା । କେତେବେଳକେ ଗୋଟିଏ ନରମ ତଥା କ୍ଷୀଣ ସ୍ୱର ତାକୁ ଉଦ୍ଦେଶ୍ୟ କରି ଡାକିଲା- "ଗୌରୀ" । ସିଏ ଦେଖି ପାରିନଥିଲା ଛାତରେ କିଏ ଜଣେ ଶୋଇଛି । ଏଇ ସ୍ୱରଟି କିନ୍ତୁ ତା'ର ପ୍ରିୟ । ଦୁଃଖରେ ସୁକୁମାର କେଉଁଠି ଶୋଇଥିଲେ, ତା'ର ଖବର ବି ରଖିନଥିଲା । ଭୟ, ଲଜ୍ଜା ତଥା ଆଶଙ୍କାରେ ସିଏ ତାଙ୍କ ପାଖକୁ ଉଠିଯାଇ ବସିଲା । ନିଃସଙ୍କୋଚରେ ତା'ର ଗୋଟିଏ ହାତକୁ ଧରି କହିଲେ, "ଆଜି ତରକାରିଗୁଡ଼ାକ ଜମା ଭଲ ଲାଗୁନଥିଲା ।" "ମୁଁ ତ ରାନ୍ଧି ନଥିଲି,"- ଗୌରୀ ପ୍ରତିବାଦ କରୁଥିଲା ।

"ମୁଁ ତ ସେୟା ଜାଣେ ।"

ଗୌରୀର ମନେପଡ଼ିଲା କେତେଦିନ ତଳେ ସୁକୁମାରଙ୍କର ଗୋଟିଏ କଥା, "ସବୁ ତରକାରିର ସ୍ୱାଦ ତୁମେ ।"

ତା ଆଖିରୁ ଝରଝର ଲୁହ ଝରିପଡ଼ିଲା ।

କୋହମିଶା ଲୁହଭିଜା ଚକ୍ଷୁରେ ସିଏ କିଛି ଦେଖିପାରୁନଥିଲା । ଦୂର ସହରର ଆଲୁଅ, ବଉଦ ଉହାଡ଼ରେ ଲୁଚି ଯାଉଥିବା ଜହ୍ନ, ନଈପଠାର ତାଳ ଗଛ, କ୍ଷୀଣ ଧାରରେ ଦୋଳାୟମାନ ଜହ୍ନ, ଗାଆଁକୁ ଜାବୁଡ଼ି ଧରିଥିବା ନିସ୍ତବ୍ଧତା ତଥା ନିଜକୁ ଘେରି ରହିଥିବା ଶୂନ୍ୟତା । ତା'ର ଇଚ୍ଛା ହେଉଥିଲା କହିଦେବାକୁ ଅନେକ କିଛି । ଉଦ୍‌ଗତ ଅଶ୍ରୁକୁ ଚାପିବାକୁ ଚେଷ୍ଟା କରୁ କରୁ କହିଲା କେବଳ, "କିଛି ଭଲ ଲାଗୁନି ।"

ପଚାରିଲେନି ସୁକୁମାର, "କ'ଣ ଭଲ ଲାଗୁନି ?" ତା' ଲୁହକୁ ପୋଛିଦେଇ କହିଲେ, "ମୁଁ ଜାଣେ ତମେ ଶୋଇନଥିବ । ତମର ସ୍ୱୀକୃତି ବି ନଥାଇପାରେ ଏଇ ଆୟୋଜନରେ । ତେବେ ସତ୍ୟକୁ ତ ସ୍ୱୀକାର କରିବାକୁ ହେବ ।" ଅନେକ ସମୟ ସେହିପରି ବସିରହିଲା ଗୌରୀ କିଛି ଶୁଣିବା ଆଶାରେ । କିନ୍ତୁ ସୁକୁମାର କ୍ଳାନ୍ତି ଯୋଗୁଁ ହାଇ ମାରିବା ଆରମ୍ଭ କରି ଦେଇଥିଲେ । ତାଙ୍କର ଦୀର୍ଘଶ୍ୱାସ ଶୁଣାଯାଉଥିଲା । ଆଖିଗୁଡ଼ା ଛିପି ଛିପିଆ ଅନ୍ଧାରରେ ଦେଖାଯାଉନଥିଲା ।

ସିଏ ଉଠିଲା । ସୁକୁମାର ତାକୁ ପଛକରି କଡ଼ ଲେଉଟାଇଲେ ।

ତା' ପରଦିନ ସକାଳେ ସଅଳ ସଅଳ ବିଦାୟ ନେଇ ଚାଲିଗଲେ । ଗୌରୀ

ଚାହିଁ ରହିଲା ଅନେକ ସମୟ ପର୍ଯ୍ୟନ୍ତ ଛାତ ଉପରୁ । ସେ ପବନରେ ମନକୁ ମନ ଖେଳୁନଥିଲେ । ବହୁ ଦିନର ଖୁସିବାସିଆ ପିଲାଟି ଯେପରି ଦର୍ଶନ ତତ୍ତ୍ୱରୁ କିଛି ମୁଖସ୍ଥକରି ତା'ର ତର୍ଜମା କରୁଛି ପ୍ରତି ମୁହୂର୍ତ୍ତରେ । ତା'ର ସମସ୍ତ ଆନନ୍ଦ କେବଳ ନୀରବତାରେ ।

ଶୀତ ପଡ଼ିବାକୁ ଆରମ୍ଭ କଲାଣି, ରାତି ବି ହେଲାଣି । ଘରେ ସବୁ ଆଲୁଅଗୁଡ଼ାକ ଜଳିଲାଣି । ଗୌରୀ ଉଠିଲା, ତାକୁ ଯାଇ ରଞ୍ଜୁ ସଙ୍ଗେ କଥା ହେବାକୁ ପଡ଼ିବ । ମାଉସୀଙ୍କ ସାଙ୍ଗେ ସହଯୋଗ କରିବାକୁ ପଡ଼ିବ । ବୋଉ ସଙ୍ଗେ ଦୁଃଖ ସୁଖ । ସାନ ଭାଇଭଉଣୀଙ୍କ ସଙ୍ଗେ କିଛି ଖୁସି ଗପ, ତା'ପରେ ଖିଆ ପିଆ ।

ମଙ୍ଗଳକୃତ୍ୟ ଦିନଟା ଗଲା । କେତେ ବନ୍ଧୁବାନ୍ଧବ ଆସିଲେ । ରଞ୍ଜୁ ସାଙ୍ଗରେ ସାଙ୍ଗମାନେ ଲାଗିଥାନ୍ତି । କେହିକେହି ତାକୁ ଥଟ୍ଟା କରୁଥାନ୍ତି, କିନ୍ତୁ ଗୌରୀ କିଛି ନା କିଛି ନାମରେ ନିଜକୁ ବ୍ୟସ୍ତ ରଖିଲା । ତା'ର ଭୋଜିରେ ସ୍ପୃହା ନଥିଲା । ଯେତେ କାମରେ ବ୍ୟସ୍ତ ଥିଲେ ବି ତା' ହାବଭାବରୁ ମନେ ହେଉଥିଲା, ଯେପରି କାମରେ ତା'ର ଆନ୍ତରିକତା ନାହିଁ । ସେଦିନ ସନ୍ଧ୍ୟା ହେଲା । ରାତି ଆସିଲା । ତେବେହେଲେ ବି ବାହାଘରରେ ପୂର୍ଣ୍ଣମାତ୍ରାରେ ହଜାଇଦେବାର ଲକ୍ଷଣ ପ୍ରକାଶ ପାଇଲାନି । ସେ ଅନ୍ୟମନସ୍କ ରହୁଥିଲା ।

ବହୁତ ରାତିରେ ସେ ଶୋଇବାକୁ ଗଲା । ତାକୁ ଅଶ୍ୱସ୍ତି ଲାଗୁଥିଲେ ବି ମନକୁ ଆଶ୍ୱାସନା ଦେଉଥିଲା – ଆହୁରି ଗୋଟାଏ ଦିନ ତ ଅଛି ।

ବାହାଘର ଦିନ ଅନିଚ୍ଛା ସତ୍ତ୍ୱେ ସୁନ୍ଦର ଶାଢ଼ୀ ପିନ୍ଧିଲା । ଅଳଙ୍କାର ବି କିଛି ବାକ୍ସରୁ ବାହାର କଲା । ଭୋଜିର ଆୟୋଜନ ଖୁବ୍ ଜୋର୍‌ରେ ଲାଗିଥିଲେ ବି ଯଥାସମ୍ଭବ ସେଥିରୁ ନିଜକୁ ଦୂରେଇ ରଖିଲା । ସେ ଦାଣ୍ଡ ଆଡ଼କୁ ଲକ୍ଷ୍ୟ ରଖିଥାଏ ଆଗନ୍ତୁକମାନଙ୍କ ଉପରେ । ସିଏ କେତେକଙ୍କୁ ଜାଣିଥିଲା ଏବଂ କେତେକଙ୍କୁ ଜାଣି ନଥିଲା । ବର ଆସିବା ପର୍ଯ୍ୟନ୍ତ ସେ ଚାହିଁ ରହିଥିଲା ଏବଂ ଆଶାକରୁଥିଲା ଯେ ସୁକୁମାର ନିଶ୍ଚୟ ଆସିବେ । ବର ଆସିଲା । ରଞ୍ଜୁକୁ ଏଥର ବେଦିକି ଆଣିବା ନିମନ୍ତେ ଯୋଗାଡ଼ରେ ଏବଂ ବରଯାତ୍ରୀଙ୍କୁ ଭୋଜି ଦେବାରେ ସମସ୍ତେ ବ୍ୟସ୍ତ ରହିଲେ । ତା'ର ଆଉ ଅପେକ୍ଷା କରିବା ନିମନ୍ତେ ଅବକାଶ ନଥିଲା । ବାହାଘର ଦେଖିବା ବା ଅନ୍ୟମାନଙ୍କ ସାଙ୍ଗରେ ମିଶି ଆନନ୍ଦ କରିବା ନିମନ୍ତେ ସେ ସାହସ ଖୋଜି ପାଉନଥିଲା । ତା'ର ମନେ ହେଉଥିଲା, ସତେ ଯେପରି ଅନେକଦିନରୁ ହଜିଯାଇଥିବା ଗୋଟାଏ ବସ୍ତୁକୁ ଖୋଜିବା ନିମନ୍ତେ ତା'ର ଅବିଶ୍ରାନ୍ତ ପରିଶ୍ରମ ବ୍ୟର୍ଥ ହୋଇଛି ।

ବରକନ୍ୟା ବିଦାହୋଇ ଚାଲିଗଲେ; ତା' ସାଙ୍ଗେ ସାଙ୍ଗେ କିଛି ଅତିଥି ଏବଂ ବାନ୍ଧୁବାନ୍ଧବ ବି । ଘରଟା ପୁଣି ଜନଶୂନ୍ୟ ମନେ ହେଲାଣି । ଛାତ ଉପରକୁ ଉଠି ସେ

ନଈ ଆଡ଼କୁ ଚାହିଁଲା । ଶୁଷ୍କଧାର ଅବିଶ୍ରାନ୍ତ ଗତିରେ ଚାଲିଛି । ପବନ ବି ଠିକ୍ ବହୁଛି, ତଳେ ସମସ୍ତେ କ୍ଳାନ୍ତ ହୋଇ ଶୋଇ ପଡ଼ିଲେଣି । ସେଇ ଉଦ୍ଦିଷ୍ଟ ଜାଗାଟିରେ ବସିବାରୁ ତା'ର ମନେହେଲା ଯେ ସୁକୁମାର ହୁଏତ ଖବର ପାଇନଥିବେ । କୋଉଠି ଥିବେ ସେ ! କଳାହାଣ୍ଡି କୋରାପୁଟର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ, ନା ରାଉରକେଲା ସୁନାବେଡ଼ା ପରି ବହୁପ୍ରାନ୍ତୀୟ ସହର । କିପରି ଖାଉଥିବେ ! ନୀରବରେ ଚାଲି ଚାଲି ଆଦିବାସୀ ସଭ୍ୟତାରେ ନିଜକୁ ମିଶେଇ ସାରିବେଣି ଅଥବା ସମସ୍ତଙ୍କ ସାଙ୍ଗେ ମିଶି ସହର ସଭ୍ୟତାଠାରୁ ଦୂରେଇ ରହିଥିବେ । ଏତେ ଅପେକ୍ଷା ପରେ ସୁକୁମାର ଯଦି ନଆସିଲେ ତେବେ ସ୍ମୃତିରୁ ପୋଛିଦେବା ହିଁ ଭଲ । କିନ୍ତୁ କିଏ କହିପାରିବ ଗୌରୀକି ଯେ ସୁକୁମାର ସବୁ ଜାଣିଥିଲା, ଅଥଚ ଆସିଲାନି । ସିଏ କାହାକୁ ପଚାରି ପାରିଲାନି । ଖୋଲା ଆକାଶର ଛାତ ତଳେ ତା'ର କିନ୍ତୁ ଧାରଣା ଦୃଢ଼ୀଭୂତ ହେଉଥିଲା ଯେ ସୁକୁମାର ଫୁଲପରି କୋମଳ ଆଉ ଶିଶୁପରି ନିରୀହ ।

ସେ ଆଉ ନଈ ଆଡ଼କୁ ବା ଆକାଶକୁ ଚାହିଁଲାନି । ତଳକୁ ଆସି ବିଛଣାରେ ଶୋଇ ପଡ଼ିଲା ।



# ପାଦଟିଏ ବଢ଼ାଇ ଅକସ୍ମାତ୍ ଓଲଟି ପଡୁଥିବା ସରୀସୃପ

କେବଳ ଛୋଟ ପିଲା ଏବଂ ଅସମର୍ଥ ଲୋକମାନଙ୍କୁ ଛାଡ଼ିଦେଲେ ବାକି ସମସ୍ତେ ଗଣ୍ଡିଏ ଖାଇବା ପାଇଁ ପ୍ରାଣାନ୍ତକ ଚେଷ୍ଟା କରୁଥିଲେ ସେଇ ପଡ଼ାରେ । ଧାଡ଼ି ଧାଡ଼ି ହୋଇ ଗଢ଼ି ଉଠିଥିବା ଘରଗୁଡ଼ିକରେ ମ୍ୟୁନ୍‌ସିପାଲ୍‌ଟିର ଜଳ ଓ ବିଦ୍ୟୁତ ଯୋଗାଣ ଅବ୍ୟାହତ ଥିଲେ ସୁଦ୍ଧା ଜମି ଖଣ୍ଡିକମାନ କା'ର ନିଜସ୍ୱ ନଥିଲା, ନଈ ବନ୍ଧ ଉପରେ ସେମାନେ ସବୁ ଜବରଦସ୍ତ ଘର ତୋଳିଥିଲେ ବିଭିନ୍ନ ପର୍ଯ୍ୟାୟରେ । ପୈତୃକ ବାସସ୍ଥାନ କାହାର ଧମା, କାହାର ବରଗଡ଼, ବୀର ମହାରାଜପୁର, ଝାରସୁଗୁଡ଼ା, ତାଳଚେର ବା ଏମିତି ଆଉ କିଛି । ମାଟି କାନ୍ଥର ଛୋଟ ଘରଗୁଡ଼ିକରେ ଖପର ଛାଉଣୀ ଦୁଇ ତିନୋଟି ପକ୍‌କାଘର ଏବଂ ତା'ର ଗୃହକର୍ତ୍ତାମାନେ କେଉଁ କାର୍ଯ୍ୟାଳୟରେ ହୁଏତ ପିଅନ, ଖଲାସୀ ବା କିରାଣୀ ।

ସୂର୍ଯ୍ୟ ଆତ୍ମପ୍ରକାଶ କରୁଥିଲା ପ୍ରବହମାନ ନଦୀର ପାହାଡ଼ ଧାରରେ । ତା'ର ପ୍ରତିବିମ୍ବ ନଦୀ ଜଳରେ ଦେଖି ମୁଗ୍ଧ ହେବାକୁ, ଜାଲୁଆମାନଙ୍କର ମିଠା ମିଠା ସଙ୍ଗୀତରେ ଆମୋଦିତ ହେବାକୁ ବା କୁହୁଡ଼ିର ବେଷ୍ଟନୀ ମଧ୍ୟରେ ହଜିଯିବାକୁ କାହାରି ସ୍ପୃହା ହୁଏନାହିଁ ଏଠି । ସକାଳର ଆବାହନୀ ହୁଏ ସ୍ତ୍ରୀଲୋକମାନଙ୍କର ଚିତ୍କାରପୂର୍ଣ୍ଣ ତକରାଳରେ । ସନ୍ଧ୍ୟା ବିଦାୟ ସଙ୍ଗୀତରେ ଥାଏ ପୁରୁଷମାନଙ୍କର ଧମକପୂର୍ଣ୍ଣ ଗାଳି ବର୍ଷଣ । ଦିନଯାକର କଠିନ ପରିଶ୍ରମ ପରେ କୁସୁନା ପିଇ ସମସ୍ତେ ଜଣେ ଜଣେ ରାଜା ପାଲଟିଯାଆନ୍ତି । ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ସେଇ ଗାଳିର ପୁନରାବୃତ୍ତି ଚାଲିଥାଏ ସ୍ତ୍ରୀ ବା ପଡ଼ୋଶୀ ଉପରେ । ପୁଣି ସକାଳୁ ଉଠି ସମସ୍ତେ ନିଜ ନିଜ କାମକୁ ବାହାରନ୍ତି ରିକ୍ସା ଧରି, ସାଇକେଲ୍‌ରେ ଟିଣ ସଂଗ୍ରହକରି ବା ଚାଲି ଚାଲି ଦିନ ମଜୁରୀ ନିମନ୍ତେ । ସ୍ତ୍ରୀମାନେ ପାଣିକଳ ନିକଟରେ ଜମା ହୁଅନ୍ତି ବାସନ, ବାଲ୍ଟି ବା ଗରାସହ । କିଏ ଆଗ ପାଣି ନବ, କାହାର ପାଣି ବେଶୀ ହେଲା- ସେଇଥିପାଇଁ ଚାଲେ କଳିତକରାଳ । ପାଖ ପଡ଼ାର ଲୋକମାନେ ଅଥୟ ହୁଅନ୍ତି । ଛୋଟ ପିଲାମାନେ ଛିଣ୍ଡା ପ୍ୟାଣ୍ଟ ସାର୍ଟ ପିନ୍ଧି, ସିଙ୍ଘାଣିବୁହାକୁ ଭ୍ରୂକ୍ଷେପ

ନକରି ଗୁଲି ଖେଳନ୍ତି, ଝିକର ଡିଅଁନ୍ତି, ମରାମରି ହୁଅନ୍ତି; କାନ୍ଦି କାନ୍ଦି ମାଆମାନଙ୍କ ପାଖକୁ ଦୌଡ଼ନ୍ତି, ପାଉଁରୁଟିବାଲା ଆସିଲେ ତା ଚାରିପଟେ ଘେରନ୍ତି, କାଦୁଅ ସରସର ହୋଇ ପାଣିରେ ଭିଜନ୍ତି ।

ଏଇ ପଡ଼ାର ସଦାନନ୍ଦ । ବୟସ ଚବିଶ କି ପଚିଶ । ସବୁବେଳେ ହସ ହସ । ତା' ବାପା ବରଗଡ଼ ନିକଟ କୋଉ ଗାଆଁରୁ ଆସିଥିଲେ ଜମି, କେତୋଟି ଆମ୍ବଗଛ ଓ ଘର ଡିହକୁ ପର୍ଯ୍ୟାୟକ୍ରମେ ବିକ୍ରିକରି । ପ୍ରଥମେ ଆସିବା ସମୟରେ ଯେଉଁ ଟିଣର ବ୍ୟବସାୟକୁ ବଞ୍ଚିବାର ଅବଲମ୍ବନ କରି ନେଇଥିଲେ, ସେଇଟା ତା'ର ଖାନ୍‌ଦାନୀ । ସହର ତମାମ ବୁଲି ସେ ଖାଲି ତେଲ ଟିଣ ସଂଗ୍ରହ କରେ । ଛୋଟ ବଡ଼ ତେଲ ଟିଣ, ଅମୁଲ ଟିଣ, ପାନ ମସଲାର ଟିଣ – ସାଇକେଲରେ ଘୂରି ସଂଗ୍ରହ କରିବାକୁ ପଡ଼େ ଦୋକାନୀମାନଙ୍କଠାରୁ । ରିକ୍ସାରେ ଲଦି ଘରକୁ ଆଣିବା ପରେ ଖାଇପିଇ ବିଶ୍ରାମ ନିଏ । କିନ୍ତୁ କାମରେ ଲାଗିଯାନ୍ତି ତା'ର ମାଆ ଓ ଭଉଣୀମାନେ । ଖଣ୍ଡେ କାଠି ବା ଲୁହା ପାତିଆରେ ଘସି ତେଲ ଚିକିଟା ଛଡ଼ାଇବା ପରେ ଶସ୍ତା ଲୁଗାଧୁଆ ଗୁଣ୍ଡରେ ଚିକ୍ ଚିକ୍ କରି କୂଅ ମୂଳରେ ଜମା କରାଯାଏ । ବାଲ୍‌ଟି ବାଲ୍‌ଟି ପାଣିରେ ତାକୁ ସଫା କରାଯାଏ । ଏତିକିବେଳେ ପଡ଼ାରେ ପୁଣି ପାଟିଗୋଳ ଶୁଭେ । କିଏ କାହାକୁ ଟପି ଶୀଘ୍ର ପାଣି ଆଣିପାରିବ ।

ସନ୍ଧ୍ୟା ପୂର୍ବରୁ ଟିକେ ଶାନ୍ତ ପଡ଼େ । ବେପାରୀ ଟିଣ ଗଣି ଦେଇଯାଏ । ଫୁଟାମାନଙ୍କୁ ଅଲଗା କରିଦିଏ କିମ୍ବା ତା'ର ଅଲଗା ଦର । ଫୁଟାକୁ ଲୁଚାଇବା ପାଇଁ ଖୁବ୍ କାଇଦାରେ ଅଠା ମାରିଦିଅନ୍ତି । ନହେଲେ କ୍ଷତିର ସମ୍ଭାବନା ବେଶୀ । ଗୋଦାମରେ ପହଞ୍ଚାଇବା କାମ ସଦାନନ୍ଦମାନଙ୍କର । ନଗଦା ନଗଦ ପଇସା । ସନ୍ଧ୍ୟା ବେଳଟା ଫୁର୍‌ସତ୍ । କିଏ କିଏ ସବୁ ଦେଶୀ ମଦ ଭାଟିକୁ ଯାଆନ୍ତି ବା ସିନେମା ହଲ୍ । ବେଶୀ ପୁଞ୍ଜି ବା ସ୍ୱାଚ୍ଛନ୍ଦ୍ୟ ଆବଶ୍ୟକ ନାହିଁ । ଦିନଟିଏ ଆରମ୍ଭ ହୋଇ ଶେଷ ହୋଇଗଲେ ଯାଏ ।

ସଦାନନ୍ଦ ଟିଣ ବେପାରକୁ ଆସିବା ପୂର୍ବରୁ ତା' ବାପାର ଏଥିରେ ଖୁବ୍ ନାମ । ତା' ସମୟରେ ସେ ଖଟୁଥିଲା ଅନେକ; ପିଉଥିଲା, ମଉଜ କରୁଥିଲା । ଶାଳୀ ସହିତ ତା' ସ୍ୱାମୀର ତକରାଳ ହେବାରୁ ତାକୁ ଆଣି ଘରେ ରଖିଲା । ଆଉ ଛାଡ଼ିବା ଆବଶ୍ୟକ ପଡ଼ିଲାନି । ତା'ର ଗୋଟିଏ ଝିଅ ବି ହେଲା । ଅତ୍ୟଧିକ ମଦ୍ୟପାନ ଯୋଗୁଁ ଟି.ବି.ରେ ଆକ୍ରାନ୍ତ । ଏବେ ସିଏ ଆଉ ବାହାରକୁ ଯାଉନି । ବାପାର ପଦାଙ୍କ ଅନୁସରଣ କରୁଛି ସଦାନନ୍ଦ ।

ବାପା ରୋଜଗାରର ଶୀର୍ଷ ସମୟ । ସଦାନନ୍ଦ କାମ କରୁଥିଲା – 'ଗୋଟେ ଅର୍ଦ୍ଧ

ସରକାରୀ ସଂସ୍ଥାରେ ଜଗୁଆଳ । ଆଠ ଘଣ୍ଟା କାମ । ଯାହା ପାଉଥିଲା ଘରେ ତା'ର ହିସାବ କେହି ମାଗେନି । ସିଏ କୁଆଡ଼େ ଚାଲି ଯାଉଥିଲା ମଝିରେ ମଝିରେ - ତାଙ୍କ ନିଜ ଗାଆଁକୁ ଅଥବା ସାମାଜିକ ଅନୁଷ୍ଠାନର ସାଂସ୍କୃତିକ କାର୍ଯ୍ୟକ୍ରମରେ । ପଡ଼ାରେ କିଏ ଡାକ୍ତରଖାନାରେ ପଡ଼ିଛି, ସଦାନନ୍ଦ ଡେରିରେ ହେଲେ ବି ପହଞ୍ଚିବ । ରକ୍ତ ଦରକାର, ନିଜେ ଦେବାକୁ ସଦାବେଳେ ଆଗଭର । ଗ୍ରୁପ୍ ମେଳ ଖାଉନି ବା ଅଳ୍ପଦିନ ତଳେ ରକ୍ତ ଦେଇଥିବା ଯୋଗୁଁ ଡାକ୍ତର ମନାକଲେ, ମେଳ ଖାଉଥିବା ବ୍ୟକ୍ତିକୁ ଖୋଜିଆଣିବ । ରୋଗୀ ଔଷଧ କିଣି ପାରୁନି, ଦୁଇ ତିନିଜଣଙ୍କୁ ସାଙ୍ଗ କରିବ । ପଡ଼ାରେ ବୁଲି ବୁଲି ମାଗିବ । ମଡ଼ା ଉଠି ପାରୁନି, ପେଟେ ପିଇଥିବା ଲୋକମାନଙ୍କ ସାଙ୍ଗରେ ମିଶି କୋକେଇରେ କାନ୍ଧ ଦେବ । ଇଏ ସଦାନନ୍ଦ ।

କ୍ରମାଗତ କାର୍ଯ୍ୟରେ ଅନୁପସ୍ଥିତି ଯୋଗୁଁ ତା'ର ଦରମା କଟେ । ସିଏ ନିର୍ବିକାର । ଯାହା ମିଳିଲା ତାକୁ ଧରି ଚାଲିଆସେ । ଗାମୁଛା ଗୁଡ଼େଇହୋଇ ଲାଗିଯାଏ କାମରେ । ବଗିଚା ପାଣି ଦେବାକୁ ହେଉ କି ପରିଚାଳକଙ୍କ ଗୋରୁମାନଙ୍କ ଲାଗି ଘାସ କାଟିବାକୁ ହେଉ, ଗହମ ପେଶାଇବା ପାଇଁ, ପିଲା ସ୍କୁଲରୁ ଫେରି ନାହାନ୍ତି ଦେଖିବା ପାଇଁ ବା କୌଣସି ଆବଶ୍ୟକ ଗୃହ ସାମଗ୍ରୀ ବଜାରରୁ ଜରୁରୀ ଆଣିବା ପାଇଁ ସଦାନନ୍ଦ । ପରିଚାଳକ ରହୁଥିବା ପଡ଼ାର କିରାଣୀ ହୁଅନ୍ତୁ ବା ପିଅନର ସ୍ତ୍ରୀ ହେଉ, ଯିଏ ଯେଉଁ ଅନୁରୋଧ କରିବ ଆଗଭର ସଦାନନ୍ଦ ।

ଥରେ ଦୁଇଦିନରେ ଆସିବ କହି ପନ୍ଦରଦିନ ପର୍ଯ୍ୟନ୍ତ ଆସିଲାନି । କାର୍ଯ୍ୟାଳୟ ତଥା କଲୋନୀର ସମସ୍ତେ ଜାଣିଲେ ସଦାନନ୍ଦ ଅନୁପସ୍ଥିତ । ତା' ଉପରେ ବିରକ୍ତି ପ୍ରକାଶ କରୁଥିଲେ ପରିଚାଳକ । ତା ବାପାମା ପାଖକୁ ଖବର ଗଲା । ଚାକିରିରୁ ବାହାର କରିଦେବାର ଧମକ ଦେଲେ । ସମସ୍ତେ କିନ୍ତୁ ତା'ର ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କରିଥିଲେ । ଏହା ପୂର୍ବରୁ ସେ କୁଆଡ଼େ ଯିବ ବୋଲି ବାରମ୍ବାର ଅନୁପସ୍ଥିତ ରହୁଥିଲା । ଅଥଚ ଏତେ ଦୀର୍ଘ ଅନୁପସ୍ଥିତିର କାରଣ କେହି କିଛି ଅନୁମାନ କରିପାରୁ ନଥିଲେ । କେହି କେହି ଭାବୁଥିଲେ ସଦାନନ୍ଦ ଅନ୍ୟ କେଉଁଠି ରହିଲାଣି । ତା'ଠାରୁ ଅଳ୍ପ ବଡ଼ ଅବିବାହିତା ଭଉଣୀଟିଏ ଥିଲା । ତା' ପାଇଁ ଗୋଟିଏ ପାତ୍ର ଯୋଗାଡ଼ କରିବା ପାଇଁ ହୁଏତ କେଉଁଠି ଅଟକିଯାଇଛି । ଫୁଲାଫାଙ୍କିଆ ପିଲାଟା କୁଆଡ଼େ ବୁଲିବାକୁ ଯାଇଥାଇପାରେ ବୋଲି କଲୋନୀର ସ୍ତ୍ରୀଲୋକମାନେ କୁହାକୁହି ହେଉଥିଲେ । କୌଣସି ଦୁର୍ଘଟଣା ନ ପଡ଼ିଥାଉ - ତା' ମାଆ ଠାକୁରାଣୀ ପାଖରେ ପ୍ରାର୍ଥନା କରୁଥିଲା ।

ସମସ୍ତଙ୍କ ଅନୁମାନ ମିଥ୍ୟା । ସଦାନନ୍ଦ ଫେରି ଆସିଲା ପ୍ରତିଦ୍ୱନ୍ଦ୍ୱିକୁ ପରାଭୂତ କରିଥିବାର ଗୌରବ ନେଇ । ସାଥୀରେ ଝିଅଟିଏ । ନିଜର ପ୍ରେମିକା ରୂପେ ସଦାନନ୍ଦ

ଦାବି କରୁଥିଲା । ପରିସ୍ଥିତିରେ ପଡ଼ି ଅନ୍ୟତ୍ର ବିବାହ କରିଥିଲା ସିଏ ନିଜ ଇଚ୍ଛା ବିରୁଦ୍ଧରେ । ବାରମ୍ବାର ଖବର ପଠାଉଥିଲା । ସଦାନନ୍ଦ ସେଇଠି ଅଟକି ଯାଇଥିଲା ଏବଂ ସୁଯୋଗ ପାଇବା ମାତ୍ରେ ଝିଅଟିକୁ ଧରି ଚାଲିଆସିଛି ।

ସଦାନନ୍ଦ ବାରମ୍ବାର ଅନୁପସ୍ଥିତ ରହୁଥିଲା । ପରିଚାଳକ ତା' ଉପରେ ବିରକ୍ତ ହେଉଥିଲେ । ଦରମା କାଟି ଦେଉଥିଲେ । ବାପା କାମ କରିପାରୁନଥିଲା । ପରିବାରରେ ଜଣେ ସାମିଲ ହେବା ସାଙ୍ଗକୁ ଆହୁରି ଜଣକର ଆଗମନର ଯଥେଷ୍ଟ ସମ୍ଭାବନା ପ୍ରକାଶ ପାଇ ସାରିଥିଲା । ଖର୍ଚ୍ଚର ଅଟକଳ ବଢୁଥିଲା, ଅଥଚ ଅନୁପସ୍ଥିତ ଜନିତ କାରଣରୁ ବେତନ କଟିଯାଉଥିଲା । ମନୁଦଃଖ କରୁଥିଲା ସଦାନନ୍ଦ । ସ୍ତ୍ରୀ ପାଇଁ ସୁଷମ ଖାଦ୍ୟ ଯୋଗାଡ଼ ନିମନ୍ତେ ଡାକ୍ତରଙ୍କ ପରାମର୍ଶ ସେ କାର୍ଯ୍ୟକାରୀ କରିପାରୁନଥିଲା । କାମରେ ମନ ଦେଇପାରୁନଥିଲା । ଅନ୍ୟମନସ୍କ ରହୁଥିଲା ।

କୌଣସି ନୂତନ ରୋଜଗାରର ପନ୍ଥା ନିର୍ଦ୍ଧାରଣ ନିମନ୍ତେ ଚିନ୍ତା କରୁଥିବା ବେଳେ ଆକସ୍ମିକ ଭାବେ ତା' ସ୍ତ୍ରୀ କନ୍ୟା ସନ୍ତାନଟିର ଜନନୀ ହେଲା, ନିର୍ଦ୍ଧାରିତ ସମୟର ବହୁ ପୂର୍ବରୁ । ପିଲାଟିର ଓଜନ ଯଥେଷ୍ଟ କମ । ଡାକ୍ତରଖାନାରେ ପ୍ରସବ କରାଇବା ଆବଶ୍ୟକ ପଡ଼ିନଥିଲା । କିନ୍ତୁ ଖୁବ୍‌ଶୀଘ୍ର ଡାକ୍ତରଖାନାରେ ଭର୍ତ୍ତି କରାଇବାକୁ ହେଲା ପିଲାଟିକୁ । ତା'ର ଜ୍ୱର ସାଙ୍ଗକୁ ଛାତିରେ କଫ ଜମିଯାଇଥିଲା । ନିଃଶ୍ୱାସ ନେବାରେ କଷ୍ଟ ହେଉଥିଲା । ଶିଶୁରୋଗ ବିଶେଷଜ୍ଞ ଯେଉଁ ପ୍ରତିବିଧାନ କରୁଥିଲେ ସେଥିରେ ରୋଗର କୌଣସି ଉପଶମ ହେଉନଥିଲା । ଆୟୁର୍ବିଜ୍ଞାନ ମହାବିଦ୍ୟାଳୟକୁ ନେଇଯିବା ପାଇଁ ସେ ଉପଦେଶ ଦେଇଥିଲେ ଏବଂ ବିନାଦ୍ୱିଧାରେ ସଦାନନ୍ଦ ଗଲା ମଧ୍ୟ । ଏଠାରେ ଦିନକୁ ହାରାହାରି ଚାରିଶହ ଟଙ୍କା ଖର୍ଚ୍ଚ ହେଉଥିଲା କେବଳ ଔଷଧ ବାବଦରେ । ପନ୍ଦର ଦିନ ରହିବା ପରେ ଶିଶୁଟିକୁ ଜୀବନ୍ତ ଓ କିଛି ମାତ୍ରାରେ ସୁସ୍ଥ ଅବସ୍ଥାରେ ଧରି ଘରକୁ ଫେରିଲା । ପହଞ୍ଚିବା ବେଳକୁ କରଜର ମାତ୍ରା ବହୁତ ବେଶି ।

ଏହା ପରର ଘଟଣାବଳୀ ସଦାନନ୍ଦ ପାଇଁ ଉତ୍ସାହପ୍ରଦ ନୁହେଁ । ପରିଚାଳକଙ୍କ ପରିବର୍ତ୍ତନ ସାଙ୍ଗକୁ ଖର୍ଚ୍ଚକାଟ ନାମରେ କେତେକ କର୍ମଚାରୀ ଛଟେଇ ଓ ସେଇମାନଙ୍କ ମଧ୍ୟରେ ସଦାନନ୍ଦ । ରୋଗାକ୍ରାନ୍ତ ବାପା ଘରେ ବସି ରହିଥିଲା । ଶିଶୁ କନ୍ୟାଟି ଲାଳ ଗଡ଼ାଉଥିଲା ଏବଂ ଧରିବା ବେଳକୁ ମୁଣ୍ଡ ସଳଖି ପାରୁନଥିଲା । ପୂର୍ବରୁ ଭଉଣୀ ଓ ମାଆ ବିରକ୍ତି ପ୍ରକାଶ କରୁଥିଲେ । ତା'ର ଅବର୍ତ୍ତମାନରେ ବିରକ୍ତି ତା' ଶ୍ରୁତିଶକ୍ତିକୁ ପରାଭୂତ କରିପାରୁନଥିଲା । ସେ ସିଦ୍ଧାନ୍ତ କରିନେଇଥିଲା ଯେ, କୌଣସି ଅସ୍ଥାୟୀ ଚାକିରିର ଆୟରେ ଘର ଚଳାଇବା ଅସମ୍ଭବ । ଅନେକ ଗୁଡ଼ିଏ ଯୋଜନା ମଧ୍ୟରେ ପିତାଙ୍କର ସେଇ ଟିଣ ବ୍ୟବସାୟ ତାକୁ ଉତ୍କୃଷ୍ଟ ମନେହେଲା । ଅଳ୍ପ ପୁଞ୍ଜି ସଂଗ୍ରହ କରି

କାମକୁ ବାହାରି ପଡ଼ିଲା ସିଏ । ବାପା ଖୁସି ହୋଇଥିଲା । ସ୍ତ୍ରୀର ମୁହଁରେ ବିଷର୍ଣ୍ଣତା । ମାଆ ଓ ଭଉଣୀ ଅଭିବ୍ୟକ୍ତିଶୂନ୍ୟ ।

ପ୍ରଥମ ଦୁଇ ତିନି ମାସର କାମରେ ସନ୍ତୋଷ ପ୍ରକାଶ କରିଥିଲା ସଦାନନ୍ଦ । କେବଳ ସହର ମଧ୍ୟରେ ନିଜକୁ ସୀମିତ ନରଖି ଗାଆଁଗହଳିରୁ ଶସ୍ତା ଦରରେ ଟିଣ କିଣୁଥିଲା ଏବଂ ଅପେକ୍ଷାକୃତ ବେଶି ଲାଭ ପାଉଥିଲା । ଟିଣ ସାଙ୍ଗକୁ ଅଖା କିଣି ବ୍ୟବସାୟ ସମ୍ପ୍ରସାରଣ କରିବାକୁ ଆଗ୍ରହ ପ୍ରକାଶ କରୁଥିବା ସଦାନନ୍ଦ ଝିଅକୁ ନେଇ ବାରମ୍ବାର ଡାକ୍ତରଖାନା ଯାଉଥିଲା ଏବଂ ତା' ଅବସ୍ଥାରେ କିଛି ଉନ୍ନତି ହେଉଥିବାର ଅନୁଭବ କରି ପାରୁଥିଲା । ଶୋଇଲା ବେଳେ ଝିଅ ମୁଣ୍ଡ ସିଧା କରି ପାରୁନଥିଲା ଓ ତା'ର ସେରେବ୍ରାଲ ପାଲ୍‌ସି ହୋଇଛି ବାଲି ଡାକ୍ତରମାନେ କହୁଥିଲେ । ତା'ର ଧାରଣା କ୍ରମେ ଦୃଢ଼ୀଭୂତ ହେଉଥିଲା ଯେ ଝିଅ ହୁଏତ ଆଉ ସାଧାରଣ ଅବସ୍ଥାକୁ ନ ଫେରିପାରେ । ତଥାପି ସ୍ନାୟୁରୋଗ ବିଶେଷଜ୍ଞ, ଅସ୍ଥିଶଲ୍ୟ ବିଶେଷଜ୍ଞ ଓ ଶିଶୁରୋଗ ବିଶେଷଜ୍ଞମାନଙ୍କ ନିକଟକୁ ବାରମ୍ବାର ଯାଉଥିଲା । କିଏ କେବେ ଝିଅର ସ୍ୱାସ୍ଥ୍ୟ ସମ୍ବନ୍ଧରେ ପ୍ରଶ୍ନକଲେ ସାମାନ୍ୟ ଉନ୍ନତି ହେଉଛି ବୋଲି କହୁଥିଲା ।

ଅବିବାହିତା ଭଉଣୀ କ୍ରମେ ଅସହିଷ୍ଣୁ ହୋଇ ଉଠୁଥିଲା ଓ ମଝିରେ ମଝିରେ ସଦାନନ୍ଦ ବା ତା' ସ୍ତ୍ରୀ ସାଙ୍ଗରେ ଝଗଡ଼ା କରୁଥିଲା । ଝଗଡ଼ାର କୌଣସି ବଳିଷ୍ଠ କାରଣ ନ ଥିଲା – କେବେ ସାବୁନ୍ ଆସିଲା ନାହିଁ ବା ମ୍ୟାଚିଂ ବ୍ଲାଉଜ୍ ଅଣାହୋଇନି ବୋଲି । ମାଆ ତା'ର ପକ୍ଷ ନେଉଥିଲା ଏବଂ ପକ୍ଷାନ୍ତରେ ଭଉଣୀକୁ ଅଭିଆଡ଼ା ରଖି ନିଜେ ମଉଜ କରୁଛୁ ବୋଲି ତାଚ୍ଛଲ୍ୟ କରୁଥିଲା । ଏବେ ସଦାନନ୍ଦ ଭାବୁଥିଲା, ଭଉଣୀ ବିବାହ ପୂର୍ବରୁ ବିବାହ କରି ସେ ହୁଏତ ଭୁଲ୍ କରିଛି । ତେଣୁ ମାଆ ଓ ଭଉଣୀର ଭର୍ତ୍ସନାକୁ ନୀରବରେ ଆତ୍ମସାତ୍ କରୁଥିଲା । ଭଉଣୀକୁ ଖୁସି କରିବା ପାଇଁ ସାପ୍ତାହିକ ହାଟରେ ହୁଏତ ଆଖୁ ବିକ୍ରୟ କରୁଥିଲା ବା ସୁଦୂର ପଦ୍ମପୁରରୁ ଖଟିଆ କିଣିଆଣି ଭବିଷ୍ୟତରେ ବିକିବ ବୋଲି ସାଇତି ରଖିଥିଲା । ତାକୁ ଏ କାର୍ଯ୍ୟରେ କେହି ବି ଉତ୍ସାହିତ କରୁନଥିଲେ । ହର୍ଷଶୂନ୍ୟ ସଦାନନ୍ଦ ନୈରାଶ୍ୟ ମଧ୍ୟରେ ବୁଡ଼ିଯାଇଥିଲା ।

ଇତି ମଧ୍ୟରେ ସଦାନନ୍ଦ ବୁଝିପାରିଲା ଯେ ତା' ସ୍ତ୍ରୀ ଦ୍ୱିତୀୟବାର ସନ୍ତାନ ସମ୍ଭବା ହେବାକୁ ଯାଉଛି । କିଏ ଜାଣେ ଏଇ ପିଲାଟି ହୁଏତ ପ୍ରଥମ କନ୍ୟାର ଦୁଃଖଦ ଅନୁଭୂତିକୁ ବହନ କରି ଆଣିବ । ସେ କିନ୍ତୁ ଆବେଗହୀନ ଭାବରେ ସବୁ କରି ଚାଲିଥାନ୍ତା, ଯଦି ଦିନେ ଉଚ୍ଚବାଚ ଯୋଗୁଁ ଭଉଣୀ କିରୋସିନ ଢାଳି ନିଜ ଦେହରେ ଅଗ୍ନିସଂଯୋଗ ନ କରିଥାନ୍ତା । ହତଚକିତ ସଦାନନ୍ଦ ନିକଟରେ ଭଉଣୀକୁ ଡାକ୍ତରଖାନାକୁ ନେବା ବ୍ୟତୀତ ଅନ୍ୟ ଉପାୟ ନଥିଲା । ସେ ଜାଣିଥିଲା ପୋଲିସ୍ କେଶ୍ ହେବ । ଅନେକ ଔଷଧର

ବ୍ୟବସ୍ଥାପତ୍ର ତା' ହାତକୁ ବଢ଼ାଇ ଦିଆଯିବ । ଔଷଧ ଠିକ୍ ସମୟରେ ପହଞ୍ଚାଇ ନପାରିବାରୁ ଡାକ୍ତର, ସେବାକାରିଣୀମାନେ ବିରକ୍ତି ପ୍ରକାଶ କରିବେ । ଭଉଣୀ ଯନ୍ତ୍ରଣାରେ ଚିତ୍କାର କରୁଥିବ । ମାଆ ତା ନିକଟରେ ଠିଆ ହୋଇ କାନ୍ଦିବ । ତେବେ ସେଇ ସମୟ ପାଇଁ ସେଇଟା ହିଁ କାମ୍ୟ ।

ଆମ୍ବୁଲାନ୍ସ ଡକାଇ ଭଉଣୀକୁ ଡାକ୍ତରଖାନା ନେବାରେ ପଡ଼ାର କେତେଜଣ ଉତ୍ସାହୀ ପିଲା ସାହାଯ୍ୟ କଲେ । ଶଲ୍ୟ ବିଶେଷଜ୍ଞ ଶତକଡ଼ା ଷାଠିଏ ଭାଗ ପୋଡ଼ିଯାଇଛି ବୋଲି କହୁଥିଲେ । ଭଉଣୀକୁ ନିଦ ଇଞ୍ଜେକ୍ସନ୍ ଦିଆଯାଇଥିଲା । ତା' ଦେହରେ କେତେକ ଜାଗାରୁ ଚମଡ଼ା ଛାଡ଼ି ଯାଇଥିଲା ଓ ଆଉ କେଉଁ ଅଂଶରେ ବଡ଼ ବଡ଼ ଫୋଟକା । ଗୋଡ଼ ଓ ହାତରେ ସାଲାଇନ୍ ଚାଲିଥିଲା । ଚମଡ଼ା ଛାଡ଼ିଯାଇଥିବା ଅଂଶମାନଙ୍କରେ ସିଲ୍‌ଭର ସଲ୍‌ଫାଡ଼ାଇଜିନ୍ ମଲମର ପ୍ରଲେପ । ଆକସ୍ମିକ ଭାବେ ମୁହଁଟି ଅକ୍ଷତ । ଅତି କମ୍‌ରେ ଆଠଘଣ୍ଟା ମଧ୍ୟରେ ଛଅଟି ସାଲାଇନ୍ ଓ ତା' ପରବର୍ତ୍ତୀ ଷୋଳ ଘଣ୍ଟାରେ ଛଅଟି ସାଲାଇନ୍‌ର ଆବଶ୍ୟକତା ଥିଲା । ଘାଆ ଶୁଖିବା ପାଇଁ ଯେଉଁ ଇଞ୍ଜେକ୍‌ସନ୍‌ର ବ୍ୟବସ୍ଥାପତ୍ର ତା' ହାତକୁ ବଢ଼ାଇ ଦିଆଯାଉଥିଲା, ତାକୁ କୁଣ୍ଠିତ ଭାବେ ଗ୍ରହଣ କରୁଥିଲା ସଦାନନ୍ଦ । ଗୋଟେ ସାଲାଇନ୍ ସରିବା ବେଳକୁ ଆଉ ଗୋଟେ ଆଣି ପହଞ୍ଚାଇ ପାରୁନଥିଲା । ପଡ଼ାର ପୁରୁଷ, ସ୍ତ୍ରୀ, ପିଲାମାନେ ତା ନିକଟରେ ଛିଡ଼ା ହୋଇଥିଲେ ମଧ୍ୟ ବ୍ୟବସ୍ଥାପତ୍ରଟିକୁ ଧରି ଔଷଧ ଆଣି ପହଞ୍ଚାଇବା ନିମନ୍ତେ କାହା ନିକଟରେ ସାମର୍ଥ୍ୟ ନଥିଲା । ଡାକ୍ତର ଆସି ବାରମ୍ବାର ଆୟୁର୍ବିଜ୍ଞାନ ମହାବିଦ୍ୟାଳୟ ସଂଲଗ୍ନ ହସ୍‌ପିଟାଲ୍‌କୁ ନେଇଯିବା ପାଇଁ କହୁଥିଲେ । ମାଗି ମାଗି ଯେତିକି ସଂଗ୍ରହ କରାଯାଉଥିଲା ତାହା ଖୁବ୍ ଶୀଘ୍ର ଶେଷ ହୋଇଯାଉଥିଲା । ସମ୍ବଲପୁର ଡାକ୍ତରଖାନାରୁ ବୁର୍ଲା ମେଡ଼ିକାଲ କଲେଜ ଡାକ୍ତରଖାନା କୌଣସି ଗୁଣରେ ଉନ୍ନତ ନୁହେଁ ବୋଲି କେହି କେହି କହୁଥିଲେ । ସେଠି ଚିକିତ୍ସା ଦାୟିତ୍ୱରେ ନିମ୍ନଭାଗରୁ ଶୀର୍ଷ ପର୍ଯ୍ୟନ୍ତ ଥିବା କର୍ମଚାରୀମାନେ ଚିଙ୍କ ବା ଜୋକ ବୋଲି ସମସ୍ତଙ୍କର ଧାରଣା ହୋଇଯାଇଥିଲା । ତେବେ ଏହାର କେତେ ସତ୍ୟତା ଅଛି ସଦାନନ୍ଦ ବୁଝିବାର ଚେଷ୍ଟା କରିନଥିଲା । ଶେଷ ପର୍ଯ୍ୟନ୍ତ ଭଉଣୀକୁ ବଡ଼ ଡାକ୍ତରଖାନାରେ ଅଟକାଇ ରଖିବାର ଚେଷ୍ଟା ବିଫଳ ହେଲା । ରୋଟାରୀ କ୍ଲବ୍‌ର ଆମ୍ବୁଲାନ୍ସ ବିନା ଦେୟରେ ମେଡ଼ିକାଲ୍ କଲେଜ ଜରୁରୀ ଚିକିତ୍ସାରେ ଭର୍ତ୍ତି କରାଇ ଫେରି ଆସିଲା । ଶଲ୍ୟ ଚିକିତ୍ସା ବିଭାଗର ବିଭାଗୀୟ ଅଧ୍ୟାପକ ସକାଳବେଳା ଥରଟିଏ ଆସି ୱାର୍ଡ୍ ପରିଦର୍ଶନ କରୁଥିଲେ । ଉପରଓଳି କେବେ ଆସୁଥିଲେ କେବେ ନାହିଁ । ଆବାସିକ ଡାକ୍ତରମାନେ ତତ୍ତ୍ୱାବଧାନ କରୁଥିଲେ । ଅପେକ୍ଷାକୃତ କମ୍ ବୟସର ଡାକ୍ତରମାନେ କମ୍ ଔଷଧ ଲେଖୁନଥିଲେ । ଭଉଣୀ ପାଇଁ ରକ୍ତ ଦର୍କାର

ବୋଲି ସେମାନେ କହୁଥିଲେ । ତା'ର ମୁତ୍ରାଶୟ ସହ ଗୋଟେ ନଳି ସଂଯୋଗ କରି ବାହାରେ ପ୍ଲାଷ୍ଟିକ୍ ମୁଣାରେ ପରିସ୍ରା ସଂଗ୍ରହ କରାଯାଉଥିଲା । ପ୍ରଥମ ଦୁଇଦିନ କମ୍ ପରିସ୍ରା ହେଲା । ତେଣୁ ମୁତ୍ରଯନ୍ତ୍ର କାମ କରୁନି ବୋଲି କହୁଥିଲେ । ତା'ପରେ କିନ୍ତୁ ସ୍ୱାଭାବିକ ଭାବେ ପରିସ୍ରା ହେଲା ଏବଂ ଡାକ୍ତରମାନଙ୍କ ମନରେ ଯେଉଁ ହଜାଇ ଦେବାର ଭାବଟି ଥିଲା ତାହା ଅପସରି ଯାଇଥିଲା ।

ସାତଦିନ ପରେ ଡାକ୍ତରମାନେ ଜୀବନ ସଙ୍କଟ ସମୟ ଅତିକ୍ରାନ୍ତ ହୋଇଯାଇଛି ବୋଲି ମତଦେଲେ ଏବଂ ସଦାନନ୍ଦ ଅତିକଷ୍ଟରେ ଭଉଣୀକୁ ଧରି ଘରକୁ ଆସିଲା । ସେତେବେଳେ ତା'ର ଘା ମୋଟେ ଶୁଖି ନଥିଲା, ବରଂ ସ୍ଥାନେ ସ୍ଥାନେ ପୂଜ ବାହାରୁଥିଲା । ସତକଥା କହିବାକୁ ଗଲେ, କେହି ସେବା କରିବା ନିମନ୍ତେ ରହିବାକୁ ରାଜି ହେଉନଥିଲେ । ତେଣୁ ସଦାନନ୍ଦ ନିଜେ ନେଇ ଆସିବାର ପ୍ରସ୍ତାବ ଦେଇଥିଲା ।

ଦୁଇଦିନ ଘରେ ରହିବା ପରେ ଘା' ସଫା ନ ହେଉଥିବାରୁ ସେଥିରୁ ପୂଜ ଓ ଗନ୍ଧ ବାହାରୁଥିଲା । କେବଳ ମା ଓ ସଦାନନ୍ଦ ଛଡ଼ା ସେ ଘରକୁ ଆଉ କେହି ପଶୁନଥିଲେ । ଭଉଣୀର ପାଟିରେ ଘା' ହୋଇଯାଇଥିବାରୁ ସେ କୌଣସି ଖାଦ୍ୟ ଗିଳି ପାରୁନଥିଲା । ହାତ ଦୁଇଟା ଛାତି ସହିତ, ବେକ ଗୋଟିଏ ପଟକୁ ଅଣେଇ କାନ୍ଧ ସହିତ ଲାଗିଯାଉଥିଲା । ସିଧା କରିବାକୁ ଚେଷ୍ଟା କଲେ ସେ ଖୁବ୍ ଜୋର୍‌ରେ କାନ୍ଦି ଉଠୁଥିଲା । ଜଣେ ଘରୋଇ ଚିକିତ୍ସା କରୁଥିବା ଡାକ୍ତର ଆସି ବକଳା ଗୁଡ଼ିକୁ କାଟିଦେଇଗଲେ । କିନ୍ତୁ ସେ ଘରେ ଚିକିତ୍ସାର ଅସଙ୍ଗତି ଯୋଗୁଁ ପୁନର୍ବାର ଆସିବାକୁ ମନା କଲେ । ବାସ୍ତବରେ ଘରଟି ଖୁବ୍ ଛୋଟ ଏବଂ ଅନ୍ଧକାର ଥିଲା । ସେଥିରେ ଖଟଟି ଛଡ଼ା ଜଣେ ଦୁଇଜଣ ଛିଡ଼ା ହେବାକୁ ଜାଗା ମଧ୍ୟ ନ ଥିଲା । ପଡ଼ାର କେହି କେହି ଦେଶୀ ଚିକିତ୍ସକଙ୍କୁ ଡାକି ଚିକିତ୍ସା କରାଇବା ପାଇଁ ପରାମର୍ଶ ଦେଲେ ଓ ସେଇ ସ୍ୱଳ୍ପବ୍ୟୟ ପ୍ରସ୍ତାବଟିକୁ ଶୀଘ୍ର ଗ୍ରହଣ କରିନେଲା ସଦାନନ୍ଦ । ଇତି ମଧ୍ୟରେ ତା' ସ୍ତ୍ରୀର ସନ୍ତାନ ପ୍ରସବ ସମୟ ପାଖେଇ ଆସୁଥିଲା ଏବଂ ପ୍ରଥମ କନ୍ୟାଟି ଖୁବ୍ ଧୀରେ ଗୋଟିଏ ହାତ ପାଟି ପାଖକୁ ନେବାକୁ ଚେଷ୍ଟା କରୁଥିଲା । କିନ୍ତୁ କୌଣସି ଶବ୍ଦ ଉଚ୍ଚାରଣ କରିପାରୁ ନଥିଲା । ସଦାନନ୍ଦର ଟିଣ ଓ ଅଖାର ବ୍ୟବସାୟ ବନ୍ଦ ହୋଇଯାଇଥିଲା । ତା'ର ସଦା ପ୍ରସନ୍ନ ମୁଖଟି ତେଜହୀନ ହୋଇପଡୁଥିଲା ।

ଭଉଣୀ ତା'ର ସମସ୍ତ ଦାୟିତ୍ୱରୁ ସଦାନନ୍ଦକୁ ମୁକ୍ତ କରି ଆଖିବୁଜି ଦେଇଥିଲା ।

ସମସ୍ତ ଶବପାଇଁ ପ୍ରସ୍ତୁତ ସଦାନନ୍ଦ କାନ୍ଧ ନଇଁ ପଡ଼ିଥିଲା । ତା' ଆଖିରୁ ଲୁହ ଝରି ପଡୁଥିଲା । ତା' ସାଙ୍ଗମାନେ ଜୁଇକାଠ ପାଇଁ ପଇସା ଆଦାୟ କରୁଥିଲେ ।

ପ୍ରବଳରୁ ପ୍ରବଳତର ହେଉଥିବା ଜୁଇଆଡ଼କୁ ଥରେ ଓ କ୍ରମେ ଅସ୍ତମିତ ସୂର୍ଯ୍ୟଙ୍କ ଆଡ଼କୁ ଥରେ ଚାହିଁ କାନ୍ଦି ଉଠୁଥିଲା ସଦାନନ୍ଦ ।

□□

# ଧର୍ଷିତା ଧରିତ୍ରୀ

ଓଃ, କି ଦୁଃଖଦ ! ପଢୁ ପଢୁ ସ୍ୱଗତୋକ୍ତି କରୁଥିଲା ଗୌତମ । ସମ୍ବାଦଟି ଛୋଟ ଜାତୀୟ ରାଜପଥ ଛକରେ ଶାନ୍ତନୁ ମହାପାତ୍ରଙ୍କୁ ହତ୍ୟା । ଶାନ୍ତନୁ ପ୍ରଭାବଶାଳୀ ନେତା, ଅଧ୍ୟାପକ, ଡାକ୍ତର, ଇଞ୍ଜିନିୟର, ଜଣାଶୁଣା ବ୍ୟବସାୟୀ ବା କୌଣସି ଶ୍ରମିକ ସଂଗଠନର କର୍ମୀ ନଥିଲା ! ଚୋରୀ ଡକାୟତି, ଜୁଆଖେଳ, ଗୁଣ୍ଡାମୀ, ପକେଟ୍‌ମାର ଗୋଷ୍ଠୀରେ ସଂପୃକ୍ତ ଥିବାର କେହି ସନ୍ଦେହ କରେନି । ସ୍ୱାସ୍ଥ୍ୟ ପତଳା । ଶିକ୍ଷାଗତ ଯୋଗ୍ୟତା- ସ୍ନାତକ ପରୀକ୍ଷାରେ ଅକୃତକାର୍ଯ୍ୟ ବେକାର ଯୁବକଟିଏ । ନୂତନ ଭାବେ ଗଢ଼ି ଉଠିଥିବା ବିଜ୍ଞ ତଥା ବିଶିଷ୍ଟ ନାଗରିକମାନଙ୍କ ଆବାସସ୍ଥଳୀ ରୂପେ ପରିଚିତ ବୈଶାଳୀବିହାର ଛକରେ ହତ୍ୟା କରାଯାଇଥିଲା ଶାନ୍ତନୁକୁ । ତୀକ୍ଷ୍ଣ ଅସ୍ତ୍ର ଦ୍ୱାରା ବିଭିନ୍ନ ଅଙ୍ଗକୁ ଆଘାତ କରିଥିଲେ ଆତତାୟୀମାନେ । ଆକ୍ରମଣ କରିଥିବା ଜାଗାରେ ହିଁ ମୃତ୍ୟୁ ହୋଇଥିଲା ତା'ର । ମେଞ୍ଚା ମେଞ୍ଚା ରକ୍ତ ଧୂଳିପୂର୍ଣ୍ଣ ରାସ୍ତା ଭିଜାଇ ଶୁଖି ଯାଇଥିଲା ।

ପିଲାଟି ମଝିରେ ମଝିରେ ମଦ ପିଉଥିଲା ଅବଶ୍ୟ । ତା ବାପା କେତେ ବର୍ଷତଳେ ରେଳ ବିଭାଗରୁ ଅବସର ଗ୍ରହଣ କରିଥିଲେ । ଅବସର ଜନିତ ଉପାର୍ଜନକୁ ବ୍ୟବସାୟରେ ଖାଟାଇ ପୁଅମାନଙ୍କୁ ସ୍ୱାବଲମ୍ବୀ କରାଇବାର ଇଚ୍ଛା ଧୋଇ ହୋଇ ଯାଇଥିଲା ସମୟକ୍ରମେ । ପ୍ରଥମେ କିଣିଥିବା ଟାକ୍ସି ବା ତା'ପରେ ଆରମ୍ଭ କରିଥିବା ଦୁଗ୍ଧ ବ୍ୟବସାୟ ଚାଲି ନଥିଲା । ବଡ଼ପୁଅ ସୈନ୍ୟବାହିନୀରେ ଦୂରସଂଚାର ଶିକ୍ଷାନବିଶ ଥିବା ବେଳେ ବିବାହ କରିଥିଲା ପାଖର ଗୋଟିଏ ଝିଅକୁ । ବାର୍ଷିକ ଛୁଟିରେ ଆସିବା ବେଳେ ଶଶୁର ଘରେ ଅଧିକାଂଶ ସମୟ କଟାଏ । କଦବା କେମିତି ଆସେ ଅତିଥି ଭଳି । ଶାନ୍ତନୁ ସ୍ନାତକ ପରୀକ୍ଷାରେ ଅକୃତକାର୍ଯ୍ୟ ହେବା ପରେ ଆଉ ପଢ଼ିଲାନି । ତୃତୀୟଟି ପଢୁଛି କୋଉ ଗୋଟିଏ ଅନାମଧେୟ ମହାବିଦ୍ୟାଳୟରେ, ସହରଠାରୁ ଅନେକ ଦୂରରେ । କନ୍ୟାଟିକୁ ବିବାହ ଦେବା ନିମନ୍ତେ ପ୍ରାଣାନ୍ତକ ଉଦ୍ୟମ କରି ଥକ୍କା ହୋଇ ଯାଇଥିଲେ ।

ଉକ୍ତ ଘଟଣାର କେତେଦିନ ପର୍ଯ୍ୟନ୍ତ ଅପେକ୍ଷା କରୁଥିଲା ଗୌତମ ପ୍ରଶାସନର ପଦକ୍ଷେପ । ସେ ତନ୍ନତନ୍ନ ଭାବେ ପଢୁଥିଲା ସମ୍ବାଦପତ୍ର, ହୁଏତ କୌଣସିଠାରେ ଛାଡ଼ି ଯାଇଥିବାର ଆଶଙ୍କାରେ । ପରବର୍ତ୍ତୀ ଘଟଣାଗୁଡ଼ିକୁ କଳ୍ପନା କରୁଥିଲା । ହୁଏତ ତା' ପରଦିନ ବାହାରିଥାନ୍ତା ।

ଶାନ୍ତନୁର ହତ୍ୟାକାରୀକୁ ଖୋଜା ଚାଲିଛି । କୌଣସି କୌଣସି ଦଳୀୟ ନେତାଙ୍କର ଅନୁସନ୍ଧାନରେ ଅବହେଳା ହେଉଛି ବୋଲି ବିବୃତି । ପୁଲିସ୍ ଅଧିକାରୀ ହୁଏତ ବିବୃତି ଦେଉଥାନ୍ତେ ଯେ ତଦନ୍ତ ବହୁତ ଆଗେଇଲାଣି । ପ୍ରତିନିଧି ବା ସମ୍ପାଦକ ଏତେ ବଡ଼ ଲୋମହର୍ଷଣକାରୀ ହତ୍ୟାକାଣ୍ଡ ତଦନ୍ତର ଶିଥିଳତା ସମ୍ବନ୍ଧରେ ମତ ପୋଷଣ କରୁଥାନ୍ତେ ହତ୍ୟାକାଣ୍ଡକୁ ସମର୍ଥନ ବା ବିରୋଧ କରି । କିନ୍ତୁ ସମ୍ବାଦପତ୍ରରେ ଶାନ୍ତନୁର ନାମୋଲ୍ଲେଖ ମଧ୍ୟ ନଥିଲା । ପ୍ରମୁଖ ସ୍ଥାନୀୟ ସମ୍ବାଦପତ୍ରଗୁଡ଼ିକର ନିରପେକ୍ଷତା ଉପରେ ସନ୍ଦେହ ପ୍ରକାଶ କରୁଥିଲା ଗୌତମ - ପୁଲିସ୍ ଅଧିକାରୀଙ୍କ କର୍ତ୍ତବ୍ୟନିଷ୍ଠାକୁ ମଧ୍ୟ ।

ପ୍ରାୟ ସାତଦିନ ତଳେ ଶାନ୍ତନୁ ସହ ଭେଟ ହୋଇଥିଲା ଗୌତମର । ସେଇ ଭକ୍ତିପୂତ ନମସ୍କାର । ସ୍କୁଟରରେ ଯାଉଥିବା ଯୋଗୁଁ ଅଟକିବାର ଅବକାଶ ନଥିଲା । ପୂର୍ବେ ଭେଟୁଥିବା ବେଳେ ଯେଉଁ ଆନନ୍ଦୋଚ୍ଛ୍ୱାସ "ଭାଇନା ନମସ୍କାର" ତାହା ନଥିଲା । ତେବେ ଭକ୍ତିପୂର୍ଣ୍ଣ ଆତ୍ମୀୟତାରେ କିଛି ଆବିଳତା ଥିବାର ମନେ ହେଲାନି । ଶୁଖି ଯାଇଥିଲା ପିଲାଟା । ଏକୁଟିଆ ଛିଡ଼ା ହୋଇଥିଲା ଗୋଟେ ବନ୍ଦ ଦୋକାନ ନିକଟରେ । ଅପରାହ୍ନ ସୂର୍ଯ୍ୟର ତେର୍ଚ୍ଛା ଆଲୋକରେ ତା ପ୍ୟାଣ୍ଟ ସାର୍ଟ ଧୂସର ଓ ବାଳଗୁଡ଼ା ଟାଆଁସା ମନେ ହେଉଥିଲା । ପଥଚାରୀ ବା କିଶୋରୀମାନେ ତା' ଆଡ଼କୁ ଭୟାର୍ତ୍ତ ଦୃଷ୍ଟିରେ ଚାହୁଁନଥିଲେ ବା ସାର୍ଟ ଉପରେ ବୋତାମ ଦୁଇଟା ଖୋଲା ନଥିଲା ।

ଅଥଚ ସାତମାସ ତଳେ ତାକୁ ଖଳନାୟକ ଭାବେ ଚିତ୍ରଣ କରାଯାଇଥିଲା । ସମ୍ବାଦପତ୍ରମାନେ ସ୍ତମ୍ଭ ସ୍ତମ୍ଭ ଲେଖି ଚାଲିଲେ ତା' ବିଷୟରେ । ଗୋଟେ ଧର୍ଷଣ ଘଟଣାରେ ତାକୁ ସଂଶ୍ଳିଷ୍ଟ କରା ଯାଇଥିଲା । ସଂଶ୍ଳିଷ୍ଟ କରାଯାଇଥିଲା ନା ସଂଶ୍ଳିଷ୍ଟ ଥିଲା, ତିନି ଜଣଙ୍କ ଛଡ଼ା ଅନ୍ୟ କେହି ଜାଣି ନଥିଲେ । ସତ କଥା ଜାଣିଥିବେ ଏବଂ କହି ପାରିବେ ଶାନ୍ତନୁ, ଅଧା ତିଆରି ଘରେ ରହୁଥିବା ସେଇ ଧର୍ଷିତା ମୁଲିଆଣୀ ସ୍ତ୍ରୀ ଲୋକଟି ଏବଂ ସବୁ ଦେଖି ପାରିବା ଭଳି ଆଖି ଯଦି କାହାରି ଥାଏ । ପରସ୍ପର ବିରୋଧୀ ସମ୍ବାଦଗୁଡ଼ିକ ଅବିଶ୍ୱାସ ମନେ ହେଉଥିଲା ସମସ୍ତଙ୍କୁ । ଯେଉଁ ଦିନ ଥାନାରେ ଏତଲା ଦେଲା ସ୍ତ୍ରୀ ଲୋକଟି, ତା'ର ତିନିଦିନ ପୂର୍ବରୁ ଘଟଣାଟି ଘଟିଥିଲା ବୋଲି ନିଜେ ସ୍ୱୀକାର କରିଥିଲା । ତା' ସ୍ୱାମୀ ଅନୁପସ୍ଥିତ ଥିଲା, ଅଥଚ ପଡ଼ୋଶୀମାନେ ଖବର ପାଇଲେ ସମ୍ବାଦପତ୍ର ମାଧ୍ୟମରେ ଗୌତମ ପରି । ତା'ପରେ ଯୁଦ୍ଧ ଆରମ୍ଭ ହେଲା ବିବୃତିରେ, ବିସମ୍ବାଦରେ । ରାଜନୀତିର ବଡ଼ପଣ୍ଡାମାନେ ତୁଣୀରରୁ ନୂତନ ଶର ସଜାଡ଼ିଲେ । ସେଇ ସ୍ତ୍ରୀ ଲୋକଟି ପାଇଁ ଅଶ୍ରୁ ମୋଚନ ଓ ଶାନ୍ତନୁମାନଙ୍କ ପାଇଁ ତୃତୀୟ ନେତ୍ରରୁ ଅଗ୍ନି ବର୍ଷଣ ନିମନ୍ତେ ଆଗେଇ ଆସିଲେ । ଯେଉଁମାନେ ମୋଟେ କାନ୍ଦି ନଥିଲେ ଅନ୍ୟମାନଙ୍କ ଦେଖା ଦେଖି ଆଖି ଛଳ ଛଳ କଲେ । ଯେଉଁ ଗୋଷ୍ଠୀ ଥରେ ଥରେ କାନ୍ଦି

ସାରିଥିଲେ ପୁନର୍ବାର କିପରି କନ୍ଧା ଯାଇ ପାରିବ ତା'ର ଖସଡ଼ା ପ୍ରସ୍ତୁତ କରୁଥିଲେ ।

ଶାନ୍ତନୁ ଛଡ଼ା ଅନ୍ୟ ସମସ୍ତେ ଆତ୍ମଗୋପନ କରିଥିଲେ । ସିଏ ବି କିଛିଦିନ ସେଇ ପନ୍ଥା ଅବଲମ୍ବନ କରିଥାନ୍ତା । ବିରୋଧୀ ଦଳ ନେତାଙ୍କର ନିର୍ବାଚନ ପ୍ରଚାର କରିଥିଲା । ଅଥଚ ସେଇ ସମୟରେ ସିଏ ନୀରବ । ହାଜତକୁ ଗଲା ଶାନ୍ତନୁ । ତା'ର ଜାମିନ ମଞ୍ଜୁର ହୋଇ ପାରିବନି । ସମୟକ୍ରମେ ଅନ୍ୟମାନେ ବି ଧରାହେଲେ । ସ୍ତ୍ରୀ ଲୋକଟିର ସ୍ୱାମୀ ତାକୁ ଛାଡ଼ି କୁଆଡ଼େ ଚାଲି ଯାଇଥିଲା । ଆଉ ସିଏ ବାରମ୍ବାର ଧର୍ଷିତା ହେଉଛି ବୋଲି ଖବରକାଗଜରେ ବାହାରୁ ଥିଲା । କେତେ ଲୋକ ବିଶ୍ୱାସ କରୁଥିଲେ ଏବଂ ଆଉ କେତେ କରୁ ନଥିଲେ ।

ଶାନ୍ତନୁ ଅଭିଯୁକ୍ତ ହୋଇଥିବାର ଶୁଣି ଦୁଃଖ କଲା ଗୌତମ । କର୍ମହୀନ ପରିବାରର ପରାଙ୍ଗପୁଷ୍ଟ ଓ ପଡ଼ୋଶୀମାନଙ୍କ ଦ୍ୱାରା ଉପେକ୍ଷିତ ଶାନ୍ତନୁର ମୁହଁଟି ନିରପରାଧ ମନେହେଉଥିଲା ତାକୁ । ଥରେ ପଚାରି ଦେଲା, "କିଛି କରୁନ ଶାନ୍ତନୁ ?" "କୋଉ କାମ କରିବି ତମେ କୁହ ଭାଇନା । ସବୁ କରିବାକୁ ରାଜି ଅଛି । ପାଇଖାନା ସଫାଠାରୁ ଆରମ୍ଭ କରି କାହାର ଦେହ ଜଗୁଆଳୀର କାମ । ପରିବର୍ତ୍ତେ ଗୁଜରାଣ ମେଣ୍ଟାଇବା ନିମନ୍ତେ କିଛି ଟଙ୍କା । ଆଉ ସମାଜ ସେବା କଲେ ତ ପେଟ ପୁରିବନି ।" ସତ କଥା । ଏଇ ବର୍ଦ୍ଧିଷ୍ଣୁ ଜନସଂଖ୍ୟା ପାଇଁ କାମ କାହିଁ ? କାମ କଲେ ପାରିଶ୍ରମିକ ନିମନ୍ତେ ସମ୍ବଳ କାହିଁ ? କିନ୍ତୁ ମସ୍ତିଷ୍କ ତ ସ୍ଥିର ହୋଇ ବସି ପାରିବନି । ସଂସାରର କଲ୍ୟାଣ କାମନା କରି ସନ୍ନ୍ୟାସୀ ହେବ ବା ସମାଜର ଅନ୍ତବୁଜୁଳା ଫୁଟାଇବା ପାଇଁ ସଇତାନ ସାଜିବ । କିନ୍ତୁ ଶାନ୍ତନୁ ଯେ ସାମାଜିକ ଅନୁଷ୍ଠାନରେ ସାହାଯ୍ୟ କରୁ ନଥିଲା, ଏପରି ନୁହେଁ । ବୈଶାଳୀବିହାର କ୍ଲବ୍‌ର ପ୍ରମୁଖ ସଭ୍ୟ । ଦଶହରା, ସରସ୍ୱତୀ ପୂଜା, ଦୋଳ, କାଳୀପୂଜା ତଥା ଲୋକମାନଙ୍କ ଭକ୍ତି ଓ ବିଶ୍ୱାସର ପ୍ରାଣକେନ୍ଦ୍ର ପ୍ରତିଷ୍ଠା କରା ଯାଇଥିବା ଆଖଣ୍ଡଳମଣି ମହାଦେବଙ୍କ ଯେ କୌଣସି ପୂଜାରେ ଆଗୁଆ ଶାନ୍ତନୁ । ଚାନ୍ଦା ଆଦାୟ, ମଞ୍ଚ ବନ୍ଧା ଠାରୁ ଆରମ୍ଭ କରି ଅଭିନୟ ପର୍ଯ୍ୟନ୍ତ । ଅଥଚ ପଇସା ନଥିବା ବେଳେ ନ ମରିଥିବା କୌଣସି ଭିକାରୀ ବା ଅସୁସ୍ଥ ବୃଷଭର ଚିକିତ୍ସା ନିମନ୍ତେ ଚାନ୍ଦା ଆଦାୟ କରି ସେଥିରେ ମଦ ପିଇ ଦେଇଥିବାର ଅଭିଯୋଗ ତା'ର ସମବୟସ୍କ ଯୁବକମାନେ କରୁଥିବାର ଶୁଣିଛି ସିଏ ।

କିନ୍ତୁ ଗତ ବର୍ଷର ମଦ ବିଭୀଷିକା । ଅପମିଶ୍ରିତ ମଦପାନ ଯୋଗୁଁ କେତେ ଲୋକ ଅସୁସ୍ଥ । ଦୁଇ ଶହରୁ ଅଧିକ ଯନ୍ତ୍ରଣା ଜର୍ଜରିତ ହୋଇ ମୃତ୍ୟୁବରଣ କଲେ । ମୁଖ୍ୟ ନାୟକକୁ ଆତ୍ମଗୋପନ କରିବାରେ ସାହାଯ୍ୟ କରିଥିଲେ ପ୍ରମୁଖ ନେତୃବୃନ୍ଦ । ମଦ୍ୟପମାନଙ୍କର ଏପରି ମୃତ୍ୟୁ ହେବା ବାଞ୍ଛନୀୟ ବୋଲି ରାଜଧାନୀରୁ ଶାସନ ମୁଖ୍ୟ

ପ୍ରତିକ୍ରିୟାହୀନ ଭାବେ ମନ୍ତବ୍ୟ ଦେଉଥିଲେ । କିନ୍ତୁ ଶାନ୍ତନୁ କାମରେ ଲାଗି ଯାଇଥିଲା । ଅସହାୟ ଶବମାନଙ୍କର ସଂସ୍କାର କରିବା ଓ ବିପନ୍ନମାନଙ୍କ ନିକଟରେ ସାହାଯ୍ୟ ପହଞ୍ଚାଇବା ଲାଗି ଅଣ୍ଟା ଭିଡ଼ି ଦେଇଥିଲା । ଯେ କୌଣସି ଶବ କାନ୍ଧେଇବାରେ ତା'ର ଆପତ୍ତି ନଥିଲା । ସେଇ ଶାନ୍ତନୁର ଶବ ପଡ଼ିଲା ପରିଚିତ ଛକରେ । ବ୍ୟବଚ୍ଛେଦ ହେବା ପରେ ତାକୁ ବୋହି ନିଆ ହୋଇଥିବ ଶ୍ମଶାନକୁ । ସମୟକ୍ରମେ ତା'ର ବନ୍ଧୁ, ବାପା ବୋଉ ଓ ଶତ୍ରୁମାନେ ଓ ସେଇ ଧର୍ଷିତା ଝିଅଟି ମଧ୍ୟ ଭୁଲିଯିବ ଶାନ୍ତନୁ କଥା, ଯେମିତି ଲୋକମାନେ ଭୁଲିଗଲେଣି ମଦ ମୃତ୍ୟୁ କଥା, ରାଜରାସ୍ତାରେ ଗୋଟିଏ ଝିଅର କାନ ଛିଣ୍ଡେଇ ଗହଣା ଲୁଟି ନେବା କଥା, ଚାକର ଗୃହକର୍ତ୍ତ୍ରୀଙ୍କୁ ହତ୍ୟା କରିବା କଥା ।

ଆଇନ କାନୁନ୍‌ର କି ଅବନତି ଘଟିଲାଣି ! ଅସ୍ତବ୍ୟସ୍ତ ଲାଗୁଥିଲା ଗୌତମକୁ । ତା'ର କେମିତି ଇଚ୍ଛା ହେଲା ଗାଁ'ଆଡ଼େ ଥରେ ବୁଲି ଆସିଲେ ବି ହୁଅନ୍ତା । ଶୈଶବର ସ୍ମୃତିରେ ସିକ୍ତ ସ୍ତନ୍ୟଦାତ୍ରୀ ମାଆର ସ୍ନେହ ବିଜଡ଼ିତ, କଇଁ, କନିଅର, କରବୀ ଫୁଲରେ ମଣ୍ଡିତ, ଆମ୍ବ ବଉଳ ମହକରେ ଆମୋଦିତ ସେଇ ଅନାମଧେୟ ଗାଆଁଟି ସତରେ କ'ଣ ସେଇମିତି ଥିବ ! ସହରରେ ପାଠପଢ଼ା, କର୍ମ ସଂସ୍ଥାନର ଅନ୍ୱେଷଣ ଓ ପରେ ପଦ ସୁଦୃଢ଼ ନିମନ୍ତେ ଅବିରତ ଉଦ୍ୟମ ମନରୁ ସେଇ ସ୍ନେହମୟୀ ଗାଁ ମାଟିର ସ୍ମୃତି ପୋଛି ଦେଉଥିବା ବେଳେ ଶାନ୍ତନୁର ହତ୍ୟା । କେତେ ମାତ୍ରାରେ କଳୁଷିତ ହେଲାଣି ସାଧାରଣ ଜୀବନ ! ସିଏ ଯେତେବେଳେ ପ୍ରଥମେ ପଢ଼ିବାକୁ ଆସି ଗୋଟେ ମେସ୍‌ରେ ରହିଥିଲା ସେତେବେଳେ ତ ଝିଅମାନେ ସ୍ୱଚ୍ଛନ୍ଦରେ ରାସ୍ତାଘାଟରେ ଯିବାଆସିବା କରିପାରୁଥିଲେ । ମଦ ମୃତ୍ୟୁ କଥା ଶୁଣା ନଥିଲା । ରାସ୍ତାରେ ଅସହାୟ ଲୋକଟିଏ ପଡ଼ିଥିଲେ ରିକ୍ସାବାଲା ବି ଉଠାଇ ନେଇ ତା' ଗନ୍ତବ୍ୟ ସ୍ଥଳରେ ପହଞ୍ଚାଇ ଦେଉଥିଲେ ।

କ'ଣ ପାଇଁ ଏ ଅଧୋଗତି ! ଜନସଂଖ୍ୟା ବିସ୍ଫୋରଣ, ଆଶ୍ରୟର ଅନିଶ୍ଚିତତା, ନୈତିକତାର ଅଧଃପତନ ?

ଗାଆଁକୁ କ'ଣ ଏଇ ସଭ୍ୟତାର ଅନୁପ୍ରବେଶ ଘଟିବଣି ?

ଗୌତମ ଯେତେବେଳେ ଗାଆଁ ନିକଟବର୍ତ୍ତୀ କଳାପଥର ବସ୍‌ଷ୍ଟାଣ୍ଡରେ ଓହ୍ଲାଇଲା ସେତେବେଳେ ତା'ର ମନେହେଲା ବୋଧହୁଏ କୌଣସି ଅଜଣା ଜାଗାରେ ଓହ୍ଲାଇ ପଡ଼ିଛି । ଏକଦା ଦୁଇ ତିନୋଟି ବସ୍ ସେଇ ବାଟ ଦେଇ ବା ସେଇଠିକି ଯାଉଥିଲା । ଏବେ ଦଶ ଖଣ୍ଡରୁ ଉର୍ଦ୍ଧ୍ୱ ଦ୍ରୁତଗାମୀ ବସ୍ ସେଇଠି ଅଟକୁଛି । ଦିନ ତମାମ ଅସୁସ୍ଥ କୁକୁରୀ ପରି ଶୋଇ ଅଧଘଣ୍ଟା କରି ମୋଟ ଦୁଇଘଣ୍ଟା କର୍ମ ମୁଖର ହୋଇଥିବା ବସ୍ ରହଣୀ ଜାଗାଟି ଏବେ ଚଳଚଞ୍ଚଳ, ସକାଳ ଛଅଟାଠାରୁ ରାତି ଦଶଟା ପର୍ଯ୍ୟନ୍ତ । ରାସ୍ତା ଧାରରେ ପରିବା ବିକାଳୀଙ୍କ ଭିଡ଼ । ଆଗରୁ କେବଳ ଖଳିପଲ୍ଲୀ ଭାଇନାର ହୋଟେଲ୍

ଥିଲା । ଚଟେଇରେ ବସିବାକୁ ହେଉଥିଲା । ଗ୍ରାହକ ଅତି ବେଶିରେ କୋଡ଼ିଏ କି ତିରିଶ ହେଉଥିବେ । ଏବେ ତିନିଟା ହୋଟେଲ୍ । ଚଉକି ଟେବୁଲ୍ ପଡ଼ିଛି । ଉଠା କ୍ୟାବିନ୍ ସଂଖ୍ୟା ଚାଳିଶ ପାଖାପାଖି । ଦୈନନ୍ଦିନ ହାଟ । ଗୋଟେ ବିଦେଶୀ ମଦ ଦୋକାନ ଖୋଲିଲାଣି ।

ମଧ୍ୟ ଇଂରାଜୀ ଓ ହାଇସ୍କୁଲ ପଢ଼ା ଶେଷ କରି ଏଇଠୁ କଲେଜ ପଢ଼ିବାକୁ ଯାଇଥିଲା ଗୌତମ । ପାଖଆଖ ଗାଁର ଅନେକ ସାଙ୍ଗ । ପ୍ରଫୁଲ୍ଲ, ସୁଦର୍ଶନ, କଣ୍ଟୁରୀ ଏଇ ଗାଁର । ସୁଦର୍ଶନ ପ୍ରତିରକ୍ଷା ବିଭାଗରେ, ପ୍ରଫୁଲ୍ଲ ହିସାବ ସମୀକ୍ଷକ । କଣ୍ଟୁରି କ'ଣ ଗୋଟାଏ ବ୍ୟବସାୟ କରୁଥିଲା । ଓହ୍ଲାଇବା ମାତ୍ରେ ରିକ୍ସାବାଲାଟିଏ ଆସି ପଚାରିଲା କୋଉଠିକି ଯିବେ । ଗୌତମ ସଂକ୍ଷେପରେ ଖଜୁରୀପଦା କହିଲା । ରିକ୍ସାବାଲାଟି ବେଶି ଉତ୍ସାହିତ ହେଲାନି । ସେ ଭାବିଲା ଯାତ୍ରୀ ଜଣାଶୁଣା ନୁହେଁ । ତେଣୁ ଭଡ଼ା ଦେବାରେ ଟଣା ଓଟରା କରିବ । ସେପରି କୌଣସି ଭାରୀ ଜିନିଷ ନଥିଲା, ଚାଲି ଚାଲି ଯାଇ ପାରିଥାନ୍ତା । ଆଗରୁ ଅନେକ ଥର ଯାଇଛି । ତଥାପି ରିକ୍ସାରେ ବସିଲା ଗୌତମ ।

ରିକ୍ସା ଗଡ଼େଇ ଚାଲିଥିଲା ଦୁର୍ବଳ ମଣିଷଟି । ପିଚୁ ହୋଇଥିଲେ ବି ଅନେକ ଜାଗାରେ ଖାଲ । ଦୁଇ ପଟେ ପାଚିଲା ଧାନର କ୍ଷେତ । ଆଗେ ଏଇଠି ଆଣ୍ଠୁଏ ଗହୀରର କାଦୁଅ ହେଉଥିଲା ଶୀତଋତୁ ପର୍ଯ୍ୟନ୍ତ । ତେଣୁ ହାଟ ଫେରନ୍ତାମାନେ ଗହୀର ହୁଡ଼ା ରାସ୍ତାକୁ ପସନ୍ଦ କରୁଥିଲେ । ଏବେ ହଳିଆମାନେ କେବଳ ସେଠି ଚାଲନ୍ତି । ବାୟା ଚଢ଼େଇ ବସା ବାନ୍ଧୁଥିବା ଖଜୁରୀ ଗଛଟା ବା ବାଙ୍କମୁଣ୍ଡି ଠାକୁରାଣୀଙ୍କ ଛତିଆନି ଗଛ ନାହିଁ । ନିତେଇ ପାଣିର ତାଳ ବଗିଚା ପତଳା ପଡ଼ି ଆସିଲାଣି । ବହୁ ଦୂରକୁ ଦେଖାଯାଉଥିବା ଶାଳ ଜଙ୍ଗଲର ସବୁଜିମା କୁଆଡ଼େ ଉଭେଇ ଯାଇଥିଲା । ସେଇଠି ଲମ୍ବି ଯାଇଥିଲା ଦିଗ୍‌ବଳୟ ବାମରୁ ଡାହାଣକୁ ଟାଙ୍ଗରା ମୁଣ୍ଡିଆର ଶୀର୍ଷରେ । ନିଶଙ୍କ ତୋଟା ଅତିକ୍ରମ କଲେ ଯେଉଁ ଜୋର ଦୁଇଟି ପଡୁଥିଲା ତା ଉପରେ ସେତୁ ତିଆରି ହେଲାଣି । ତେଣୁ ଆଗେ ପିଲାମାନେ ଯେପରି ଅଳ୍ପ ବର୍ଷା ପରେ ଭିଜିଗଲେ ବୋଲି ସ୍କୁଲରେ ଶିକ୍ଷକମାନଙ୍କୁ କହି ଫେରି ଆସୁଥିଲେ, ଏବେ ସେ ସୁଯୋଗ ମିଳୁ ନଥିବ ।

ଘରେ ପହଞ୍ଚିବା ବେଳକୁ ପିଲାମାନେ ବସ୍ତାନି କାନ୍ଧରେ ଗାଁ ମୁଣ୍ଡ ସ୍କୁଲ ଆଡ଼େ ମୁହାଁଇ ଥିଲେ । ଗାଈ ବଳଦମାନେ ଥରୁ ଥରୁ ଖୁଣ୍ଟ ମୂଳରେ ପଡ଼ିଥିବା ନଡ଼ା ପାଳ ବା ଶୁଖିଲା ଘାସକୁ ପାକୁଳି କରୁଥିଲେ । ନୂଆ ବୋହୂମାନେ ନଳକୂଅ ନିକଟରେ ଭିଡ଼ ଜମାଇଥିଲେ । ଗରାଟିମାନ ଥୋଇ କେହି କୌଣସି ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରୁଥିଲେ । କମ୍ ବୟସର ପିଲାମାନେ ପାଣିରେ ବନ୍ଧ ପକାଇ ଖେଳୁଥିଲେ । ସେମାନଙ୍କ ମଧ୍ୟରୁ କିଛି ନଙ୍ଗଳା । କେତେଜଣ ବୋତାମ୍ ଛିଣ୍ଡା ପ୍ୟାଣ୍ଟ୍‌କୁ ଟେକି ଧରିଥିଲେ । ଗୌତମର

ଉପସ୍ଥିତିକୁ କେହି କୌଣସି ଗୁରୁତ୍ୱ ଦେଲେନି, ଅନ୍ୟ ଗାଁର କଲିକତି ବାବୁଟିଏ ହୋଇଥିବ ! ଅଥଚ ଏଇ ପିଲାମାନଙ୍କ ବୟସରେ ଖରାବେଳର ଡାବରପୁଆ ଖେଳ ଓ ସନ୍ଧ୍ୟାବେଳେ ଝିଅ ପୁଅ ମିଶି ବୋହୂବୋହୂକା ଖେଳ ତା'ର ସ୍ପଷ୍ଟ ମନେଅଛି । ଶୀତଦିନେ କୁଟା ଜମାଇ ନିଆଁ ଜଳାଇବାକୁ ଭଲ ଲାଗୁଥିଲା । ପହଁରିବା ପାଇଁ ତା'ର ଭାରି ଡର । ଥରେ ଖରାଦିନ ଦ୍ୱିପ୍ରହର ସମୟରେ ଯେଉଁ ପ୍ରମିଳାର ଉତ୍ସାହ ଯୋଗୁଁ ପହଁରି ଥିଲା, ସେ ରକ୍ଷା କରିଥିଲା ବୁଡ଼ି ଯାଉଥିବା ବେଳେ ।

ଗୌତମ ତାଙ୍କ ପୁରୁଣା ଘର ଆଡ଼କୁ ଚାହୁଁଥିଲା । ଛଣ ଛପରରେ କୌଣସି ପରିବର୍ତ୍ତନ ହୋଇନି । ଦାଣ୍ଡ ପିଣ୍ଡାରେ ରହୁଥିବା ଶଗଡ଼ ଚକ ଓ ଦଣ୍ଡା ସହ ଝଡ଼ି ପଡୁଥିବା ଲୁଣି ମାଟି ବଡ଼ କଦର୍ଯ୍ୟ ଆକାର ଧାରଣ କରିଥିଲା । ଆଗେ ବୋଉ ଗୋବରରେ ଲିପି କେତେ ପରିଷ୍କାର କରୁଥିଲା । ଏବେ ଘରଟା ବିକ୍ରି ହୋଇଯାଇଛି । ଦାଦାଝିଅ ସଚ୍ଚାର ବର କିଣିଛି ତାକୁ ।

ଘରେ ସେ ପ୍ରଥମେ ଭାଉଜଙ୍କୁ ଭେଟିଲା । ଅନେକ ଦିନ ପରେ ଦେଖା ସାକ୍ଷାତ ହେତୁ ଯେତିକି ଆନ୍ତିରିକତା ଆଶା କରୁଥିଲା, ସେତିକି ସେ ଅନୁଭବ କରି ପାରିଲାନି । ଅଥଚ ଗୌତମର ଘରଟା ଏବେ ଭାଇଙ୍କ ଦ୍ୱାରା ବ୍ୟବହୃତ ହୁଏ । ଗୌତମ ଭାଗର ଜମି ସିଏ ଚାଷ କରନ୍ତି । ଉଦ୍ଦିଷ୍ଟ କୋଠରୀର ଚାବି ଖୋଲି ପରିଷ୍କାର କରିବା ନିମନ୍ତେ ଗୋଟେ ପାଖ ଘର ଝିଅର ସାହାଯ୍ୟ ନେଲା । ଗୁଡ଼ା ହୋଇଥିବା ବିଛଣା ଝାଡ଼ିଲା । ଝିଅଟି ବାଲ୍‌ଟିଏ ପାଣି ଆଣି ରଖି ଦେଇଗଲା ପିଇବା ପାଇଁ । ଭାଉଜ କେଉଁ କାମ କରୁଛନ୍ତି ଜାଣିବାକୁ ଜମା ସେ ଉତ୍ସୁକ ହେଲାନି । ବରଂ ଏତେ ସକାଳୁ ପହଞ୍ଚିଥିବାରୁ ତା'ର ଇଚ୍ଛା ହେଲା ତୋଟାମାଳ ଓ ଗହୀର ବିଲରେ ବୁଲି ଆସନ୍ତା ।

ଘର ବାରଣ୍ଡାରେ ଠିଆ ହେଲେ ଲମ୍ବି ଯାଇଥିବା ଆମ୍ବ ତୋଟା ଆଖିରେ ପଡୁଥିଲା । ତାକୁ ଅତିକ୍ରମି ଗଲେ ଗହୀର ମାଳ ଓ ବୁଦୁବୁଦିକିଆ ଜଙ୍ଗଲ । ବାରଣ୍ଡାରେ ଛିଡ଼ା ହେଲେ ଏବେ ପାଚିଲା ଧାନ କ୍ଷେତ ଦେଖାଯାଉଛି । ତୋଟା ଆଡ଼କୁ ଘରସବୁ ଲମ୍ବି ଗଲାଣି । ସେ ଚାଲି ଚାଲି ସେଇ ଆଡ଼କୁ ଗଲା । ତୋଟା ଯେ ଦିନେ ସେଠି ଥିଲା, ଗୌତମ ବିଶ୍ୱାସ ମଧ୍ୟ କରିପାରୁ ନଥିଲା । ଗୋଟେ ଗୋଟେ ଥୁଣ୍ଟା ଗଛ । ପରିବା ଚାଷ ହେଉଛି ଶୀତଦିନିଆ । ଝିଅଟିଏ କ'ଣ ତୋଳୁଥିଲା । ଗୌତମ ପାଖକୁ ଡାକିଲା ତାକୁ । କୁଣ୍ଠିତ ଚିତ୍ତରେ ଛିଡ଼ାହେଲା ଆସି ପାଖରେ ସିଏ ।

"ଏଠି ଥିବା ଆମ୍ବ ଗଛଗୁଡ଼ା କୁଆଡ଼େ ଗଲା ?" ପଚାରୁଥିଲା ଗୌତମ ।

ସବୁ ପରା ହାଣି ଜାଳ କରାଯାଉଛି । ଆସନ୍ତା ବର୍ଷ ଏଠି ଘର ତିଆରି ହେବ । ହାତୀଘର କିଣିଲେଣି ଆକୁ । "ତମେ କାହାର ଝିଅ ?" ପ୍ରଶ୍ନର ଉତ୍ତରରେ ସିଏ ଯାହା

କହିଲା ତାକୁ ଶୁଣି ଆଶ୍ଚର୍ଯ୍ୟ ହେଲା ଗୌତମ । ତା'ଠାରୁ ଅନ୍ୟୁନ ପାଞ୍ଚବର୍ଷ ସାନ ଅଙ୍ଗଦର ଝିଅ । ତା' ତଳେ ଆଉ ତିନି ଜଣ । ଯଦି ଏଇ ହାରରେ ଶିଶୁ ଜନ୍ମ ନିଅନ୍ତି ତେବେ ଆମ୍ବ ଗଛ ଶୂନ୍ୟ ହୋଇ ଘର ଗଢ଼ି ଉଠିବାରେ ବିଚିତ୍ରତା ରହିଲା କେଉଁଠି ? ସେମାନଙ୍କ ପାଇଁ ତ ଆଶ୍ରୟ ଲୋଡ଼ା । ଗହୀର ଆଡ଼କୁ ମୁହାଁଇ ସେ ଦେଖୁଥିଲା ଅନ୍ୟମାନଙ୍କର ତୋଟାସବୁକୁ । ସବୁଠି ଏକା ଅବସ୍ଥା । ଭୋଡ଼ଙ୍ଗା ଧାନଗଛ କାଣ୍ଡକୁ ପୋକ ବିନ୍ଧିଛନ୍ତି । ସେ କାରଣ ନିର୍ଦ୍ଧାରଣ କରିବା ନିମନ୍ତେ ଅଟକି ଯାଇଥିବାରୁ ଅଚିହ୍ନା ଲୋକ ଜଣେ କହିଲା, "ମାଟି ଆଉ କେତେ ସହିବ ? ସାର ଓ ଔଷଧର ବିଚାରଶୂନ୍ୟ ବ୍ୟବହାର ମାଟିକୁ ଅକାମୀ କରି ଦେଇଛି । ପୋକମାନେ ଔଷଧ ମାନୁ ନାହାନ୍ତି ।" ଆଖି ପାଉଥିବା ପର୍ଯ୍ୟନ୍ତ ସବୁ କିଆରିର ଏକା ଅବସ୍ଥା ।

ଦେଉଳର ପୋଖରୀ ଜଳପୂର୍ଣ୍ଣ । ଫଗୁଣ ମାସ ବେଳକୁ ସିଏ ଶୁଖିଯିବ । ତା' ହୁଡ଼ାରେ ଯାହା ଆମ୍ବଗଛର ମୂଳଟିମାନ ଏବେ ଅଛି । ପାଣି ପଶିବା ଏବଂ ବାହାରି ଯିବାପାଇଁ ଥିବା ଫେରି ପଥରମାନ ସବୁ କିଏ ତାଡ଼ି ନେଲେଣି । ହୁଡ଼ାଟା ଦାନ୍ତ ଗଳିପଡ଼ିଥିବା ମାଡ଼ିପରି ଦିଶୁଛି । ବଡ଼ ପୋଖରୀର ସେଇ ଅବସ୍ଥା । ଆଉ ସବୁ ଛୋଟ ଛୋଟ ବନ୍ଧଗୁଡ଼ାକୁ ତ ଲୋକମାନେ ପୋତିଦେଇ ଜମିରେ ମିଶାଇ ସାରିଲେଣି ।

କେତେ କ୍ଷୁଧା ଏଇ ମଣିଷ ମାନଙ୍କର ! ସବୁ ତୋଟା, ସବୁ ଜଙ୍ଗଲ, ସବୁ ଜଳାଶୟକୁ ନିଜ ଅଧିକାରଭୁକ୍ତ କରିବା ପାଇଁ ପ୍ରଚେଷ୍ଟା । ପୃଥିବୀକୁ ବିଦାରି ମାଟି ଉଦରସ୍ଥ କରିବା ତ ଆଉ ବେଶି ଦୂର ନୁହେଁ । ଗହୀର ବିଲର ଧାନକଟା ଦେଖିବାକୁ ତା'ର ମନ ବଳିଲାନି ।

ଫେରି ଆସିଲା ଗୌତମ । ସଞ୍ଚାର ଘରଆଡ଼ ଦେଇ ଗଲେ ଭଲ ହେବ । ସିଏ ଭାତ ଗାଳୁଥିଲା । ତା'ର ସାନ ପୁଅ ହବ ବୋଧ ହୁଏ, ନଙ୍ଗଳା, ନାକରେ ସିଙ୍ଘାଣୀର ଧାର । ଗୋଟେ ଗିନାରେ ମୁଢ଼ି ଓ ଆରିସା ପିଠାରୁ ଫାଳେ । ଅତ୍ୟନ୍ତ ଦୁର୍ବଳ । ପେଟ ବାହାରି ପଡ଼ିଛି । ଗୋଡ଼ ଦି'ଟା ବଙ୍କା ବଙ୍କା । ମୁଣ୍ଡର ବାଳ କହରା । ଆଖି ଡୋଳାରେ କାତି, ପାଦ ଦି'ଟା ଓ ଗ୍ରାଲ ଫୁଲିଯାଇଛି । ଯଥେଷ୍ଟ ଖାଦ୍ୟ ପାଉନି ନିଶ୍ଚୟ । ଷଷ୍ଠ ତଥା କନିଷ୍ଠ ସନ୍ତାନ । ଗୌତମର ଡିହଟାକୁ କିଣିଥିଲେ ମଧ୍ୟ ଚାରିପୁଅଙ୍କୁ କ'ଣ ଅଣ୍ଟିବ ? ଗାଆଁ ଭିତରେ କେବଳ ସଞ୍ଚାର ହିଁ ତା'ପ୍ରତି ଆନ୍ତରିକତା ଥାଏ । ତେଣୁ ତା'ରି ଘରେ ଭାତ ଡାଲମା ଖାଇ ଆସିବା ବେଳକୁ ପହଞ୍ଚିଲା ତା'ର ବର । ରୁଗ୍ଣ ମଣିଷ । ଗତବର୍ଷ ଅର୍ଶ ଜନିତ ରୋଗ ଯୋଗୁଁ କୋଉ ମାଡ୍ରାସୀ ଡାକ୍ତର ନିକଟରେ ସୂତା ବାନ୍ଧିଥିଲା । ଏବେ ବେଶି ହେଉଛି ବୋଲି କହିଲା । ଲୋକଟା ଠକି ଦେଇଛି । ଧାନ ବିହନଗୁଡ଼ା ଯେଉଁ ନିଗମବାଲାଙ୍କଠାରୁ କିଣିଥିଲା ସେଗୁଡ଼ାକ ଭଲ ନ ହୋଇଥିବାରୁ ଗଛ ହେଲାନି ।

ବହୁ କ୍ଷତିର ସମ୍ମୁଖୀନ ହେବାକୁ ପଡ଼ିଲା । ଚାଉଳ ଶେଷ ହୋଇଗଲେ ଶେଷ ଦୁଇମାସ ପାଇଁ ଯେଉଁ ଚାଉଳ କିଣାଯାଏ ତା ଦେହରେ କେତେ ଗୋଡ଼ି, ଠିକ୍ ଚାଉଳ ରଂଗର । ଗୋଟାଏ କିଲୋଗ୍ରାମ୍‌ରେ ପଚାଶରୁ ଶହେ ଗ୍ରାମ୍ । ତେଲର ରଙ୍ଗ ଠିକ୍, ଗନ୍ଧ ବି । କିନ୍ତୁ ରୋଷେଇ ବେଳେ ସେଥିରୁ ଫେଣ ବାହାରେ । ସହରମାନଙ୍କରେ ମଇଦାରୁ ଛେନା ତିଆରି ପାଇଁ କାରଖାନା ଗଢ଼ିଉଠେ । ପୋଡ଼ା ମୋବିଲ୍‌ରୁ ଘିଅ ତିଆରି ହୋଇଥାଏ ।

ଘରକୁ ଫେରିଲା ଗୌତମ । ଭାଇ ଫେରି ନାହାନ୍ତି । ଅଖିଳ ଆସିଲା- ଦାଦା ପୁଅ ଭାଇ, ଟିକିଏ ସୌଖୀନ ସ୍ୱଭାବର । କଠିନ ପରିଶ୍ରମ କରିପାରେନା । ସେ ଗାଆଁ କଥା କହୁଥିଲା । ଯଦୁ ମହାରଣାର ଅବିବାହିତା ବୟସ୍କା ଝିଅଟାକୁ ଦଳେ ଟୋକା ଇଜ୍ଜତ ନଷ୍ଟ କରି ଅଧମରା ଅବସ୍ଥାରେ ବିଲରେ ପକାଇଦେଲେ । ମୁହଁ ସଞ୍ଜରେ ସିଏ ଘରକୁ ଫେରୁଥିଲା । ପୋଲିସ୍ ତିନିଚାରିଜଣ କଲେଜ ପଢୁଆ ଏବଂ ସବୁକାମ ପାଇଁ ଅଦରକାରୀ ଟୋକାଙ୍କୁ ଧରିନେଇଛି । ସେମାନେ ଗୋଟାଏ କ୍ଲବ୍ କରିଛନ୍ତି । ସେଇ କ୍ଲବ୍‌ଘରେ ପାର୍ଟିନାମରେ ମଦ ପିଆ ଚାଲିଛି । ଝିଅ ବୋହୂଙ୍କ ଚାଲି ଓ ଶାଢ଼ୀପିନ୍ଧାକୁ ଲକ୍ଷ୍ୟକରି ଅଶ୍ଳୀଳ ମନ୍ତବ୍ୟ ଦେବା ତ ସାଧାରଣ କଥା ହୋଇଗଲାଣି । ରତନା ସ୍ୱାଇଁର ପୁଅ କାହାକୁ ଶାନ୍ତିରେ ଶୁଆଇ ଦେଉନି । ସାତ ଆଠଟା ଟୋକାଙ୍କୁ ଏକାଠି କରି ଚୋରି କରେ । ଏଥିପାଇଁ ଦୁଇ ଚାରିଥର ହଣା ଖାଇଲାଣି । ଭାଇମାନଙ୍କ ସଙ୍ଗେ ଗଣ୍ଡଗୋଳ । ଗୋଡ଼ ହଣାହୋଇ ଡାକ୍ତରଖାନାରେ ପଡ଼ିଛି । ଅର୍ଜୁନ ନନ୍ଦର ବଡ଼ଝିଅ ପାଣୁ ମଳିକର ପୁଅ ସଙ୍ଗେ ପଳାଇଯାଇଛି । ଅନେକ ଦିନଧରି ବାହା ହୋଇ ପାରୁ ନ ଥିଲା । ସେଇଥି ପାଇଁ ଦୁଇ ସାହି ମଧ୍ୟରେ ମାଡ଼ ପିଟାପିଟି । କେଶ୍ ଚାଲିଛି ବାଙ୍କିରେ । ସେମାନେ ଯାଇ କୋଉଠି ଅଛନ୍ତି କେହି ଜାଣି ନାହାନ୍ତି ।

ଗୌତମ ଗାଆଁ ମଝିର ତ୍ରିନାଥ ମନ୍ଦିର ଆଡ଼କୁ ଚାହୁଁଥିଲା । ଅଧା ଗଢ଼ା, ସିମେଣ୍ଟ ଦିଆ ନ ହୋଇଥିବା କାନ୍ଥରେ ବୀଭତ୍ସ ଚିତ୍ର କିଏ ଆଙ୍କିଛି । କ୍ଲବ୍‌ଘରକୁ ଟିକିଏ ଛାଡ଼ି ଗୋଟେ ଖାତରେ ବୋତଲ ଗୁଡ଼ାଏ । ହୋଇଥିବ ଅବା ସହରୀ ସଭ୍ୟତାର ପ୍ରତୀକ । ତେଣୁ ପ୍ରତି ଦୁଇ ତିନି ମାସରେ ଗୋଷ୍ଠୀ ସଂଘର୍ଷ ହୋଇ ଗାଆଁମାନଙ୍କରେ ଜଣେ ଦୁଇଜଣ ମରୁଛନ୍ତି । ଦେଶୀ ବନ୍ଧୁକ, ଫାର୍ସା ଭୁଜାଲିର ସଂଖ୍ୟା ବଢ଼ି ଚାଲିଛି ।

ଅଥଚ ରଘୁନାଥଙ୍କ ଆସ୍ଥାନ ଖଣ୍ଡିକ ଛପର ଅଭାବରୁ ଅର୍ଦ୍ଧଭଗ୍ନ, ଗ୍ରାମଦେବୀଙ୍କ ଆସ୍ଥାନ ତେନ୍ତୁଳି ଗଛକୁ ଲୋକମାନେ ଚେର ଓପାଡ଼ି ଜାଳ କରିଦେଲେଣି ।

ଗୌତମ ଭାବୁଥିଲା ସହରୀ ସଭ୍ୟତାର ଅନୁପ୍ରବେଶ ଘଟିଛି ସେହି ଅଖ୍ୟାତ ଗାଆଁଟିରେ ।

ପିଚୁ ରାସ୍ତା, ପୋଲ, ବିଜୁଳି ଆଲୋକ, ସେଲୁନ୍, ଲଣ୍ଡ୍ରି, ଚା' ଜଳଖିଆ ଦୋକାନ ସାଥେ ସାଥେ ଆସିଛି ମଦ ଦୋକାନ । ଅର୍ଦ୍ଧ ଶିକ୍ଷିତ ଅନୁକରଣପ୍ରିୟ ନବ୍ୟ ସଭ୍ୟତାର ଅଗ୍ରଦୂତ ଉତ୍‌ଶୃଙ୍ଖଳ ଯୁବକମାନେ । ଶ୍ରେଣୀ ସଂଘର୍ଷ, ଭୁଜାଲି, ଛୁରୀ, ହତ୍ୟା, ଅପହରଣ । ଗୌତମର ଇଚ୍ଛା ହେଉଥିଲା ସେଇ ସାଙ୍ଗେ ସାଙ୍ଗେ ଚାଲିଯିବାକୁ ଆଉ କେଉଁ ଜାଗାକୁ, ଯେଉଁଠି ଅନ୍ତତଃ ଏଇ ସଂସ୍କୃତି ଦୂରରେ ଥିବ । କେଉଁଠି ସେମିତି ଜାଗାଟିଏ ଅଛି ?

ଅଖିଳ ଆହୁରି କ'ଣ କହୁଥିଲା ।

ଭାଇଙ୍କୁ ଅପେକ୍ଷା କରି ଗୌତମକୁ ନିଦ ଲାଗୁଥିଲା । ସିଏ ଫେରୁ ନ ଥିଲେ ।



# ଗୋଟିଏ ସୁନ୍ଦର ଗୃହ ନକ୍ସାର ବଳୟରେ

ପ୍ରଜ୍ଞା ଏପଟ ସେପଟ ହେଉଥିଲା ବସ୍‌ଷ୍ଟାଣ୍ଡରେ । ସାଙ୍ଗରେ ଅଶ୍ୱିନୀ । ସେମାନେ ଟିକିଏ ବେଳାବେଳି ବାହାରି ଆସିଥିଲେ ଘରୁ, କିଛି ବଜାର ସଉଦା କରିବାର ଉଦ୍ଦେଶ୍ୟ ନେଇ । ମାର୍କେଟ୍ ବିଲ୍‌ଡ଼ିଙ୍ଗ୍‌ରୁ ଉଲ୍ ଖୋଜିବାରେ ଅନେକ ସମୟ ଗଲା, ହେଲେ ମିଳିଲାନି । ସ୍ୱେଟର୍‌ଟା ଅନେକ ଦିନରୁ ଆରମ୍ଭ ହୋଇଥିଲେ ବି ଶେଷ ହେଉନି କେବଳ ଏଇଥିପାଇଁ । ସେଇ କିସମର ମିଳିବାଟା ତ କଷ୍ଟ । ତେବେ ରଙ୍ଗଟା ମିଳିଯାଇଥିଲେ ଚଳିଥାନ୍ତା । ଦିଅର ସତୀଶ୍ ଦିଲ୍ଲୀ ପରିଭ୍ରମଣରେ ଯାଇଥିଲାବେଳେ ଆଣିଥିଲା । ହାତ ଦୁଇଟା ଏବଂ ଆଗପଟଟା ସରି ଯାଇଛି । ବାକିତକ କେମିତି ଶେଷ କରିବ ସେଇ ଚିନ୍ତା । ତା'ର ଆସିବାକୁ ଜମା ଇଚ୍ଛା ନଥିଲା । ତେବେ ଅଶ୍ୱିନୀ ଡାକିବାରୁ ଆସିଲା, କାଳେ ସିଏ ମନଦୁଃଖ କରିବ । ଆଜି ସିଏ ରାଉରକେଲା ଯିବ । ଝିଅକୁ ପିଉସୀ ଶାଶୁଙ୍କ ପାଖରେ ଛାଡ଼ି ଆସିଲା । ସିଏ କାନ୍ଦୁଥିଲା । ତା' ପାଇଁ ଫ୍ରକ୍‌ଟିଏ ଏବଂ କିଛି ବିସ୍କୁଟ୍ କିଣାହେଲା । ନିଜ ପାଇଁ ବ୍ଲାଉଜ୍ ଦୁଇଟା କିମ୍ବା କନା ନେବା ପାଇଁ ଇଚ୍ଛା ଥିଲେ ବି କିଛି କହିଲାନି । କାଳେ ଅଶ୍ୱିନୀ ରାଗିବ, ଏଇ ଭୟରେ ମାର୍କେଟ୍‌ରୁ ସେମାନେ ବସ୍‌ଷ୍ଟାଣ୍ଡ୍‌କୁ ଆସିଲେ । ଟିକେଟ୍ ଆଗରୁ ସଂରକ୍ଷିତ ହୋଇଥିଲା । ବସ୍ ଛିଡ଼ା ହୋଇଥିଲେ ବି ପାଞ୍ଚ ଛଅ ଜଣ ଯାତ୍ରୀଙ୍କ ଛଡ଼ା ଆଉ କେହି ନଥିଲେ । ବୁଲା ବିକାଳୀମାନେ କାନଫଟା ଚିତ୍କାର କରି ଯାତ୍ରୀମାନଙ୍କୁ ଡାକି ଚାଲିଥିଲେ । ଫାଟକ ନିକଟରେ ଭିଡ଼ ଜମିଯାଇଥିଲା । ଯାତ୍ରୀ ଗହଳି ବି ବିଶେଷ ଥିଲା । ଅନେକ ଗୁଡ଼ିଏ ଦ୍ରୁତଗାମୀ ବସ୍ ଛିଡ଼ାହୋଇଥିଲା । ଏଇ ସମସ୍ତ ଅସାମଞ୍ଜସ୍ୟତା ସତ୍ତ୍ୱେ ସମସ୍ତଙ୍କର ଗୋଟିଏ ଲକ୍ଷ୍ୟ ଥିଲା- ବସ୍‌ଯାତ୍ରା ।

ଅଶ୍ୱିନୀ ହାତ ବାକ୍ସକୁ ଧରି ବସ୍ ଉପରକୁ ଉଠିଲା । ଉଦ୍ଦିଷ୍ଟ ସ୍ଥାନଟିକୁ ଲକ୍ଷ୍ୟକରି ପୁଣି ତଳକୁ ଆସିଲା । କଣ୍ଡକ୍ଟରକୁ ପଚାରି ବୁଝିଲା ଯେ ଗାଡ଼ି ଛାଡ଼ିବାକୁ ଆହୁରି ପଇଁଚାଳିଶ ମିନିଟ୍ ବାକି ଅଛି । ସେ ହାତ ଘଡ଼ିକୁ ଚାହିଁଲା । ପାଞ୍ଚଟା ବାଜିନି । ତେବେ ଶୀତ ଲାଗୁଥିଲା । ରାତିରେ ଆଉ ବେଶି ପଡ଼ିବାର ସମ୍ଭାବନା ଥିଲା ।

ପ୍ରଜ୍ଞା ବସ୍ ଉପରକୁ ଉଠି ଜାଗାଟିକୁ ଲକ୍ଷ୍ୟ କଲା । ସେ କାହାକୁ କିଛି ପଚାରିଲାନି । ନୀରବରେ ଅଶ୍ୱିନୀକୁ ଅନୁସରଣ କରୁଥିଲା । ସେମାନେ ଟାଉନ୍

ବସ୍‌ଷ୍ଟାଣ୍ଡ୍‌କୁ ଆସିଲେ । ଏଗାର ନମ୍ବର ବସ୍‌ଟି ଆସିବାକୁ ଅନେକ ଡେରି ଥିଲା । ପ୍ରଜ୍ଞାର ଉତ୍କଣ୍ଠା ବା ଉତ୍ସୁକତା ନଥିଲା । ଅଶ୍ୱିନୀ ଫଳରସ ବା ଚା' ପିଇବା ନିମନ୍ତେ ପଚାରିଲା । ଫଳରସ ପିଉ ପିଉ ସେମାନେ ଛୁଞ୍ଚି ବିକାଳୀ, ଚଷମା ବିକାଳୀ ଅଥବା କଲେଜ ପଢୁଆ ଝିଅମାନଙ୍କୁ ଚାହୁଁଥିଲେ । ସେମାନେ ସାଲୱାର ପଞ୍ଜାବୀ ବା ଶାଢ଼ୀ ପିନ୍ଧିଥିଲେ । ସେମାନଙ୍କ ମଧ୍ୟରୁ କେତେକ ବବ୍ କାଟିଥିଲେ ବା ବେଣୀ ଛାଡ଼ିଥିଲେ । ଅଶ୍ୱିନୀ ଯାହା କହୁଥିଲା ପ୍ରଜ୍ଞା କେବଳ ଶୁଣୁଥିଲା । ହଁ ବା ନାହିଁ ଛଡ଼ା ସେ ଅନ୍ୟ କିଛି ମନ୍ତବ୍ୟ ଦେଉନଥିଲା । କେତେବେଳେ ଅବା କିଛି ନକହି ନୀରବ ରହୁଥିଲା । ସେ ତା'ର ଝିଅ କଥା ହୁଏତ ଭାବୁଥିଲା, ଅଥବା କଲେଜ ଜୀବନର ସ୍ମୃତିସବୁ ମନେ ପକାଉଥିଲା । ସେଭଳି ସ୍ମରଣୀୟ ଘଟଣା ଅବଶ୍ୟ କିଛି ନଥିଲା । ତା'ର ପତଳା ଚେହେରା ତଥା ବ୍ରଣଭର୍ତ୍ତି ମୁଖ ଯୋଗୁଁ ସେ ଅନ୍ୟମାନଙ୍କଠାରୁ ନିଜକୁ ନ୍ୟୂନ ମନେକରୁଥିଲା । ତେଣୁ ତା'ର ବେଶି ସାଙ୍ଗ ନଥିଲେ । ସୌମ୍ୟା ନାମକ ତା'ର ଯେଉଁ ସାଙ୍ଗଟି ବେଶି ଅନ୍ତରଙ୍ଗ ଥିଲା, ତା ବାପା ଜଣେ କିରାଣୀ ଥିଲେ ଏବଂ ତା'ର ମାଆ ମରିଯାଇଥିବାରୁ ଦ୍ୱିତୀୟ ବିବାହ କରିଥିଲେ । ତାକୁ ବେଶି କାମ କରିବାକୁ ପଡୁଥିବାରୁ ସେ ପାଠ ପଢ଼ିବା ନାମରେ ପ୍ରଜ୍ଞା ନିକଟକୁ ପଳାଇ ଆସୁଥିଲା । ହେଲେ ପାଠ ନପଢ଼ି ଶୋଇ ପଡୁଥିଲା ଅଥବା ଗପ କରୁଥିଲା । ପରୀକ୍ଷାରେ ସେ ମୋଟେ ଭଲ କରୁନଥିଲା । ତା'ର ବର୍ଣ୍ଣ ଶ୍ୟାମଳ ଥିଲା । ସେ ପାଠ ପଢ଼ିବାକୁ ବିଶେଷ ଇଚ୍ଛା କରୁନଥିଲା, ଅଧିକନ୍ତୁ ବିବାହ କରି ସାବତ ମାଆଙ୍କର ସେବା କରିବାର ଯନ୍ତ୍ରଣାରୁ ମୁକ୍ତି ଚାହୁଁଥିଲା । ଅର୍ଥାଭାବରୁ ହେଉ ବା ଆଳସ୍ୟ ଯୋଗୁଁ ହେଉ ତା'ର ବାପା ସେଥିଲାଗି ବିଶେଷ ଯତ୍ନ କରୁନଥିଲେ । ସେ ବେଳେବେଳେ ଆତ୍ମ ସମ୍ବରଣ ନକରିପାରି କହି ଦେଉଥିଲା, ପ୍ରେମକରି ବାହା ହୋଇଗଲେ ଭଲ ହୁଅନ୍ତା । ସେତେବେଳେ ତା କଥାକୁ ହସରେ ଉଡ଼ାଇ ଦେଉଥିଲା ପ୍ରଜ୍ଞା ଏବଂ ଆଦୌ ଉତ୍ସାହିତ କରୁନଥିଲା । ଅଥଚ ସୌମ୍ୟା ତା ବାପାଙ୍କ ପ୍ରତିବାଦ ସତ୍ତ୍ୱେ ଜଣେ ମିଲିଟାରୀ ଜୱାନକୁ ବାହାହୋଇ ଚାଲିଗଲା । ଏବେ କାହିଁକି ମନେ ହେଉଛି ସିଏ ଅଧିକ ବୁଦ୍ଧିମତୀ ଥିଲା ।

ପ୍ରଜ୍ଞା ଅଶ୍ୱିନୀର ସ୍ୱେଟରକୁ କେତେବେଳେ ତ କେତେବେଳେ ଘଣ୍ଟାକୁ ଚାହୁଁଥିଲା ।

ସମୟ ମୋଟେ ଅତିବାହିତ ହେଉନଥିଲା, ଅଥଚ ଘଣ୍ଟା, ମିନିଟ୍ ଓ ସେକେଣ୍ଡ୍ କଣ୍ଟା ଠିକ୍ ଭାବେ ଚାଲିଥିଲା । ସଚିବାଳୟ ପଛପଟେ ସୂର୍ଯ୍ୟ ଅସ୍ତ ଯିବାର ଉପକ୍ରମ କରୁଥିଲେ । ରାଜପଥର କଡ଼େ କଡ଼େ ମର୍କ୍ୟୁରୀ ଆଲୋକଗୁଡ଼ିକ ଜଳିଉଠୁଥିଲେ । ପବନରେ ନଡ଼ିଆ ଗଛର ବାହୁଙ୍ଗା ସବୁ ହଲୁଥିଲେ । ଫୁଙ୍ଗୁଳା ପିଲାଗୁଡ଼ା ଛାତି ଉପରେ

ହାତ ଝାକିଥିଲେ । ଅଶ୍ୱିନୀ ପତ୍ରିକା ଦୋକାନ ଆଡ଼େ ବୁଲି ଆସିବାକୁ ପ୍ରସ୍ତାବ ଦେଲା । ପ୍ରଜ୍ଞା କିଛି କହିଲାନି । କାରଣ ସିଏ ସ୍ଥିର ନିଶ୍ଚିତ ଯେ ଅଶ୍ୱିନୀ ପଢ଼ାପଢ଼ି କରିବା ଅପେକ୍ଷା ବାହାରେ ବୁଲି ଗପିବାକୁ ବେଶି ପସନ୍ଦ କରେ, ଆଉ ସେଇଥିପାଇଁ ରାତି ଆଠଟା ନଅଟା ପୂର୍ବରୁ ଘରକୁ ଫେରେନି । ସମ୍ବାଦପତ୍ର ପଢ଼ି ଖବର ଜାଣିବାକୁ ମଧ୍ୟ ତା'ର ଘୋର ବିତୃଷ୍ଣା । ଝିଅକୁ ଖୁଆଇ ତା'ର ପୋଷାକ ସଫା କରିବା, ରୋଷେଇରେ ବ୍ୟସ୍ତ ରହି ତାକୁ ତ ସମୟ ମିଳେନା । ବିନା ବାକ୍ୟବ୍ୟୟରେ ସିଏ କିନ୍ତୁ ଅନୁସରଣ କଲା । ପତ୍ରିକା କେତୁଟା ଓଲଟାଇବା ଏବଂ ନିଯୁକ୍ତି ବିଜ୍ଞାପନ ଆସିଲାଣି ନା ନାହିଁ ପଚାରିବା ଛଡ଼ା ସିଏ କିଛି କିଣିଲାନି । ଦୁଇ ତିନିଟା ଦୋକାନରେ ସେଇ ଜିନିଷର ପୁନରାବୃତ୍ତି ହେଲା । ସମସ୍ତ ଦୋକାନୀ ମଧ୍ୟ ସେଇ ନିର୍ଦ୍ଦିଷ୍ଟ ପତ୍ରିକାଟି ଆସିନାହିଁ ବୋଲି ନାସ୍ତିବାଣୀ ଶୁଣାଉଥିଲେ ।

ଇତି ମଧ୍ୟରେ ଦୀର୍ଘଯାତ୍ରା ନିମନ୍ତେ ଛିଡ଼ା ହୋଇଥିବା ବସ୍‌ଗୁଡ଼ିକ ମଧ୍ୟରୁ କେତେକ ଛାଡ଼ି ଦେଇଥିଲେ । ତଥାପି ରାଉରକେଲା ବସ୍ ଛାଡ଼ିବା ନିମନ୍ତେ ଡେରି ଥିଲା ଏବଂ ପ୍ରଜ୍ଞା ମଝିରେ ମଝିରେ ଟାଉନ୍ ବସ୍‌ଷ୍ଟାଣ୍ଡକୁ ଆସି ଏଗାର ନମ୍ବର ବସ୍‌ଟି ଆସିଲାଣି ନା ନାହିଁ ବୁଝି ଯାଉଥିଲା ଓ ପୁଣି ଯାଇ ଅଶ୍ୱିନୀ ନିକଟରେ ଛିଡ଼ା ହେଉଥିଲା । ତା'ର ଅନ୍ୟମନସ୍କତା ଅଶ୍ୱିନୀ ଲକ୍ଷ୍ୟ କରୁଥିଲେ ମଧ୍ୟ କିଛି କହୁନଥିଲା ।

"ତମେ ପ୍ରଜ୍ଞା ନାଁ ?" -ଚଷମା କାଢୁ କାଢୁ ଜଣେ ଭଦ୍ରବ୍ୟକ୍ତି ନିକଟରେ ପହଞ୍ଚି ଯାଇଥିଲେ ।

ପ୍ରଜ୍ଞା ଏତେ ଖୁସି ହୋଇଗଲା ଯେ, ତା'ର ଗାମ୍ଭୀର୍ଯ୍ୟ କୁଆଡ଼େ ଉଭେଇଗଲା । ନମସ୍କାର କରୁ କରୁ କହିଲା, ମୁଁ ଆପଣଙ୍କୁ କେତେ ଖୋଜୁଥିଲି ? ସିଏ ଅଶ୍ୱିନୀକୁ ଡାକ ପକାଇଲା ଏବଂ ଚିହ୍ନାଦେଲା- ଆଦିତ୍ୟବାବୁ ବାପାଙ୍କ ଅଧିନରେ ସହକାରୀ ଥିଲେ ଏବଂ ପରେ ଓଡ଼ିଶା ପ୍ରଶାସନିକ ସେବାରେ ପରୀକ୍ଷା ଦେଇ ଚାଲିଯାଇଥିଲେ । ଘରକୁ ଆସିବାକୁ ନିମନ୍ତ୍ରଣ କରି ଠିକଣା ଦେଲା ପ୍ରଜ୍ଞା । ସାଙ୍ଗରେ ଯିବା ପାଇଁ ଅନୁରୋଧ କଲା ବି ।

ଅଶ୍ୱିନୀର ଗାଡ଼ି ସମୟ ହୋଇଯାଇଥିଲା । ଗାଡ଼ି ହର୍ଣ୍ଣ ଦେଉଥିଲା ।

ଆଦିତ୍ୟ କାଲି ସକାଳେ ଆସିବାର ପ୍ରତିଶ୍ରୁତି ଦେଉ ଦେଉ ଦଶ ନମ୍ବର ବସ୍‌ରେ ଲକ୍ଷ୍ମୀସାଗର ଯିବେ ବୋଲି ଜଣାଉଥିଲେ ।

ରାଉରକେଲା ବସ୍ ଷ୍ଟାଣ୍ଡ୍ ବାହାରକୁ ଚାଲିଯାଇଥିଲା । ପ୍ରଜ୍ଞା ଏବଂ ଆଦିତ୍ୟ ଟାଉନ୍ ବସ୍‌ଷ୍ଟାଣ୍ଡ୍‌କୁ ଆସିଲେ । ସେମାନେ ପଚାରୁଥିଲେ ପରସ୍ପରକୁ, ଜଣେ ଆଉ ଜଣକୁ ।

ପ୍ରଜ୍ଞା ଜଣାଇଲା ଯେ ସ୍ୱାମୀ ତା'ର ଗ୍ରାମ୍ୟ ବ୍ୟାଙ୍କ୍ କ୍ଷେତ୍ର ପରିଦର୍ଶକ ପଦବୀରୁ ଇସ୍ତଫା ଦେଇ ଖାସ୍ ଭୁବନେଶ୍ୱରରେ ରହିବା ପାଇଁ ହିସାବ ସମୀକ୍ଷକ ଭାବେ ଯୋଗ ଦେଇଥିଲେ । ଅଥଚ ମାସରେ କୋଡ଼ିଏ ଦିନ ତାଙ୍କୁ ଭୁବନେଶ୍ୱର ବାହାରେ ରହିବାକୁ ପଡ଼େ ସରକାରୀ କାମରେ । ତେଣୁ ଝିଅ ସହିତ ଏକା ରହେ ଗୋଟେ ଭଡ଼ା ଘରେ । ତେବେ ଏଇ କେତେଦିନ ହେଲା ଜଣେ ସମ୍ପର୍କୀୟ ବିଧବା ପିଉସୀ ଶାଶୁ ରହୁଛନ୍ତି ।

ଆଦିତ୍ୟ ଦେଖୁଥିଲେ ପ୍ରଜ୍ଞାର ସ୍ୱାସ୍ଥ୍ୟରେ କିଛି ଉନ୍ନତି ଘଟିଛି । ଅଥଚ ତାଙ୍କ ନିଜର ସ୍ୱାସ୍ଥ୍ୟହାନି ଘଟିଛି ବୋଲି ଅନ୍ୟମାନଙ୍କଠାରୁ ଶୁଣି ତାଙ୍କ ମନଦୁଃଖ ହେଉଥିଲା । ଅନେକ ପ୍ରଶ୍ନ । ଚାକିରିର ଅବସ୍ଥାନ, ପରିବେଶ, ସ୍ୱାସ୍ଥ୍ୟ, ପରିବାର ଏବଂ ପୁଅର ପଢ଼ାପଢ଼ି । କିନ୍ତୁ ଏସବୁର କିଛି ଉତ୍ତର ଦେଲେନି ଆଦିତ୍ୟ । ଦଶ ନମ୍ବର ବସ୍ ଆସି ଛିଡ଼ା ହେଲା । ତା' ଉପରକୁ ଉଠିବା ପୂର୍ବରୁ ପଚାରିଲେ, ଯଦି ତା'ର ଏକୁଟିଆ ଯିବାରେ ଅସୁବିଧା ହୁଏ ତେବେ ସେ ଯାଇ ତାକୁ ଗନ୍ତବ୍ୟ ସ୍ଥଳରେ ଛାଡ଼ି ଆସିବେ ।

ପ୍ରଜ୍ଞା ମନା କଲା ଏବଂ କାଲି ଆସିବା ପାଇଁ ପ୍ରତିଶ୍ରୁତି ଆଦାୟ କଲା ।

ବସ୍ ଛାଡ଼ିବାକୁ ଅନ୍ତତଃପକ୍ଷେ କୋଡ଼ିଏ ମିନିଟ୍ ଡେରି ଅଛି ବୋଲି ପରିଚାଳକ କହିବା ସତ୍ତ୍ୱେ ବାହାରେ ଛିଡ଼ା ହୋଇ ଗପ କଲେନି । ଚୁପ୍‌ଚାପ୍ ଯାଇ ଗାଡ଼ିରେ ବସିଲେ । ଅନେକ ଗୁଡ଼ାଏ ଜାଗା ଖାଲିଥିଲା ଏବଂ ଜଣେ ଜଣେ ଲୋକ ଆସି ବସୁଥିଲେ । ବ୍ରିଫ୍‌କେଶ୍‌ଟିକୁ ସାମ୍ନାରେ ରଖି ସେ ପ୍ରଜ୍ଞାକୁ ଦେଖିବାକୁ ଚେଷ୍ଟା କଲେ । ସେ ନଥିଲା । ତା'ର ବସ୍ ବୋଧହୁଏ ଆସିଗଲାଣି, ଚିନ୍ମୟ କଥା ମନେ ପଡ଼ିବାରୁ ସେ ଭାବିଲେ ଯେ ଆସନ୍ତା ମାସରେ ନିଶ୍ଚୟ ତାକୁ ଦେଖା କରିବାକୁ ଯିବେ । ଅଫିସ୍‌ରେ ଅନେକ କାମ ଥିଲା । ଏକମାତ୍ର ପୁତ୍ରକୁ ଆବାସିକ ବିଦ୍ୟାଳୟରେ ଛାଡ଼ିଦେଇ ସେ ଠିକ୍ କରିନାହାନ୍ତି ବୋଲି ଭାବୁଥିଲେ । ଅଥଚ ତା' ଛଡ଼ା ଅନ୍ୟ ଉପାୟ ନଥିଲା ।

ଛାଡ଼ିବାକୁ ଥିବା ଗାଡ଼ି ଉପରକୁ ଉଠି ପ୍ରଜ୍ଞା ମନେ ପକାଇଦେଲା ଯେ କାଲି ସକାଳେ ଯେପରି ଆସିବାକୁ ଭୁଲି ନ ଯାଆନ୍ତି ।

ହଁ, କହି ଆଦିତ୍ୟ ହସିଲେ ।

ଟାଉନ୍ ବସ୍‌ରେ ଆସୁ ଆସୁ ପ୍ରଜ୍ଞା କୋରାପୁଟ କଥା ମନେପକାଉଥିଲା । ସେଇଠି ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିଲେ ତା' ବାପା । ପାଞ୍ଚଜଣ ଭାଇଭଉଣୀଙ୍କ ମଧ୍ୟରେ ସିଏ ବଡ଼ । ତେଣୁ ତା ଭାଗ୍ୟରେ ପୁରୀରେ ହଷ୍ଟେଲରେ ରହି ପଢ଼ିବାକୁ ସୁଯୋଗ ମିଳିଥିଲା ଯାହା । ଅନ୍ୟମାନେ କେହି କଲେଜ୍‌କୁ ଯାଇ ନଥିଲେ । ପୂଜା ଛୁଟିରେ କଲେଜ୍‌ରୁ ଫେରି ସେ ଦେଖିଲା ପ୍ରଥମଥର ପାଇଁ ଆଦିତ୍ୟଙ୍କୁ । ସଦ୍ୟ ଯୋଗ ଦେଇଥାନ୍ତି । ସାଙ୍ଗରେ ସାନ ପୁଅ ଚିନ୍ମୟ । ତାଙ୍କ ସ୍ତ୍ରୀ କାହିଁକି ଆସି ନାହାନ୍ତି ବୋଲି

କେହି ଜାଣି ନଥିଲେ । ସେ ମରିଯାଇଥିଲେ ନା ସମ୍ପର୍କ ତୁଟାଇ ଚାଲିଯାଇଥିଲେ କେହି ପଚାରିନଥିଲେ । ତେବେ ପୁଅଟିକୁ ନେଇ ସେ ସ୍କୁଲକୁ ଆସୁଥିଲେ । ତାଙ୍କୁ ବଜାରରେ କେହି ଦେଖୁ ନଥିଲେ । ହାତରେ ରୋଷେଇ କରି ଖାଇବା, ସ୍କୁଲ୍‌ରେ ପଢ଼ାଇବା ଏବଂ ପୁଅଟିକୁ ଖୁଆଇବା ପିଆଇବା ସମୟକୁ ଛାଡ଼ିଦେଲେ ଅଧିକାଂଶ ସମୟ ସିଏ କୋଉ ପ୍ରତିଯୋଗିତାମୂଳକ ପରୀକ୍ଷା ନିମନ୍ତେ ପ୍ରସ୍ତୁତ ହେଉଥିଲେ । ଆଉ ସେଇ କୋରାପୁଟରୁ ଯେତେବେଳେ ପରୀକ୍ଷା ଦେବାକୁ ଗଲେ, ପୁଅଟିକୁ ତାଙ୍କରି ଘରେ ଛାଡ଼ିଦେଇ ଯାଇଥିଲେ । ତାଙ୍କର ବୋଧହୁଏ ଆତ୍ମପ୍ରତ୍ୟୟ ଆସି ଯାଇଥିଲା- ପୁଅର କୌଣସି ଅବହେଳା ହେବନି । ସେତେବେଳେ ସିଏ ଘରେ ଥିଲା । ଅପା ଅପା ଡାକି ପୁଅଟି ତା' ପାଖ ଛାଡୁ ନଥିଲା । ମାତୃ ସ୍ନେହରୁ ବଞ୍ଚିତ ସେଇ ଛୋଟ ପୁଅଟିକୁ ସାହଚର୍ଯ୍ୟ ଦେଇ ତା' ମନରେ ଅହେତୁକ ମାତୃତ୍ୱର ସ୍ନେହ ଅଙ୍କୁରିତ ହେଉଥିଲା । ତା' ଇଚ୍ଛା ହେଉଥିଲା, ଏଇ ଅବୋଧ ପିଲାଟି ପାଖରେ ସର୍ବଦା ସେ ରହିବାର ସୁଯୋଗ ପାଆନ୍ତା ହେଲେ ।

ଆଦିତ୍ୟ ଫେରି ଆସିଲେ । ପ୍ରଜ୍ଞାର ପରୀକ୍ଷା ପାଖ ହୋଇଆସିଥିଲା ।

ବସ୍‌ରୁ ଓହ୍ଲାଇ ଘରକୁ ଚାଲି ଚାଲି ଯିବାକୁ ପଡ଼େ । ଗାଡ଼ି ବହୁ ଜାଗାରେ ଅଟକୁ ଥିଲା । ଅନ୍ଧାରୁଆ ରାସ୍ତାରେ ଚାଲି ଚାଲି ଘରେ ପହଞ୍ଚିଲା ବେଳକୁ ଘର ବି ଅନ୍ଧାର । ଝିଅ ଶୋଇ ପଡ଼ିଲାଣି । ଲଣ୍ଠନ ମିଞ୍ଜି ମିଞ୍ଜି ଜଳୁଥିଲା । କାଠ ଜଳାଇ ତା'ର ରୋଷେଇ କରିବା ନିମନ୍ତେ ଇଚ୍ଛା ହେଉନଥିଲା । ପିଉସୀ ଚୁଡ଼ା ଖାଇ ଚଳାଇ ଦେଲେ ତାକୁ ଝିନ୍‌ଝଟ୍‌ରୁ ରକ୍ଷା ମିଳନ୍ତା । ପଚାରିଲେ ମନଦୁଃଖ କରିବେ । ଗ୍ୟାସ୍‌ଟିଏ ଥିଲେ ବି ଖୁବ୍ ଶୀଘ୍ର ରୋଷେଇ ସରିଯାଆନ୍ତା । ବାରଣ୍ଡା ସାରା ଅଳନ୍ଧୁ । ଘରବାଲା ତାଗିଦ୍ କରି ଦେଇଥିଲା । ରାଜଧାନୀରେ ବା କାଠ କୋଉ ଶସ୍ତା । କାହିଁ କେତେଦୂରରୁ ରିକ୍ସାରେ ଆଣିବାକୁ ପଡ଼ିବ । ଅତିଥି ଜଣେ ପହଞ୍ଚିଲେ ଚା' ଟିକିଏ କରିବା ନିମନ୍ତେ ଅଧଘଣ୍ଟାରୁ ଅଧିକ ସମୟ ଲାଗିବ । ଅଶ୍ୱିନୀ ନଥିଲା ବେଳେ ଯଦି କାଠ ସରିଗଲା, ତେବେ କଥା ସରିଲା । ଅନେକ ଥର ଏମିତି ଘଟିଲାଣି । ହେଲେ ଅଶ୍ୱିନୀ କିଛି ଶୁଣିବନି । ଗ୍ୟାସ୍ କଥା ଉଠିଲେ ଆଡ଼େଇ ଦେଇ କହେ, ଆଜିକାଲିର ସ୍ତ୍ରୀମାନେ ବଡ଼ କର୍ମବିମୁଖ ହେଲେଣି । ତା'ଛଡ଼ା ଏକ ସଙ୍ଗେ ଦୁଇ ହଜାର ଟଙ୍କା ଯୋଗାଡ଼ କରିବା ଯେପରି ତା'ର କ୍ଷମତା ବାହାରେ । ଅଥଚ ନଣନ୍ଦ ପାଇଁ ଶାଢ଼ୀ, ତା' ପୁଅ ପାଇଁ ପୋଷାକ କିଣିବା ନିମନ୍ତେ ଅତିକମ୍‌ରେ ସାତଶହ ତ ଖର୍ଚ୍ଚ ହୋଇଥିବ । ଅନ୍ୟ ବନ୍ଧୁମାନେ; ଆସୁଛନ୍ତି ଏବଂ ଯାଉଛନ୍ତି ।

ଗଭୀର ମନସ୍ତାପ, ଅସନ୍ତୋଷ ଓ କ୍ଲାନ୍ତି ସତ୍ତ୍ୱେ ସିଏ ଶାଢ଼ୀ ପାଲଟି ରୋଷେଇ କଲା । ଘୁଙ୍ଗୁଡ଼ିମାରି ଶୋଇଥିବା ପିଉସୀ ଶାଶୁଙ୍କୁ ଉଠାଇ ଖାଇବାକୁ ଦେଲା । ଝିଅକୁ

ମଶାରୀ ଭିତରକୁ ନେଲା । ବାରଣ୍ଡା ଗ୍ରୀଲ୍ ବନ୍ଦ କଲା । ରାଗରେ ତା'ର ଭୋକ ବନ୍ଦ ହୋଇ ଯାଇଥିଲା । ବାଧ୍ୟକରି କେହି ଖୁଆଇବା ପାଇଁ ନଥିଲେ । ଅନେକବାର ଏମିତି ଘଟୁଥିଲା ବାହାଘର ପରେ । ତେଣୁ ତା'ର ଜିଦ୍ ବଢ଼ି ଯାଇଥିଲା ଏବଂ ସେଦିନ ମଧ୍ୟ ସେ ନଖାଇ ଶୋଇ ପଡ଼ିଲା ।

ସକାଳୁ ପ୍ରଜ୍ଞାର ନିଦ ଭାଙ୍ଗେନି । ଏଇ ଅଭ୍ୟାସ ତା'ର ଅନେକ ଦିନର । ମାଆଙ୍କଠାରୁ ବିବାହ ପୂର୍ବରୁ ଏବଂ ଏବେ ଅଶ୍ୱିନୀଠାରୁ ଗାଳି ଶୁଣିବାକୁ ପଡ଼େ । ସିଏ ଏତେ ଅଭ୍ୟସ୍ତ ହୋଇ ଗଲାଣି ଯେ ଏବୁକୁ ଦିହକୁ ନିଏନି । ଅନେକ ରାତିରେ ଶୋଇଲେ ବି ସକାଳୁ ସକାଳୁ ନିଦ ଭାଙ୍ଗିଗଲା ଝଣଝଣ ଶବ୍ଦରେ । ସବୁଦିନ ବିରକ୍ତ ଲାଗେ । ଆଜି କିନ୍ତୁ ବିରକ୍ତି ପ୍ରକାଶ କଲାନି । ପିଉସୀ ଅଭ୍ୟାସବଶତଃ ରାତି ଚାରିଟାରୁ ଉଠି ସାରିଥିଲେ ଏବଂ ଝିଅକୁ ନେଇ ଖେଳାଉଥିଲେ । ସେ କାହାକୁ କିଛି ନ କହି ଗାଧୁଆ ଘରକୁ ଗଲା । ପାଇଖାନାଟା ଟିକିଏ ଛାଡ଼ି ଗୋଟାଏ କଣକୁ, ଛାତ ପଡ଼ିନି । ନଡ଼ିଆ ବାହୁଙ୍ଗା ଦୁଇଟା ପଡ଼ିଛି ରୌଦ୍ରତାପରୁ ରକ୍ଷା ପାଇବା ନିମନ୍ତେ । ମାତ୍ର ବର୍ଷାଦିନେ ଟପ୍ ଟପ୍ ପାଣି ପଡ଼ି ଦେହକୁ ଉଲୁସାଇଦିଏ । କୁଅମୂଳେ ଗାଧୁଆ ଘର- କୌଣସି କବାଟ ନାହିଁ । ବଡ଼ ସାବଧାନ ହେବାକୁ ପଡ଼େ । ଘରବାଲା ଏସବୁର ସମାଧାନ ବିଷୟରେ ଉଁ ଚୁଁ କରେନି । ମାତ୍ର ପାଞ୍ଚ ତାରିଖ ମଧ୍ୟରେ ଭଡ଼ା ନ ଦେଲେ ପୃଥିବୀ ଫାଟିଯିବା ପରି ଚିତ୍କାର କରିବ । ଲୋକଟା ଅତି ମାତ୍ରାରେ ଅଭଦ୍ର । ଦୁଇ ବଖରା ଛୋଟ ଘର । ବାରଣ୍ଡାରେ ରୋଷେଇ ପାଇଁ ବ୍ୟବସ୍ଥା । ଏଇଥିପାଇଁ ପାଞ୍ଚଶହ ଟଙ୍କା । ଆଉ ଟିକିଏ ସୁବିଧାଥିବା ଘରକୁ ଉଠିଗଲେ ହୁଅନ୍ତା । କିନ୍ତୁ ଭଡ଼ା କଥା ଉଠିଲେ ମନ ଦବିଯାଏ ।

ପିଉସୀଙ୍କୁ ଲଗାଇ ଘରର ଅଳନ୍ଧୁ ଝାଡ଼ିବା ପରେ ନିଜେ ବିଛଣା ଚାଦର, ତକିଆ ଖୋଳ ବଦଳାଇଲା ପ୍ରଜ୍ଞା । ଡ୍ରେସିଂ ଟେବୁଲ୍, ଟି.ଭି. ଖୋଳ ଆଉ ଷ୍ଟିଲ୍ ଆଲମିରାରୁ ଧୂଳି ଝାଡ଼ିଦେଲା । ବାସନଗୁଡ଼ା ସର୍ଫ୍‌ଦେଇ ସଫା କଲା । ଦୁଇ ତିନି କିସମର ମିଠା ଏବଂ ମାଛ ମଗାଇଲା । ତା'ପରେ ଗାଧୁଆ ଘରକୁ ଯାଇ ଅନେକ ସମୟ ଗାଧୋଇବା ପରେ ଫେରି ଆସିଲା । ଝିଅ ଖେଳିବା ନିମନ୍ତେ ତା' ପାଖରେ ଖେଳନା ସବୁ ଅଜାଡ଼ି ଦେଲା । ଭଲ ଶାଢ଼ୀ ଆଉ ମିଳାଇକରି ବ୍ଲାଉଜ୍ ପିନ୍ଧିଲା । ମୁଣ୍ଡରେ ବିନ୍ଦି ମାରିଲା । ଡ୍ରେସିଂ ଟେବୁଲ୍ ସାମ୍ନାରେ ବସି ମୁହଁକୁ ଏପଟ ସେପଟ କଲା । ସେ ଗୃହର ଦୈନନ୍ଦିନ ଅଭାବ, ଅଶ୍ୱିନୀର ଉଦାସୀନତା ଓ ନିଜର ଅବଶୋଷକୁ ଢାଙ୍କିଦେଇ ହୃଦୟର ବିଶାଳତା ଓ ସୌନ୍ଦର୍ଯ୍ୟର ସମ୍ଭାର ମଧ୍ୟରେ ଆଦିତ୍ୟଙ୍କୁ ସ୍ୱାଗତ କରିବାକୁ ଚାହୁଁଥିଲା ।

ଚୌକି ପକାଇ ବାରଣ୍ଡାରେ ବସିଲା ପ୍ରଜ୍ଞା । ଝିଅଟି ପାଖରେ ଖେଳୁଥିଲା । ରାସ୍ତାରେ କାହାର ପାଦ ଶବ୍ଦ ବା ରିକ୍ସାର ଶବ୍ଦ ଶୁଣିଲେ ସେ ଫାଟକ ଆଡ଼କୁ ଚାହୁଁଥିଲା

ଏବଂ ଘଣ୍ଟାକୁ ଦେଖୁଥିଲା । ଆଦିତ୍ୟ ଆସୁ ନଥିବାରୁ ତା'ର ଉତ୍କଣ୍ଠା ବଢ଼ି ଯାଉଥିଲା । ତା'ର ଦୃଢ଼ ବିଶ୍ୱାସ ଥିଲା ଯେ ସେ ନିଶ୍ଚୟ ଆସିବେ, ଯେହେତୁ ଆସିବା ନିମନ୍ତେ ଦୁଇଥର ସମ୍ମତି ଦେଇଛନ୍ତି ।

ଝିଅ ମୋଟେ କାନ୍ଦୁନଥିଲା ବା ଖିଟିଖିଟିଆ ପିଉସୀ ଗରଗର ହେଉନଥିଲେ । ଏଇମିତିଆ ପରିବେଶଟା ପ୍ରଜ୍ଞାକୁ ଖୁବ୍ ଭଲ ଲାଗୁଥିଲା ଏବଂ ଆଦିତ୍ୟଙ୍କୁ ଭଲ ଲାଗିବ ବୋଲି ଭାବୁଥିଲା ।

ପ୍ରାୟ ଦିନ ନଅଟା ବେଳକୁ ଆଦିତ୍ୟ ରିକ୍ସାରୁ ଓହ୍ଲାଇଲେ । ଛିଡ଼ା ହୋଇପଡ଼ିଲା ପ୍ରଜ୍ଞା ଏବଂ କାହିଁକି ଏତେ ଡେରି ହେଲା ବୋଲି ପଚାରୁଥିଲା । ଚଷମା ସଜାଡ଼ି ପାହାଚ ଉଠୁ ଉଠୁ ଅଭିଯୋଗ କରୁଥିଲେ ଆଦିତ୍ୟ । ଏମିତି ଜାଗାରେ ଘରଟା ନେଇଛ ଯେ ଖୋଜିବାକୁ ତ ଘଣ୍ଟାଏ ଲାଗିଗଲାଣି । ଆଟାଚିଟା ଥୋଇ ଆଉ ଗୋଟେ ଚଉକି କିମ୍ବା ସେଇମିତି କିଛି ଖୋଜୁଥିଲେ ବସିବା ପାଇଁ । ମାତ୍ର ଶୋଇବା ଘରକୁ ପ୍ରଜ୍ଞା ବାଟ କଢ଼ାଇନେଲା ।

ଜୋତା ଖୋଲି ଭିତରକୁ ପଶିଲେ ସିଏ । ଘର ଭିତରେ ସୁଗନ୍ଧିତ ମହକ ଖେଳି ବୁଲୁଥିଲା । ଟେବୁଲ୍ ଉପରେ ଦୁଇ ତିନୋଟି ଗୋଲାପ ଫୁଲ ରଖାଯାଇଥିଲା । ପକେଟ୍‌ରୁ ରୁମାଲ୍ ନେଇ ମୁହଁ ପୋଛିଲେ ଆଦିତ୍ୟ । ମଧ୍ୟମ ବେଗରେ ପଙ୍ଖା ଘୂରାଇଦେଇ ସହଜ ଭାବରେ ବସିବାକୁ କହିଲା ପ୍ରଜ୍ଞା । ଝିଅଟି ଧାଇଁ ଆସିଲା । ଥରେ ମାଆ ଆଡ଼କୁ ଏବଂ ଥରେ ଅପରିଚିତ ଆଗନ୍ତୁକଙ୍କ ଆଡ଼କୁ ଶଙ୍କିତ ଭାବରେ ଚାହିଁଦେଇ ପଳାଇବାକୁ ଉଦ୍ୟତ ହେଲାବେଳକୁ ତୋଳିନେଲେ କୋଳକୁ ଆଦିତ୍ୟ । ହାତ ବାକ୍ସ ଖୋଲି ଗୋଟିଏ ତାଜମହଲର ନମୁନା, କିଛି ଫଳ ଏବଂ ବିସ୍କୁଟ୍ ତା ଆଡ଼କୁ ବଢ଼ାଇଲେ । ତା'ର ସବୁ ନେବାକୁ ଇଚ୍ଛା ହେଉଥିଲା, ଅଥଚ ମା'ଆଡ଼କୁ ଚାହିଁ କିଛି ନେଉ ନଥିଲା ।

ହସିଲେ ଆଦିତ୍ୟ; ହସିଲା ପ୍ରଜ୍ଞା ।

ତା'ର ସାହସ ବଢ଼ିଗଲା । ସବୁଗୁଡ଼ିକ ଏକ ସଙ୍ଗେ ଧରୁ ଧରୁ ସେଗୁଡ଼ିକ ଖସି ପଡୁଥିଲା । ତା' ହାତରେ ବିସ୍କୁଟ୍ ଧରାଇଦେଲେ ବାକି ସବୁକୁ ଟେବୁଲ୍ ଉପରେ ସଜାଡ଼ିଦେଲେ ଆଦିତ୍ୟ । ଟେପ୍ ରେକର୍ଡ଼ର୍‌ରେ ଲଘୁସଙ୍ଗୀତ ଲଗାଇଦେଇ ଉଠିଗଲା ପ୍ରଜ୍ଞା ।

ଗୋଟେ ଥାଳିରେ ପକୋଡ଼ି ଆଉ ମିଠା ଆଣି ଥୋଇଲା ଟିପୟ ଉପରେ । ଗ୍ଲାସ୍‌ରେ ଜଗ୍‌ରୁ ପାଣି ଢାଳୁ ଢାଳୁ ହାତ ଧୋଇବାକୁ ଡାକୁଥିଲା ଆଦିତ୍ୟଙ୍କୁ । ତକିଆରେ ଅର୍ଦ୍ଧଶାୟିତ ଅବସ୍ଥାରେ ପଙ୍ଖା ବ୍ଲେଡ଼ରୁ ଆଖି ଫେରାଇ ସେ ଚାହିଁଲେ ପ୍ରଜ୍ଞା ଆଡ଼କୁ । ସେ ଆବଶ୍ୟକତା ଅପେକ୍ଷା ଅଧିକ ପ୍ରଫୁଲ୍ଲ ଥିବାର ମନେ ହେଉଥିଲା । ସବୁଜ ରଙ୍ଗର ଚୁଡ଼ିଗୁଡ଼ିକ ତା'ର ଗୋରା ହାତକୁ ଖୁବ୍ ମାନୁଥିଲା – ମାନୁଥିବାର ମନେହେଉଥିଲା ।

ଶାଢ଼ୀଟା ଦାମିକା ନହେଲେ ବି ବଡ଼ ଆକର୍ଷଣୀୟ ଥିଲା । ସେ ଆଖିରେ କଜ୍ଜଳ ଲଗାଇଥିଲା ଏବଂ ଲିପଷ୍ଟିକ୍ ଲଗାଇ ବାଳଗୁଡ଼ିକ ଆଉ ଟିକିଏ ଛୋଟକରି କାଟି ଦେଇଥିଲେ କଲେଜ ପଢୁଆ ଝିଅଭଳି ଦେଖା ଯାଉଥାନ୍ତା ବୋଲି ଭାବୁଥିଲା । ସେ କିଛି ପ୍ରଶଂସା ସୂଚକ ମନ୍ତବ୍ୟ ଦେବାକୁ ଭାବୁ ଭାବୁ ନିଜକୁ ସଂଯତ କରିନେଲେ ଏବଂ କିଛି ଖାଇବାର ଇଚ୍ଛା ନାହିଁ ବୋଲି ଜଣାଇଲେ ।

"ନା ନା, ଖାଇବାକୁ ହେବ –" ପ୍ରତିବାଦ କରୁଥିଲା ପ୍ରଜ୍ଞା ।

ପକୋଡ଼ିଟିଏ ହାତରେ ଉଠାଉ ଉଠାଉ ଅନ୍ୟମନସ୍କ ଭାବେ ଉଦ୍ଦେଶ୍ୟହୀନ ପ୍ରଶ୍ନ ପଚାରିଦେଲେ ଆଦିତ୍ୟ, "କେମିତି ଅଛ, ଆଉ କେମିତି ଲାଗୁଛି ଏଇ ଜୀବନ ?" ସିଏ ବୋଧହୁଏ ଭାବୁଥିଲେ ସ୍ୱାମୀ, କନ୍ୟାର ବିହ୍ୱଳିତ ସଂସାର ମଧ୍ୟରେ ପ୍ରଜ୍ଞା ତାଙ୍କୁ ବତାଇଦେବ ନିଃସଙ୍ଗତା ଦୂରେଇ ଦେବାର ଉପାୟ । ଏକମାତ୍ର ପୁତ୍ର ଆବାସିକ ବିଦ୍ୟାଳୟରେ । ଅଧସ୍ତନ କର୍ମଚାରୀମାନେ ସର୍ବଦା ଦୂରେଇ ରହିଥାନ୍ତି । ଗାଆଁରେ କାହାଠାରୁ ଆଶ୍ୱାସନା ମିଳିବାର ସମ୍ଭାବନା ନାହିଁ । ସିଏ ବି ଯାଆନ୍ତାନି । ତେବେ ଏଇମାନଙ୍କ ଗହଣରେ ସ୍ୱଳ୍ପ କେତେକ ମୁହୂର୍ତ୍ତ ହେଲେ ଆନନ୍ଦରେ କଟୁ । ମାତ୍ର ପ୍ରଜ୍ଞା ଏ ପ୍ରଶ୍ନ ଶୁଣିବାକୁ ପ୍ରସ୍ତୁତ ନଥିଲା । ବର୍ଷଣା ମେଘ ପରି ତା' ମୁହଁ ଭାରି ହୋଇଗଲା । ଶବ ଉପରେ ଆଚ୍ଛାଦିତ ବସ୍ତ୍ର ଅପସାରଣ କରିଦେଲେ ଯେପରି ବିସ୍ତାରିତ ସ୍ଥିର ଦୃଷ୍ଟି ଦେଖିବାକୁ ମିଳେ, ପ୍ରଜ୍ଞାର ମୁଖ ସେହିପରି ବଦଳିଗଲା ।

ସେ କିଛି ଉତ୍ତର ଦେଲାନି । ଟିକିଏ ରହିଥା କହି ଚୁଲିମୁଣ୍ଡକୁ ଉଠିଗଲା । ପ୍ରେସର କୁକରରେ ଡାଲି ଆଉ ପାଣି ମାପି ଷ୍ଟୋଭ୍ ଉପରେ ରଖିଲା । ପରିବା ଡାଲାରେ ସବୁ ପରିବା ଶୁଖି ଯାଇଥିଲା । ହଳଦୀବସନ୍ତଟିଏ ଗୋଟିଏ ଡାଳରୁ ଅନ୍ୟ ଡାଳକୁ ଉଡ଼ି ଯାଉଥିଲା । ବଣି ଦୁଇଟି ମାଟି ଉପରୁ ଝିଣ୍ଟିକା ଖୋଳୁଥିଲେ । ଆଦିତ୍ୟଙ୍କୁ ଡାକି ହଳଦୀବସନ୍ତ ଆଡ଼କୁ ହାତ ବଢ଼ାଇଲା । କେତେ ସୁନ୍ଦର ତା'ର ଚେହେରା ଆଉ କେତେ ଅଫୁରନ୍ତ ତା'ର ସ୍ୱାଧୀନତା ! ବାରଣ୍ଡାରେ ଆଦିତ୍ୟଙ୍କୁ ବସାଇଦେଇ ପିଢ଼ା ଉପରେ ବସିଲା ପ୍ରଜ୍ଞା । ନିଜ ପ୍ରଶ୍ନକୁ ଦୋହରାଇଲେ ଆଦିତ୍ୟ– "କିଛି କହିଲନି ତ ପ୍ରଜ୍ଞା, ଜୀବନର ସ୍ୱାଦ କେମିତି ଲାଗୁଛି ?"

ପ୍ରଜ୍ଞା କାରୁଣ୍ୟ ସମ୍ବରଣ କରି ଯଥାସମ୍ଭବ ସହଜ ହେବାକୁ ଚେଷ୍ଟାକଲା । ତା'ର ସୁନ୍ଦର ଶାଢ଼ୀଟା ଝାଳରେ ଭିଜି ଯାଇଥିଲା । ଆଉ ପଣତ, ତଳେ ଘୁସୁରୁଥିଲା । ମୁହଁ ପୋଛି ସିଏ କହୁଥିଲା, "ଏଇ ପାଖରେ ଅନେକ ସୁନ୍ଦର ଘର ଅଛି । ଭଡ଼ା ଲାଗିବ ବୋଲି ଜାଣିଥିଲେ ମଧ୍ୟ ଆମେ ଏଇ ଘରଟାରେ ଅଛୁ । ଆଉ ଉତ୍ତର ପୁରୁଷଙ୍କ ପାଇଁ ଗୋଟେ ସ୍ଥାୟୀ ବାସଘରର ସ୍ୱପ୍ନ ଦେଖିବୁ କେମିତି ? ଝିଅ ତ ଗୋଟିଏ । ତା ବୟସର ପିଲାମାନେ କେତେ ରଙ୍ଗର ପୋଷାକ ପିନ୍ଧି ବୁଲୁଛନ୍ତି । ଅଥଚ ବାହାରକୁ ତାକୁ ସାଙ୍ଗରେ ନେଲାବେଳେ ସେଇ ଦୁଇ ତିନୋଟି ଯାହା ଅଛି, ସେଇଆ ପିନ୍ଧାଇବାକୁ ପଡ଼େ । ଏଇ ସମସ୍ତ ଊର୍ଦ୍ଧ୍ୱରେ ଅଛନ୍ତି ଅଶ୍ୱିନୀ । ଦେଖିଲେ ତ ତାଙ୍କୁ କାଲି । ବିଚାରଶୂନ୍ୟ ଭାବରେ

ଯୋଉ ଚାକିରିଟା ଛାଡ଼ିଦେଲେ ଆଉ ବର୍ଷଟିଏ ରହିଥିଲେ ପଦୋନ୍ନତି ପାଇଥାନ୍ତେ । ଏବେ ମାସରେ କୋଡ଼ିଏ ଦିନ ବାହାରେ । ଯୋଉ କେତେଦିନ ରହୁଛନ୍ତି ଏଠି, ସବୁବେଳେ ବାହାରେ ବୁଲୁଥିବେ । ଆଉ ଘରେ ଥିବା ସମୟତକ କୋଉ ଚିନ୍ତାରେ ମଗ୍ନ ଥା'ନ୍ତି କେଜାଣି ! କିଛି ଜିନିଷ କିଣିବାକୁ କହିଲେ, କହିବେ ନିଜ ରୋଜଗାରରେ କିଣ । ନଚେତ୍ ରାଗି ଅଗ୍ନିଶର୍ମା ହେବେ । ଏଇତ ମୋର ଜୀବନ ।" ଦୀର୍ଘଶ୍ୱାସ ଛାଡୁଥିଲା ପ୍ରଜ୍ଞା । ଟିକିଏ ରହି ପୁଣି ପଚାରିଲା, "କହିଲେ ମୋ ପାଇଁ କିପରି ନିଯୁକ୍ତି ମିଳିପାରିବ ଏବେ ?"

ଆଦିତ୍ୟ କିଛି କହିଲେନି । ପାଞ୍ଚବର୍ଷ ତଳର ଅଳସୀ ହସଖୁସିଆ ଝିଅଟିକୁ ଦେଖୁଥିଲେ । ତାଙ୍କ ଅନୁପସ୍ଥିତିରେ ଚିନ୍ମୟକୁ କେତେ ସୁନ୍ଦର ରଖି ପାରିଥିଲା ସେ । ଏବେ ତା'ର ଏବଂ ଅଶ୍ୱିନୀର ଝିଅକୁ ପାଳୁଛି । ଘର ସମ୍ଭାଳୁଛି- ଅଶ୍ୱିନୀର ଘର । ପ୍ରଜ୍ଞାର ସ୍ୱପ୍ନରେ ଏଇ ଘର ନଥିଲା । ସେ ତାକୁ ବୁଝାଇବାକୁ ସାହସ କରି ପାରୁନଥିଲେ, ଘର ସଜାଡ଼ିବା ଭାରି କଷ୍ଟ । ଆଉ ମନୋମତ ଘର ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ଜୁଟେ । ପ୍ରେସର୍‌କୁକର୍ ସିଟି ଦେଉଥିଲା । ସିଏ ଗହୀର ଆଡ଼କୁ ଚାହୁଁଥିଲେ । ଚାଷ ଜମିରେ ଘର ତୋଳା ଚାଲିଛି । ସବୁଜ କ୍ଷେତର ସଙ୍କୁଚନ ଘଟିଛି, ଯେପରି ମାନବିକତାର ଆସ୍ତେ ଆସ୍ତେ ସଙ୍କୁଚନ ଘଟିଛି । ଜୀବନର ପ୍ରାଣ ପ୍ରାଚୁର୍ଯ୍ୟ ନାହିଁ, ଅଥଚ ଆର୍ଥିକ ପ୍ରାଚୁର୍ଯ୍ୟତା ନିମନ୍ତେ ପ୍ରତିଯୋଗିତା ବଢ଼ିଯାଇଛି । ତେଣୁ ତ ସିଏ ପରାସ୍ତ ସୈନିକ ଭଳି ଘୂରି ବୁଲୁଛନ୍ତି । ପୁଅ କାହିଁ କେତେଦୂରରେ ଏଇ କୈଶୋର ଅବସ୍ଥାରୁ । ତାକୁ ଛାଡ଼ିବାକୁ ଇଚ୍ଛା ନଥିଲା । କିନ୍ତୁ ତା'ଭଳି ପିଲାଟା ବେଦୁଇନ୍ ଜୀବନରେ କେତେ ଘୂରିଥାନ୍ତା ? ଅଥଚ ପ୍ରଜ୍ଞା କହୁଛି ତା' ପାଇଁ ଗୋଟେ ନିଯୁକ୍ତିର ଆବଶ୍ୟକତା ରହିଛି, ହଳଦୀବସନ୍ତ ଭଳି ସ୍ୱାଧୀନତା ନିମନ୍ତେ । କିନ୍ତୁ ଟିକି ଝିଅଟି !

ସେ କହିବାକୁ ଚାହୁଁଥିଲେ ଉତ୍ତର ପୁରୁଷମାନଙ୍କ ସୁନ୍ଦର ସକାଳର ଆବାହନ ନିମନ୍ତେ ଏଇ ଘରେ ଝୋଟି ଲେଖ । ବଗିଚାରେ ଫୁଲଗଛ ଲଗାଇ ପାଣିଦିଅ । ପାଣି ଝରୁଥିବା ଛାତ ତଳେ ଡେକ୍‌ଚି ମାଠିଆ ରଖି ପିଲାମାନଙ୍କୁ ଶୁଆଇ ପକାଅ । ଆଉ କେହି ନଥିବା ବେଳେ ବେସୁରା ରାଗରେ ଗୀତ ଗାଅ । ସିଏ କିନ୍ତୁ କହିଲେ, "ମୁଁ ଯିବି ପ୍ରଜ୍ଞା ।" ତାଙ୍କର ଖାଇବାରେ ସ୍ପୃହା ମଧ୍ୟ ନଥିଲା । ତଥାପି ଅନୁରୋଧ ଏଡ଼ାଇ ନପାରି ଖାଇଲେ କିଛି । ଚାଲି ଚାଲି ଫେରି ଆସିବା ବେଳକୁ ପ୍ରଜ୍ଞା ଅନେକ ଦୂରଯାଏ ଛାଡ଼ିଆସିଥିଲା ଗୋଟିଏ ରିକ୍ସା ମିଳିବା ପର୍ଯ୍ୟନ୍ତ ।



# ପାହାଡ଼ ତଳେ

ରାତି ଅଧରେ ବା ପାହାନ୍ତିଆ ପହରକୁ ନିଦ ଭାଙ୍ଗିଲେ ଶୁଣାଯାଏ ତୁ ଢା ଶବ୍ଦ । ପାଖଆଖର ଲୋକମାନେ କିନ୍ତୁ କେବେ ବି ଭାବନ୍ତିନି ଡକାୟତ ଆସିଛି ଧନ ଜୀବନ ନେଇଯିବା ଉଦ୍ଦେଶ୍ୟରେ । ବିବାହ ଋତୁ ମଧ୍ୟ ନୁହେଁ । କୌଣସି ଗୋଷ୍ଠୀ ଉତ୍ସବର ସହ ତାଳଦେଇ ବାଣ ବି ଫୁଟେନା । ବିଶିଷ୍ଟ ଅତିଥିଙ୍କୁ ସମ୍ବର୍ଦ୍ଧନା ଜଣାଇବା ଉଦ୍ଦେଶ୍ୟରେ କଦବା କେମିତି ଗୋଟମା ଫୁଟାଯାଏ । ତେବେ ସେଥିପାଇଁ ଗୋଟାଏ ଆୟୋଜନ ହୁଅନ୍ତା । ବାଜା ବାଜନ୍ତା, ବ୍ୟାଣ୍ଡପାର୍ଟିର ମିଶ୍ରିତ ବା ଢୋଲିଆମାନଙ୍କ ଗୋଟିକିଆ ଲହର ତ କମ୍‌ସେକମ୍ ଶୁଣାଯାନ୍ତା । ତେବେ ଅତିଥିଙ୍କୁ ଡକାଇବାର ପ୍ରୟୋଜନ ଖୁବ୍ କମ୍ ପଡ଼େ ଏଇ ଇଲାକାରେ, ଲୋକମାନେ ଖୁବ୍ ଅଭ୍ୟସ୍ତ କଳିଙ୍ଗ, ବଡ଼ ସାଉଁଳି, କାବର, ବେରେଣି ହାତିଆ ପାହାଡ଼ଆଡୁ ଆସୁଥିବା ଏଇ ଶବ୍ଦ ସହ । ନିର୍ଜନ ପ୍ରହରରେ ଜିଲାଟିନ ଦେଇ ପାହାଡ଼ ଫଟାଇବା କମ୍ ବିପଦସଙ୍କୁଳ ! ଅଳ୍ପଲୋକ ଥିବେ, ପୃଥିବୀ ଶାନ୍ତ ଥିବ, ପାହାଡ଼ ତୀଖରୁ ଶୀତଳ ପବନ ଦେହକୁ ଛୁଇଁ ଯାଉଥିବ । କମ୍ପ୍ରେସର ଦ୍ୱାରା କରାଯାଇଥିବା ଗାତରେ ଜିଲାଟିନ୍ ଭରିଦେଇ ପାହାଡ଼ ତଳୁ ଆବଶ୍ୟକତା ଦୂରତାରେ ସ୍ୱିଚ୍ ଅନ୍ କଲେ ବିସ୍ଫୋରଣ ଘଟିବ ପାହାଡ଼ ଛାତିରେ । ପ୍ରଚଣ୍ଡ ଶବ୍ଦ ସହ ଧୂଆଁରେ ଭରିଯିବ ବାୟୁମଣ୍ଡଳ । ଗଡେଇ ହୋଇ ପଡ଼ିବ ପଥର ଖଣ୍ଡମାନ । ପାଖଆଖ ଗାଁ ମଜୁରିଆମାନଙ୍କ ନିଦ ଭାଙ୍ଗିଯିବ । ଝିଙ୍କିଝାରି, ଦୁର୍ଗାପୁର, ତେନ୍ତୁଳିମୁଣ୍ଡି, କୁରାଡ଼ମଲ, କଦଳୀବସ୍ତ, ବାଘଟାଙ୍ଗୀ ଗାଆଁର ଆଦିବାସୀ ଓ ହରିଜନ ସାହି ଝିଅ ବୋହୂମାନେ ଚଞ୍ଚଳ ହୋଇଉଠିବେ । ବାପ ପୁଅ, ସ୍ୱାମୀ ବା ଭାଇମାନେ ହାମର ସଜାଡ଼ିବେ । ଝିଅମାନେ ଯିବେ ପଥର ଭଙ୍ଗା କ୍ରସରମାନଙ୍କରେ କାମ କରିବା ପାଇଁ । ଘରକାମ ଏବଂ ପଖାଳଖିଆ ଶେଷକରି ଅପେକ୍ଷା କରିବେ ଟ୍ରକ୍ ବା ଅଟୋକୁ । ସେମାନଙ୍କର ଦୈନନ୍ଦିନ ଅନ୍ନ ସଂସ୍ଥାନ ନିମନ୍ତେ କାମକୁ ଯିବାର ଆବଶ୍ୟକତା ରହିଛି । ତେବେ ପାହାଡ଼ ନିଲାମ ନେଇଥିବା ମାଲିକ, ଖଣ୍ଡିଏ ଖଣ୍ଡିଏ ଖଣି ଦୁଇ ତିନିବର୍ଷ ପାଇଁ ଲିଜ୍ ନେଇଥିବା ଠିକାଦାର, ବା କ୍ରସର ମାଲିକମାନଙ୍କର ଆବଶ୍ୟକତା ସେମାନଙ୍କ ଅପେକ୍ଷା ଅଧିକ । ତେଣୁ ସେମାନେ ଟ୍ରକ୍ ବା ଅଟୋରିକ୍ସାର ବ୍ୟବସ୍ଥା କରିଥାନ୍ତି- କୁଲି ମଜୁରିଆଙ୍କଠାରୁ ଠିକ୍ ସମୟରେ କାମ ଆଦାୟ କରିବା

ପାଇଁ । ନଚେତ୍ ଲାଭ କମିଯିବ । କ୍ଷତି ସହିବା ସେମାନଙ୍କ ପକ୍ଷେ କଷ୍ଟକର । ଆଦିବାସୀ ଓ ହରିଜନ ସାହିର ପିଲାଙ୍କଠାରୁ ବଡ଼ ପର୍ଯ୍ୟନ୍ତ ଭୋକ ଉପାସରେ ରହିବାରେ ତ ଅଭ୍ୟସ୍ତ । ତେଣୁ ଇଚ୍ଛାହେଲେ ସେମାନେ ଯିବେ, ନଚେତ୍ ଘରେ ଶୋଇବେ ବା ଯାହା ସ୍ୱଳ୍ପ ରୋଜଗାର ଥିବ ସେଥିରେ ଜୁଆଖେଳିବେ । ସ୍ୱୟଂଚାଳିତ ଦୁଇଚକିଆ ଯାନରେ ଆସି ପହଞ୍ଚିଯିବେ ମାଲିକମାନେ । ଆଗତୁରା ପଇସା ଦେବେ । କେବେ କେମିତି ଅତି ନରମ ସ୍ୱରରେ ଭଲମନ୍ଦ ବୁଝିବେ, କାମରେ ଯୋଗଦେବା ପାଇଁ ପ୍ରତିଶ୍ରୁତି ଆଦାୟ କରିବେ ।

ପାହାଡ଼ ଭାଙ୍ଗି ଗ୍ରାନାଇଟ୍ ସଂଗ୍ରହ ଅଭିଯାନ ଆରମ୍ଭ ହେବା ବହୁ ପୂର୍ବରୁ ଲୋଭୀ ମଣିଷର କ୍ଷୁଧା ତ ଅଗ୍ନିଭଳି ଅନିର୍ବାପିତ ରହି ଆସିଛି । ପ୍ରଭୁ ଶ୍ରୀ ଜଗନ୍ନାଥ ବା ସରକାରଙ୍କ ରାଜସ୍ୱ ବିଭାଗର କୋଷାଗାରର ଶ୍ରୀବୃଦ୍ଧି ଘଟାଇବା ପାଇଁ କେତେ ରାଇଜରୁ ଆସିଛନ୍ତି ଖଣି ଠିକାଦାରମାନେ । ପ୍ରତିଯୋଗିତା ପ୍ରବଳରୁ ପ୍ରବଳତର ହୋଇଛି । ଲିଜ୍ ନେବା ପାଇଁ ବିଭିନ୍ନ କୌଶଳ ଅବଲମ୍ୱନ କରାଯାଇଛି । ନୂଆ ଠିକାଦାର ଗୋଷ୍ଠୀ ସୃଷ୍ଟି ହୋଇଛନ୍ତି । ଗୋଷ୍ଠୀ ଅଦଳବଦଳ, ସମନ୍ୱୟ ଘଟିଛି, ନୂଆ ନୂଆ ପଥରଭଙ୍ଗା କ୍ରସରମାନ ବସିଛି । ତା' ସାଙ୍ଗେ ତାଳଦେଇ ଆବଶ୍ୟକ ହୋଇଛନ୍ତି ଶ୍ରମିକମାନେ । ଆସିଛନ୍ତି ସେମାନେ ମୟୂରଭଞ୍ଜର ଉଦଳା, ବାଙ୍ଗିରିପୋଷିରୁ, କେନ୍ଦୁଝରର ଆନନ୍ଦପୁର ବା ଚମ୍ପୁଆରୁ, ଗଞ୍ଜାମର ଖଲ୍ଲିକୋଟ୍, ଧରାକୋଟ୍ ବା ଛତ୍ରପୁରରୁ । ଗଢ଼ିଉଠିଛି ନୂତନ ବସ୍ତି, ଟିଣ ଛପର ଘରମାନ ପାହାଡ଼ ତଳିରେ- ଘଟିଛି ଭାଷା ଓ ସଂସ୍କୃତିର ସମନ୍ୱୟ ।

ସେମିତି ଏକ ସମନ୍ୱୟର ସାକ୍ଷୀ ଗୋପୀନାଥ ଶତ୍ରୁଶଲ୍ୟ ବନାମ ଗୋପୀ ।

ଗୋପୀ ନିଜକୁ ପାଇକମାନଙ୍କ ବଂଶଧର ବୋଲି ଦାବି କରୁଥିବା ବେଳେ ଖୋର୍ଦ୍ଧା ପାଇକ ବିଦ୍ରୋହର ମୂଳପୀଠ ତାପଙ୍ଗଗଡ଼, ନରଣଗଡ଼, ଛତରମା ଗଡ଼, କାଞ୍ଚିଆଗଡ଼, ଖୋର୍ଦ୍ଧାଗଡ଼ ଇତ୍ୟାଦି ପାଇକ ଗାଆଁରେ କେହି ଗୋପୀ ସଙ୍ଗେ କଥାବାର୍ତ୍ତା କରିବାର ବା ଜାଣିଥିବାର ସ୍ୱୀକାର କରନ୍ତି ନାହିଁ । ଗୋପୀ ବି କେବେ ଏଇ ଗାଆଁମାନଙ୍କୁ ଯାଏନି । ତା'ର ଚଳାଚଳର ସୀମା କଳିଙ୍ଗ ପାହାଡ଼ ଗଢ଼ି ଉଠିଥିବା ବସ୍ତିଠାରୁ ଜାତୀୟ ରାଜପଥର ଓ.ସି.ସି. ଛକ । କେବେ କେମିତି ଟାଙ୍ଗୀ ଚାନ୍ଦପୁର ବା ଖୋର୍ଦ୍ଧା ଛକରେ ମିଳୁଥିବା ବିଡ଼ି, ଲେଙ୍କା ଦୋକାନର ଇଡ଼୍‌ଲି, ପାନଶାଳାର ଏଠିକା ସଂସ୍କରଣ ବା ଝୁମ୍ପୁଡ଼ିର ଦେଶୀମଦ ହିଁ ତା'ର ଆକର୍ଷଣ । ବସ୍ତିରେ ଏସବୁ ଜିନିଷ ଛଡ଼ା ନିତ୍ୟ ବ୍ୟବହାର୍ଯ୍ୟ ଆହୁରି ଅନେକ ଜନିଷ ମିଳେ; ବିଶେଷକରି ରମ୍, ହ୍ୱିସ୍କି, ବିୟର ସାଙ୍ଗକୁ କଷା ମାଂସ - ଟ୍ରକ୍ ଧରି ପଥର ନେବାକୁ ଆସୁଥିବା ଟ୍ରକ୍ ଚାଳକ, ସେମାନଙ୍କ ସାହାଯ୍ୟକାରୀ ମାଲିକ, ହାମର ପିଟି ପିଟି ହାଲିଆ ହୋଇ ପଡୁଥିବା ମଜୁରିଆ, କାମ ତଦାରଖ କରୁଥିବା

ପର୍ଯ୍ୟବେକ୍ଷକମାନଙ୍କର ତତ୍କାଳ ଆବଶ୍ୟକତା ପୂରଣ ନିମନ୍ତେ । ଗୋପୀନାଥ କିନ୍ତୁ ସେଠୁ କିଛି ଜିନିଷ କିଣେନା । ଯେତେ ନିଦରେ ଶୋଇଥିଲେ ମଧ୍ୟ ନିଶ୍ଚୟ ରୁକ୍ମିଣୀ ଯିବା ପୂର୍ବରୁ ଉଠିବ । ହାଇମାରି ପିଣ୍ଡାରେ ବସିବ । ଘର ଭିତରର ବାସନ ସଜଡ଼ା ସଜଡ଼ି । ବାରିଆଡ଼ରେ ପାଣି ଚବଚବ ଶବ୍ଦ । ଗୋଡ଼ କଚଡ଼ା ରାଗ ତମତମ ଚିତ୍କାର, ପଡ଼ୋଶୀ ପିଲାମାନଙ୍କର ଖେଳ । ମାଛ ବା ଶୁଖୁଆବାଲାର ଡାକ । ପାହାଡ଼ ଫଟାର ଶବ୍ଦ, ଟ୍ରକ୍‌ର ଧୂଳି, କୌଣସି ଆଡ଼କୁ ନିଘା ନଥିବ ବା ପାଟିରୁ ପଦୁଟିଏ ଶବ୍ଦ ବାହାରିବନି । ରୁକ୍ମିଣୀ ନାମ୍ନୀ ଯେଉଁ କାଳି ମଧ୍ୟବୟସ୍କା ସ୍ତ୍ରୀ ଲୋକଟି ମୁଣ୍ଡରେ ଗାମୁଛା ଢାଙ୍କି ବାହାରିବ, ତା'ର ମୁହଁ ସତେଜ ଦେଖାଯାଉଥିବ । ସେ ଟଙ୍କା କେଇଟା ବି ହାତରେ ଦେଇ ପଖାଳ, ଆଳୁ ସିଝା ବା ସେଇମିତି ଅନ୍ୟକିଛି ରଖା ହୋଇଥିବା କହିବ ଓ ବାହାରିଯିବ ।

ଗୋପୀ ଉଠିବ ପଇସାକୁ ଅଣ୍ଟାରେ ଖୋସି । ଦାନ୍ତ ଘଷିବାର ଆବଶ୍ୟକତା ପଡ଼ିବ କେବେ କେମିତି । ପୁରୁଣା ଦିନର ମଇଳା ସାର୍ଟଟାକୁ ଗଳାଇ ବା ଖାଲି ଦେହରେ ବାହାରି ପଡ଼ିବ । କଞ୍ଚିଟାକୁ ଅଣ୍ଟାରେ ଖୋସି ଆଗେଇବ ଖାଲ ଢିପ ରାସ୍ତାରେ । ପଥର ବୋଝେଇ ଟ୍ରକ୍ ହଲି ହଲି ଚାଲିଥିବ ଗୋପୀ ପାଖଦେଇ । ଗୋଡ଼ ବୁଡ଼ିଯାଉଥିବ ଖରାଦିନ ରାସ୍ତାରେ । ଧୂଳି ଅଜାଡ଼ି ହୋଇପଡୁଥିବ ଶରୀର ସାରା । ଟ୍ରକ୍‌ମାନଙ୍କ ସଙ୍ଗେ ପ୍ରତିଯୋଗିତା କରି ଦୋହଲି ଦୋହଲି ଛକରେ ପହଞ୍ଚିବ ଗୋପୀ ।

ଦୁଇ ଚାରିଟା ତେନ୍ତୁଳି ଗଛ । ବରଗଛ ଗୋଟାଏ । ବରକତ୍‌ର ସାଇକେଲ୍ ଦୋକାନ । ସିନ୍ଦୂର ଶିରି ମାରି ଗୋଟେ ପିତଳ ଢାଳରେ ହାତ ବୁଡ଼ାଉଥିବା ଟୋକାର ପାନ ଦୋକାନ । ଗୁଲୁଗୁଲା, ଇଡ଼୍‌ଲି, ଅଟାମିଶା ବରା ବା କେବେ କେମିତି ସିଙ୍ଗଡ଼ା ମିଳୁଥିବା ଲେଙ୍କାର ରେଷ୍ଟୁରାଣ୍ଟ, ସାମ୍ନାରେ ପୁରୁଷ ପ୍ରମାଣ ଗଦା ହୋଇଥିବା ଟାୟାର ସବୁକୁ ବେଳେ ବେଳେ କାମରେ ଲଗାଉଥିବା କେରଳୀ ଜନ୍‌ର ରିସୋଲିଙ୍ଗ୍ ଦୋକାନ । ସର୍ବୋପରି, ତେନ୍ତୁଳିଗଛ ତଳେ ସିରାଜ ମାଂସକଟା କ୍ୟାବିନ୍‌ର ଓ ତାକୁ ଘେରି ଆତଯାତ ହେଉଥିବା ମାଂସାଶୀ ପ୍ରାଣୀମାନଙ୍କ ସମାହାରର ଛକ ।

ଧୂଳିପୂର୍ଣ୍ଣ ରାସ୍ତା ପରେ କେରଳୀ ଦୋକାନ ଅତିକ୍ରମ କରି ଗୁଲୁଗୁଲା ଦୋକାନ ସାମ୍ନାରେ ପଡ଼ିଥିବା ବେଞ୍ଚରେ ବସିବ ଗୋପୀ । ମାଲ୍‌ବୋଝେଇ ଟ୍ରକ୍‌ମାନ ଅତିକ୍ରମ କରି ଚାଲିଥିବ । କଲିକତାରୁ ଚେନ୍ନାଇ ବା ଚେନ୍ନାଇରୁ କଲିକତା ବସ୍, କ୍ଷୁଦ୍ର ଲରି, ଅଟୋରିକ୍ସା ସବୁକୁ ଦୟାର୍ଦ୍ର ଚାହାଣୀରେ ଦେଖୁ ଦେଖୁ ଚାହାଟିଏ ପାଇଁ ବରାଦ କରିବ । ଛିଣ୍ଡାସାର୍ଟ ପିନ୍ଧା, ବା କେତେବେଳେ ଖାଲିଦେହ ଥିବା ଓ ସଦାବେଳେ ଜୀବସାର ଅଭାବ ଭୋଗି ପାଟିକୋଣ ଧଳାପଡୁଥିବା ରୋଗୀଣା ପିଲାଟି ବିରସ ବଦନରେ ତା' ଗ୍ଲାସ୍‌ଟି ଧରାଇ ଦେଇଯିବ । ପିଲାଟିକୁ ନିଶ୍ଚୟ ବହୁତ କାମ ପଡୁଥିବ । ଟେବୁଲ୍ ସଫା

କରିବା, କପ୍‌ପ୍ଲେଟ୍ ଧୋଇବା, ସର୍ବୋପରି ବେଳେ ବେଳେ ଚା' ଦେବା କାମରେ ଲଗାଉଥିବା ମାଲିକକୁ କ୍ରୁର ଦୃଷ୍ଟିରେ ଚାହିଁବ ଓ କିଛି ଗୋଟାଏ କହିଦେବାକୁ ମନ କରିବ । ଗୋପୀ, 'ଶଃ...' ସ୍ୱଗତୋକ୍ତି କରୁକରୁ ଚୁପ୍ ରହିଯିବ, କାରଣ ଲେଙ୍କା ତାକୁ ବେଳେ ବେଳେ ବାକି ଦିଏ ବା ଗଞ୍ଜେଇ ଟାଣିବା ବେଳେ ପୁଳାଏ ଦୁଇପୁଳା ଟାଣିବାର ସୁଯୋଗ ଦିଏ । ଚାହାକୁ ଢୋକେ ଢୋକେ ପିଇବ ଓ ଝାଟି ଘେରିଦିଆ ରେଷ୍ଟୁରାଣ୍ଟର ଅଭ୍ୟନ୍ତରକୁ ଚାହିଁବ ଗୋପୀ । ତା' ଆଖିରେ ଭାସିଯିବ ଅଳନ୍ଧୁଭର୍ତ୍ତି କଳା କିଟିକିଟି ନଡ଼ାର ଛାତ । ଭଙ୍ଗା କାଚ ବିଶିଷ୍ଟ ସୋ' କେଶ୍‌ରେ ସଜଡ଼ା ମିଠାଥାଳି, ବଳକା ଖାଦ୍ୟ ଓ ପାଣି ମିଶି ଏକ ବିଚିକିଟିଆ ପରସ୍ତ ଧାରଣ କରିଥିବା ଟେବୁଲ୍ ଓ ବେଞ୍ଚ୍ । ଲମ୍ବା ଟିଣ ଟ୍ରେରେ ଗଦା ଯାଇଥିବା ଗୁଲୁଗୁଲା, ପକଡ଼ି ବା ବରା, ଗୋଟେ ଆଲୁମିନିୟମ୍ ଥାଳିରେ ଘୋଡ଼ା ଯାଇଥିବା ଇଡ଼୍‌ଲି, କୋଇଲା ଆଞ୍ଚର ଚୁଲି, ତା' ନିକଟରେ ଡାଲିଚଟୁ ଏପଟ ସେପଟ କରୁଥିବା କାରିଗର, ସର୍ବୋପରି ପଇସା ବାକ୍ସ ନିକଟରେ ବସୁଥିବା ଲେଙ୍କା ।

ଲେଙ୍କାର ଚେହେରା ଆକର୍ଷଣଶୂନ୍ୟ ପୃଥୁଳକାୟ, ଚନ୍ଦାମୁଣ୍ଡରେ ଆବୁ, ଆଖି ଦୁଇଟା ଢିମା ଢିମା, ମଇଳା ଗଞ୍ଜି ସାଙ୍ଗକୁ ଧୋତି । ବାମ ହାତଟା ସାମାନ୍ୟ ଫୁଲା । ଧୋତି ଉପରେ ସ୍ପଷ୍ଟ ବାରିହୋଇ ପଡୁଥିବା ହାଇଡ୍ରୋସିଲ୍ । ସଦାବେଳେ ଅପରେସନ ହୋଇଯିବାକୁ କହେ, ମାତ୍ର ଡର ବା କାମର ଚାପା ଯୋଗୁଁ ଡାକ୍ତରଖାନାକୁ ଜମା ଯାଏନି । ଚାଲିଲା ବେଳେ କଷ୍ଟ ଅନୁଭବ କରେ । ଛକରେ ଚଳପ୍ରଚଳ ହେଉଥିବା କେହି କେବେ ଥଟ୍ଟା ଟିପ୍ପଣୀ କଲେ ବିରକ୍ତ ହୁଏ । କିଛି କହିପାରେନା । ଚା'ପିଆ ଶେଷ ବେଳକୁ ମାଛବାଲା ଆସେ । କେବେ ଦରକାର ହୁଏ, କେବେ ହୁଏନା । ମାଛବାଲା ଚାଲିଯିବା ପରେ ଦୋକାନ୍‌ଟା ଶୂନ୍‌ଶାନ୍ ଲାଗେ । ଗ୍ରାହକ ଜଣେ ଦୁଇଜଣ ଆସିଲେ ବରା ବା ଇଡ଼୍‌ଲିର ବରାଦ ହୁଏ । ଭାବଶୂନ୍ୟ ଭାବରେ ବସିଥାନ୍ତି ଲେଙ୍କା ଓ ଗୋପୀ । ଏତିକିବେଳେ ଡାକି ପକାଏ ସିରାଜ ମାଂସ ନେବା ପାଇଁ । ଲେଙ୍କା ସାଙ୍ଗରେ ଗୋପୀ ବି ଯାଏ ।

ଅର୍ଦ୍ଧ ପୁରୁଷ କାଠଗଣ୍ଡିକୁ ଲାଗି ଠିଆ ହୋଇଥାଏ ସିରାଜ । ତାକୁ ଘେରି ଆଖ ପାଖ ଗାଁ ଓ ଟ୍ରକ୍ ଚଳାଇ ଆସୁଥିବା ଗ୍ରାହକମାନେ ବରାଦ କରୁଥାନ୍ତି କେଉଁ ଅଂଶରୁ କେତେ ମାଂସ । ଚାପଡ଼ ଓ ଛୁରୀ ଚଳାଉ ଚଳାଉ ମାଂସର ତାରିଫ୍‌କରି ଚାଲିଥାଏ । ମଝିରେ ମଝିରେ ଛୁରୀ ଧାର କରେ । ମାଂସ ଓଜନ କରି କ୍ୟାବିନ୍‌ରେ ବସିଥିବା ଇକ୍‌ବାଲ୍ ହାତକୁ ବଢ଼ାଇଦିଏ । ଇକ୍‌ବାଲ୍ ପଇସା ରଖେ । ସିରାଜ ଇକ୍‌ବାଲ୍ ଅଂଶୀଦାର । ଦୁହେଁ ପାନ ଚୋବାଇ ଦାନ୍ତ ଲାଲ୍ କରିଥାନ୍ତି । ରାସ୍ତା ଉପରକୁ ପିକ ପକାନ୍ତି । କ୍ୟାବିନ୍ ପଛକୁ କୋର । ଛୋଟ ଛୋଟ ବୁଦାରେ ଛେଳି ସବୁ ବନ୍ଧା

ହୋଇଥାନ୍ତି । ଗୋଟାଏ ପରେ ଗୋଟାଏ କଟା ଚାଲିଥାଏ ଗ୍ରାହକ ଥିବା ପର୍ଯ୍ୟନ୍ତ । ଚିହ୍ନା ହିନ୍ଦୁ ଗ୍ରାହକମାନଙ୍କୁ ଭାଇ ମଉସା ଡାକି ସନ୍ତୁଷ୍ଟ କରିବାକୁ ଚେଷ୍ଟାକରେ । ଗଲାଥର ଦେଇଥିବା ମାଂସ କିପରି ଲାଗିଲା ବୋଲି ପଚାରେ । ପାହାଡ଼ ତଳ ଗାଆଁର ଓଡ଼ିଆମାନଙ୍କୁ ଦେଖିଲେ ଆଗ ଆଗ ବିଦା କରିଦିଏ । ସେମାନେ କେମିତି ଅବୁଝା ପ୍ରକୃତିର । ସାମାନ୍ୟ ତ୍ରୁଟି ସହ୍ୟ କରିବାକୁ ଅପ୍ରସ୍ତୁତ । ଗୋଟିଏ ଗୋଷ୍ଠୀ ହୋଇ ବିଭିନ୍ନ ଅସ୍ତ୍ରଶସ୍ତ୍ର ଧରି ବାହାରି ଆସିବେ, ଆଉ ଆକ୍ରମଣ କରିବେ । ପାହାଡ଼ ଯୋଗୁଁ ସେମାନଙ୍କୁ ଆର୍ଥିକ ସ୍ୱଚ୍ଛଳତା ମିଳିଛି; ସ୍ୱେଚ୍ଛାଚାରିତା ବଢ଼ିଛି । ପାହାଡ଼ ଓ ରାସ୍ତାଧାର ଜମିର ମୂଲ୍ୟ, ସିରାଜ ଓ ଲେଙ୍କାର ବ୍ୟବସାୟ, ଜନ୍‌ର ଟାୟାର ଗଦା, ଓ.ସି.ସି. ଛକର ଗହଳି, ରାସ୍ତା ଦୁଇକଡ଼ର କ୍ରସର ସଂଖ୍ୟା ବଢୁଛି ଆସ୍ତେ ଆସ୍ତେ । ଦ୍ରୁତଭାବରେ ବଢ଼ି ଚାଲିଛି କିନ୍ତୁ ପଥର ଗୁଣ୍ଡର ଗଦା, ଧୂଳି ସୃଷ୍ଟ ପ୍ରଦୂଷଣ, ଟ୍ରକ୍‌ମାନଙ୍କ ସଂଖ୍ୟା, ବ୍ୟଭିଚାର, ଯୌନରୋଗୀ, ଶ୍ୱାସରୋଗୀ, ଶତ୍ରୁତା, ଖଣ୍ଡା ବନ୍ଧୁକର ବ୍ୟବହାର, ଠକାମୀ, ପାହାଡ଼ର ବିବର୍ଣ୍ଣତା- ସର୍ବୋପରି ଗୋପୀନାଥ ପରି ଲୋକମାନଙ୍କର ମାନସିକ ତଥା ଶାରୀରିକ ଅସୁସ୍ଥତା ।

ସିରାଜଠାରୁ ମାଂସଧରି ଲେଙ୍କା ଆସିବା ସମୟରେ ଅନୁଗତ ଭୃତ୍ୟ ଭଳି ପାଦଚିହ୍ନ ଉପରେ ପାଦରଖି ଫେରି ଆସିବ ଗୋପୀ - ତା'ର ସେଇ ପୂର୍ବୋକ୍ତ ବେଞ୍ଚ୍ ଉପରକୁ । ମୁହଁରେ ବେପରୁଆ ମୁଦ୍ରା ଆଙ୍କି ଡାକ ପକାଇବ, "ଆରେ ନାରଣ ଭୋକ ହେଲାରେ ।" ନାରଣ ପରଶିଦେବ ଆଲୁମିନିୟମ୍ ଥାଳିରେ ଇଡ଼୍‌ଲି ଓ ଘୁଗୁନି । ରେଜା କୁଲିମାନଙ୍କ ଭିଡ଼ ବଢ଼ିବ । ନାରଣକୁ ଫୁର୍‌ସତ୍ ହେବନି ଗୁଲୁଗୁଲା ଓ ବରା ପରଶିବାରେ । ନଅଟା, ସାଢ଼େ ନଅଟା ବେଳକୁ ଅନେକଟା ଶେଷ ହୋଇଯିବ । ମସଲା ବାଟିବାରେ ଲାଗିଯିବ ନାରଣ । କୋଇଲା ଆଞ୍ଚରେ ଡାଲି ସିଝିବ । ମିସ୍ତ୍ରୀ ମାଛ କାଟିବ ବା ମାଂସକୁ ଟିକି ଟିକି ଖଣ୍ଡ କରିବ । ସୂର୍ଯ୍ୟ ଉପରକୁ ଉଠିବେ । ରେଜାମାନେ ଫେରିଯିବେ କ୍ରସର ନିକଟକୁ । କିଛି ଜୁଆନ ଟୋକା ଟିକିଏ ପଛକୁ ବା ଆଗକୁ ଚାଲିଥିବେ ଖୁବ୍ ବଶମ୍ବଦ ଭାବେ ଝିଅମାନଙ୍କର ଦୃଷ୍ଟି ଆକର୍ଷଣ ଉଦ୍ଦେଶ୍ୟରେ । କିଛି ଦିନ ମିଳାମିଶା ପରେ ଶ୍ରଦ୍ଧାଳୁ ସହାବସ୍ଥାନ ପାଇଁ ନିଷ୍ପତ୍ତି ନେବେ ଓ ଘରଛାଡ଼ି ପଳାଇବେ । କେହି ସେମାନଙ୍କୁ ଖୋଜିବାର ଦୃଷ୍ଟାନ୍ତ ନାହିଁ । ସେମାନଙ୍କର ଦେଖା ମିଳିବ କ୍ରସର ସନ୍ନିକଟ ବା ତା' ଭଳି ପାହାଡ଼ ତଳ ଝୁମ୍ପୁଡ଼ିରେ ।

ପାହାଡ଼ ତଳ ବସ୍ତିରେ ରୁକ୍ମିଣୀ ସହ ରହିବା କେତେଦିନ ହେଲା, ଗୋପୀର ମନେନାହିଁ । ତେବେ କୋଡ଼ିଏ ବର୍ଷରୁ ବେଶି ହେବ ନିଶ୍ଚୟ । ଗ୍ରାନାଇଟ୍ ପଥର ରଙ୍ଗ ପରି ନିଦା, ଦୃପ୍ତ ମନେହେଉଥିବା ରୁକ୍ମିଣୀକୁ ପ୍ରଥମେ ଦେଖିବା ପରେ ଗୋପୀ ମନରେ ଏକ ଆସୁରିକ କାମନା ଚେଇଁ ଉଠିଲା । ଅନେକ ଅସାମାଜିକ କାମରେ ଅଭିଯୁକ୍ତ,

ପୁଲିସ୍‌କୁ ଡରି ପାହାଡ଼ରେ ଲୁଚି ବୁଲୁଥିବା, ସ୍ତ୍ରୀ ଦ୍ୱାରା ପରିତ୍ୟକ୍ତ ଗୋପୀର ଜେଲ୍‌କୁ ଯିବା ଅଭ୍ୟାସରେ ପରିଣତ ହୋଇଯାଇଥିଲା । ଧର୍ଷଣ ଭଳି ଆଉ ଏକ ଅପରାଧ କଲେ ଅଧିକ କ'ଣ କ୍ଷତି ହେବ ? ରୁକ୍ମିଣୀର ବେପରୁଆ ଚାଲି ତାକୁ ଉତ୍‌କ୍ଷିପ୍ତ କରୁଥିଲା । ତେଣୁ ସନ୍ଧ୍ୟାରେ ଝାପ୍‌ସା ଅନ୍ଧାରରେ ଆକ୍ରମଣ କଲା ଗୋପୀ ଓ ଜଙ୍ଗଲ ମଧ୍ୟକୁ ଟାଣିନେଇ ଧର୍ଷଣ କରିବାର ପ୍ରାକ୍ ପର୍ଯ୍ୟାୟରେ କ୍ଷତ ବିକ୍ଷତ କରିବାର ଚେଷ୍ଟାକଲା । ଝିଅଟା ଜମା ପ୍ରତିବାଦ କଲାନି । ଅଧିକନ୍ତୁ ସହଯୋଗ କଲାଭଳି ମନେହେଲା । ଶତ୍ରୁଠାରୁ ପରାଜିତ ହେବା ଗ୍ଲାନିରେ ଝିଅଟାକୁ ସେଇଠି ପକାଇଦେଇ ପଳାଇଗଲା ସିଏ ।

ସକାଳ, ସନ୍ଧ୍ୟା- ଦିନେ, ଦୁଇଦିନ, ସପ୍ତାହ, ମାସ- ଅପେକ୍ଷା କଲା ଗୋପୀ; କିଛି ପ୍ରତିବାଦର ଗୁଞ୍ଜନ ଶୁଣାଗଲାନି । ରୁକ୍ମିଣୀ ପୂର୍ବଭଳି କ୍ରସରକୁ ଯାଉଥିଲା, ଗୋପୀକୁ ଦେଖି କିଛି କହୁନଥିଲା, ବରଂ ବାଟଭାଙ୍ଗି ଚାଲିଯାଉଥିଲା । ଝୁଡ଼ିରେ ପଥରଖଣ୍ଡ ବୋହୁଥିଲା । ଧୂଳିରେ ବୁଡ଼ିଯାଇ କୋଲା ଗାଡ଼ିଆରେ ଗାଧୋଉଥିଲା । ଟୋକାମାନଙ୍କର ଟାପରାକୁ ନଶୁଣିବା ପରି ଅଭିନୟ କରୁଥିଲା । ନା..., ଗୋପୀ ନିକଟରେ ଏସବୁ ଅସହ୍ୟ । ପୁଣିଥରେ ଚେଷ୍ଟା କରିବ । ଝିଅଟାକୁ ଧର୍ଷଣ କରିବ । ପୁଲିସ୍ ଦ୍ୱାରା ଧରାହୋଇ ଜେଲ୍‌ଯିବ । ହଉ ଜେଲ୍ ।

ଅପରାହ୍ନରେ କାମରୁ ଫେରୁଥିବା ବେଳେ ଦେଖାହେଲା ଗୋପୀର । ଖୁବ୍ ଅତର୍କିତ ଭାବେ ରୁକ୍ମିଣୀର ହାତକୁ ଧରି ପକାଇ ବୁଦୁବୁଦିଆ ଜଙ୍ଗଲ ମଧ୍ୟକୁ ଟାଣିବାର ପ୍ରୟାସ କଲାବେଳେ ହାତକୁ ଛାଟିଦେଇ କହିଲା ରୁକ୍ମିଣୀ, "ନା ନା" ! ଡରିଗଲା ଗୋପୀ । ପରମୁହୂର୍ତ୍ତରେ ସହଜ ହୋଇଗଲା ରୁକ୍ମିଣୀ । "ଘରକୁ ଆସ"- ନିମନ୍ତ୍ରଣ ଜଣାଇଲା ।

ଆଜ୍ଞାବହ ଭଳି ଅନୁସରଣ କଲା ଗୋପୀ ।

ପାହାଡ଼ ତଳୁ ଜାତୀୟ ରାଜପଥ ପର୍ଯ୍ୟନ୍ତ ଲମ୍ବି ଯାଇଥିବା ଝୁମ୍ପୁଡିଗୁଡ଼ାକ ମଧ୍ୟରୁ ଗୋଟାକରେ ରହୁଥିଲା ରୁକ୍ମିଣୀ ତା'ସାନ ଭଉଣୀ ସହ । ଗୋପୀ ସେମାନଙ୍କ ସହ ଯୋଗଦେଲା । ସେ ହାମର ଧରିବା ଅଭ୍ୟାସ କରିନି । ପାହାଡ଼ ତଳର ବାସିନ୍ଦାମାନଙ୍କୁ କ୍ଷେତରେ କାମ କରିବା ପାଇଁ କେହି ଡାକେନି ।

ପାହାଡ଼ ତଳେ ଅନେକ କାମ । କମ୍ପ୍ରେସର ଚଳାଇବା, ମୂଲିଆ ମୂଲିଆଣୀଙ୍କ କାମ ତଦାରଖ କରିବା, ପାହାଡ଼ ଲିଜ୍ ନେଇଥିବା ମାଲିକମାନଙ୍କର ପାଳିତ ଗୁଣ୍ଡା ହୋଇ ସମୟ ଅସମୟରେ ପ୍ରତିପକ୍ଷ ସହ ହାଣଗୋଳରେ ଲିପ୍ତ ହେବା, ଟ୍ରକ୍‌ରେ ପଥର ଖଣ୍ଡମାନ ଭରିବା ଓ ଖଲାସ କରିବା, ପଥର କିଣାବିକା ପାଇଁ ମଧ୍ୟସ୍ଥ ସାଜିବା,

ଦୋକାନ ଖୋଲି ଚଢ଼ା ଦାମ୍‌ରେ ବିକ୍ରି କରିବା, କାମ କରିଦେବା ପାଇଁ ଠିକା ନେବା । ଗୋପୀ କୌଣସି ଗୋଟିଏ କାମକୁ ଆପଣେଇ ପାରିଲାନି । ଯେଉଁ ଅସାମାଜିକ କାର୍ଯ୍ୟରେ ଲିପ୍ତ ହେବା ଯୋଗୁଁ ସ୍ତ୍ରୀ ପିଲାମାନେ ବିପର୍ଯ୍ୟସ୍ତ, ସେଇ କାମଠାରୁ ଦୂରେଇ ଯାଇଥିଲା । କୌଣସି କାମ ନଥିବା ଯୋଗୁଁ ତାକୁ ବିରକ୍ତ ଲାଗୁଥିଲା । ରୁକ୍ମିଣୀ ଓ ତା' ଭଉଣୀ ଚାଲିଯିବା ପରେ ସେ ଏକେଲା ସର୍ପିଳ ତରଙ୍ଗାୟିତ ପାହାଡ଼ ଆଡ଼କୁ ଚାହୁଁଥିଲା । ସ୍ୱାମୀ ନଥାଇ କେତେ ଶିଶୁ ଜନ୍ମ ହେଲେଣି ତା'ର ହିସାବ କରୁଥିଲା । ଗଣ୍ଡଗୋଳ ବା ପାହାଡ଼ ଭୁଶୁଡ଼ା ଦ୍ୱାରା ମୃତାହତଙ୍କ ଯୋଗୁଁ ଆତଙ୍କିତ ହୋଇପଡୁଥିଲା । ଖଣି ସୁରକ୍ଷା ଆଇନ୍ ପାଳନର ଅଭାବ ଅନୁଭବ କରୁଥିଲା । ଜାରଜ ସନ୍ତାନ ଉତ୍ପାଦନ କରିବାରେ କୌଣସି ପ୍ରତିବନ୍ଧକ ନଥିବାରୁ ସେମାନଙ୍କ ସଂଖ୍ୟା ବଢ଼ିଚାଲିଥିଲା ଓ ସେମାନେ ଅନ୍ୟ ଜୀବଜନ୍ତୁଙ୍କ ଭଳି ମାଆ ଚାରିପଟେ ଘୂରି ବୁଲୁଥିଲେ । ଅଥଚ ରୁକ୍ମିଣୀ ଗୋଟେ ପୁଅ ଜନ୍ମକଲା ଗୋପୀ ଥିବା ସମୟରେ ।

ଇତି ମଧ୍ୟରେ ଗୋପୀର ବୟସ ବଢ଼ି ଯାଉଥିଲା । ସେ ରୁକ୍ମିଣୀ ବା ତା' ପୁଅକୁ କିଛି କହୁନଥିଲା । ଶୂନ୍ୟ ଦୃଷ୍ଟିରେ କଳିଙ୍ଗ, ବଡ଼ ସାଉଁଳି ପାହାଡ଼ ଆଡ଼କୁ ଚାହେଁ । ଥାକ ଥାକ ହୋଇ କଟାହେଉଥିବା ପାହାଡ଼, ବ୍ୟସ୍ତ ମଣିଷ, ଶବ୍ଦାୟିତ କମ୍ପ୍ରେସର, ଆକାଶକୁ ପଥର ଗୁଣ୍ଡରେ ଆଚ୍ଛାଦିତ କରୁଥିବା କ୍ରସର ତାକୁ ବିମୋହିତ କରେନା । ବଜ୍ରପାତ ସମୟରେ ଡିନାମାଇଟ୍‌ର ଅସତର୍କ ବିସ୍ଫୋରଣ, ତଦ୍‌ଜନିତ ପାହାଡ଼ ଧସିବା ଯୋଗୁଁ ଦୁଇଜଣଙ୍କର ମୃତ୍ୟୁ, କେତେକଙ୍କର ଜେଲ୍‌ଯାତ୍ରା, କେତେକଙ୍କର ଆତ୍ମଗୋପନ କଥା ଗୋପୀ ଶୁଣୁଥିଲା । କ୍ରସର ଓ ପାହାଡ଼ ବ୍ୟବସାୟର ଟଙ୍କାରେ ଦୀନା ପଧାନ ପଞ୍ଚାୟତ ସମିତି ଚେୟାର୍‌ମ୍ୟାନ୍ ହୋଇ ଦୀନବନ୍ଧୁରେ ପରିଣତ ହେବା ପରେ ତା' ପୁଅମାନେ ସର୍ବହରା ହୋଇ ଯାଇଥିଲେ କିଛି ବର୍ଷ ପରେ ! ଭ୍ରମର ବଡ଼ଜେନା ଦୁଇ ଦୁଇଟା କ୍ରସର କରିଥିଲା । ରାଜ୍ୟ ଅର୍ଥ ଯୋଗାଣ ସଂସ୍ଥାରେ ତା'ର ଖୁବ୍ କାଟ୍‌ତି । ପାଣୁ ବଳିଆରସିଂହ ତାକୁ ମଦ ପିଆଇ ପିଆଇ ସବୁ ଅର୍ଥକୁ ନିଜର କରିନେଲା । ଶେଷରେ ଭ୍ରମର କ୍ରସର୍‌କୁ ନିଜେ କିଣି ଗାମୁଛା ପିନ୍ଧାଇ ଛାଡ଼ିଦେଲା ତାକୁ । ଶୁକ୍ରୁ ମୁଣ୍ଡାର ସ୍ତ୍ରୀକୁ ରଖିଛି ଅଶୋକ ମହାନ୍ତି । ଚିଲିକା କୂଳ ଆଡ଼କୁ ଆଉ କିଛି ସ୍ତ୍ରୀ ଲୋକ ଆସନ୍ତି ସନ୍ଧ୍ୟା ନଇଁଯିବା ପରେ । ଡ୍ରାଇଭରମାନେ ମଉଜ କରନ୍ତି । ଗରମି ରୋଗ ଭୋଗି ଡାକ୍ତର ପାଖରେ ଟଙ୍କା ଗଣନ୍ତି । ପାହାଡ଼ ତଳେ ଭେଜାଲ ଗଞ୍ଜେଇ, ମଦ, ଅଫିମ, ଭଲ ବିକ୍ରି ହୁଏ । ହାମର ପିଟି ଦିନକୁ ଶହେ ଦୁଇଶହ ରୋଜଗାର କରୁଥିବା ହରିଆ ନାୟକ – ତା' ସ୍ତ୍ରୀ ଚାଉଳ କିଲେ ଆଣିଦେବା ପାଇଁ କେତେ ନେହୁରା ହୁଏ । ହରିଆ ଟଙ୍କା ଦିଏ । ଘରେ ନଶୋଇ ଦାଣ୍ଡରେ ଗଡ଼େ ମଦ ନିଶାରେ । ହରି ଭୋଇ, ମଦନ

କାଣ୍ଡି, ଚକରା ବାରିକ, ବିପ୍ର ସେଠୀ, ବରୁଜ ଖାଁ, ଶଙ୍କର ବରାଳ, ତଅପୋଇ, ସାଇବାଣୀ, ହର୍ଷମତି ପରି ଅନେକେ ପାହାଡ଼ରେ କାମ କରୁଥିଲେ । ରୋଗଭୋଗି ଔଷଧ କିଣିବା ପାଇଁ ସେମାନଙ୍କ ନିକଟରେ ପଇସା ନଥିଲା । କାହାର ଯକ୍ଷ୍ମା, କାହାର ପାରାଲିସିସ୍, କାହାର ରକ୍ତ ଶୂନ୍ୟତା ବା ଝାଡ଼ାବାନ୍ତି । ଅକାଳରେ ଚାଲିଯାଇଛନ୍ତି ସେମାନେ – ଚିକିତ୍ସା ଅଭାବରେ । ଏସବୁ ଗୋପୀର ଆଖିଦେଖା କଥା ।

ଗୋପୀ ପାହାଡ଼ରେ କାମ କରିନି । ପାହାଡ଼ ତଳେ ରହିଛି ଯାହା । ଦୁର୍ବଳ ଲାଗୁଛି ଦେହ । ମଝିରେ ମଝିରେ ଜ୍ୱର ଆସୁଛି । କାଶ ହେଉଛି । ଭୋକ ବି ଲାଗୁନି । ରୁକ୍ମିଣୀର ସମୟ ନାହିଁ ଯତ୍ନ ନେବାକୁ । ତା'ର ବୟସ ବି ଖସି ଆସିଲାଣି । ଆଗରୁ ଜ୍ୱର ବା କାଶ ହେଲେ କେବେ ଡାକ୍ତରଖାନାକୁ ଯାଏ ବା କେବେ ଟୁଣୁକାଟୁଣୁକିରେ ଚଳାଇ ଦିଏ । ତେବେ ଅତ୍ୟଧିକ କାଶ ଯୋଗୁଁ ଖୋର୍ଦ୍ଧା ଚାନ୍ଦପୁର ଯାଇଥିଲା । ଡାକ୍ତରବାବୁ ଦୁଇଥର ଲେଖାଏଁ ଛଅମାସ ଯାଏ ଔଷଧ ଖାଇବାକୁ କହିଥିଲେ । ଚାରି ପାଞ୍ଚମାସ ଖାଇବା ପରେ ପଇସା ଅଭାବରୁ ଗଲାନି । ମାଗଣା ଔଷଧ ମିଳିଥାନ୍ତା, କିନ୍ତୁ ବିଶ୍ୱାସ ନ ଥିଲା ଗୋପୀର ।

ଏବେ କ'ଣ ସେଇ ରୋଗ ପୁଣି ଚେଇଁଲାକି ! ଛକରୁ ଫେରି ଏତେ ହାଲିଆ ହୋଇପଡ଼ିଲା ଯେ ତା'ର ଆଉ ଖାଇବା କଥା ମନେପଡ଼ିଲାନି । ପଟି ଉପରେ ଗଡ଼ି ପଡ଼ିଲା । ପରେ ଉଠି ଖାଇବ ବୋଲି ଭାବିଥିଲା । ରୁକ୍ମିଣୀ ଫେରିବା କଥା ଉପରଓଳା ତିନିଟା ବେଳକୁ । ସେତେବେଳ ସୁଦ୍ଧା ଗୋପୀ ଉଠି ନଥିଲା । ତା'ର ନିଃଶ୍ୱାସ ଚାଲିଥିଲା । ଛାତି ଧକଧକ ହେଉଥିଲା । ପାଟିରୁ କିନ୍ତୁ କୌଣସି କଥା ବାହାରୁ ନଥିଲା ବା ଯେତେ ଡାକିଲେ ଶୁଣୁ ନଥିଲା । ବ୍ୟସ୍ତ ହୋଇ ପଡ଼ିଲା ରୁକ୍ମିଣୀ । ପୁଅ ନାହିଁ । ଆଉ ଗୋଟେ ଝୁମ୍ପୁଡ଼ିରେ ରହୁଥିବା ସାନ ଭଉଣୀକୁ ଡାକିଲା । ସାପ୍ତାହିକ ମଜୁରୀ ମିଳିନି । ଡାକ୍ତରଖାନାକୁ ନେବେ କେମିତି ?

କେତେ ଖୋସାମଦ ପରେ ସହୃଦୟ ଟ୍ରକ୍ ଡ୍ରାଇଭରଟି ରାଜି ହେଲା ।

ସହରରେ ପହଞ୍ଚିବା ବେଳକୁ ଦିନ ଚାରି ।

ଡାକ୍ତରବାବୁ ପରୀକ୍ଷା କରି ସାରିବା ପରେ ଜଣାଇଲେ – ବହୁତ ଡେରିରେ ତ ଆଣିଛ । ସେ ଆଉ କିଛି କହିବାକୁ ଚାହୁଁ ନଥିଲେ । ଅସହାୟା ରୁକ୍ମିଣୀର କିଛି ଶୁଣିବାକୁ ଧୈର୍ଯ୍ୟ ନଥିଲା । ବ୍ୟବସ୍ଥାପତ୍ରଟିକୁ ଧରି ସେ ଏପଟ ସେପଟ ହେଉଥିଲା ଓ ପୁଅର ଆସିବାକୁ ଖୁବ୍ ଜରୁରୀ ମନେକରୁଥିଲା । ପୁଅ ସାଇକେଲଟିଏ ମାଗିକରି ଆଣିଥିଲା ଓ ତା' ପାଖରେ କିଛି ହେଲେ ଟଙ୍କା ବି ନଥିଲା ।

ରୁକ୍ମିଣୀ ଶେଷରେ ଭଉଣୀ ଓ ପୁଅସାଙ୍ଗେ ପରାମର୍ଶ କରି ସଉତୁଣୀର ପୁଅ

ନିକଟକୁ ଖବର ଦେବାକୁ ସ୍ଥିର କଲା । ତା' ସମ୍ମାନ ଯାଉ ପଛେ ଗୋପୀ ସୁସ୍ଥ ହେଉ ।

ସଉତୁଣୀର ପୁଅ ପହଞ୍ଚିବା ବେଳକୁ ଗୋପୀର ଆଉ ଜୀବନ ନଥିଲା ।

ସମସ୍ତଙ୍କ ରାଗ ଦ୍ୱେଷରୁ ତାକୁ ମୁକ୍ତି ମିଳିଗଲା ।

ସଉତୁଣୀର ପୁଅ ଗୋପୀର ଶବ ନେଇ ଗାଆଁକୁ ଚାଲିଗଲା ।

ସଂସ୍କାର ଶୁଦ୍ଧି ଇତ୍ୟାଦି କାମରେ ରୁକ୍ମିଣୀ ଯୋଗ ଦେଲାନି । ତାକୁ ବି କେହି ଡାକିଲେନି ।

ଏବେ ସେ ଏକା । ପେଟ ବଞ୍ଚାଇବା ପାଇଁ କ୍ରସର କାମ କରିବାକୁ ଯିବାକୁ ହେବ ।

ଆଗରୁ ସେ ଭାବୁଥିଲା ଗୋପୀର ବଳୟ ତା'ର ସୁରକ୍ଷା । ପୁଅ ହୁଏତ କୌଣସି ଝିଅ ସାଥିରେ ରହିଯିବ । ତେଣୁ ସେଇ ପାହାଡ଼ ତଳେ ତାକୁ ରହିବାକୁ ହେବ ଏକା ଏକା ଏକା ।



# ନବ ସାହୁ ଦୋକାନର ଆଖପାଖ

ଗାଁ ଭିତର ଖାଲଢିପ ରାସ୍ତା ଉପରେ କାଦୁଅ ଭଳି ଲେସି ହୋଇଯାଇଥିବା ଧୂଳି, ବାଲି, ସରୁ ଗୋଡ଼ି ଆସ୍ତରଣକୁ ଦେଖି ଅଜଣା ପଥଚାରୀମାନେ କେବେ ଧାରଣା କରି ପାରିବେନି ଯେ ତା' ତଳେ ପିଚୁଢଳା ରାସ୍ତାଟି ଏବେ ବି ଅଛି । କିନ୍ତୁ ସେଇ ଗାଆଁର ଲୋକମାନେ ଗର୍ବର ସହ କହନ୍ତି ଯେ ଏ ଅଞ୍ଚଳର ଲୋକେ ଶଗଡ଼ ଗୁଳାରେ ଚାଲିବାରେ ଅଭ୍ୟସ୍ତ ଥିବାବେଳେ ଚିକ୍କଣ, ପିଚୁରାସ୍ତା ଉପରେ ସ୍ୱାଧୀନତାର ଠିକ୍ ପରବର୍ତ୍ତୀ ସମୟର ସଂସ୍କୃତି ମନ୍ତ୍ରୀ ପ୍ରଦର୍ଶନୀ ଉଦ୍‌ଘାଟନ କରିବାକୁ ଆସିଥିଲେ । କେବଳ ସ୍ନାତକ ଉପାଧି ଧରି ଭାରତୀୟ ପ୍ରଶାସନିକ ସେବା ପଦରେ ଅଧିଷ୍ଠିତ ତଥା ଗାଆଁର ଏଇସବୁ କାର୍ଯ୍ୟକ୍ରମର ଆୟୋଜକ ଚତୁର୍ଭୁଜ ଦାସଙ୍କ ପ୍ରୟାଣ ପରେ ଲୋକମାନେ ସରକାରୀ ଖର୍ଚ୍ଚରେ ମୀନା-ବଜାର ଦେଖିବା ଭୁଲି ଯାଇଥିଲେ ମଧ୍ୟ ଦୁଇ ତିନି ଥର ବର୍ଷରେ ଅପେରା ଡକାଇ ପାଖଆଖ ଅଞ୍ଚଳକୁ ହୁଲସ୍ଥୁଲ କରନ୍ତି । କ୍ଷତି ସହି ମନକୁ ସାନ୍ତ୍ୱନା ଦିଅନ୍ତି । ନବ ସାହୁ, ରଘୁ ପାତ୍ର, ଉଦୟ ସାମନ୍ତରା ଭଳି ଛୋଟକାଟିଆ ଦୋକାନୀମାନଙ୍କର ଆର୍ଥିକ ସମ୍ଭାବନାର ଦିଗକୁ ସାମୟିକ ଉଜ୍ଜ୍ୱଳ କରନ୍ତି । ତେବେ ସମସ୍ତଙ୍କ ଅପେକ୍ଷା ନବ କଥା ନିଆରା । ପର୍ବପର୍ବାଣୀରେ ସିଝା ମଟର ବିକୁଥିବା ନବର ରାସ୍ତାକଡ଼ରେ ପରିବା ଦୋକାନ ଅଛି, ଯେଉଁଠି କି ଅଧାପଚା ପରିବା ସବୁ ସୁବିଧା ଦରରେ ମିଳେ । ଗୋଟେ ଚାଉଳ କଳ ବାରଣ୍ଡାରେ ପାଞ୍ଚ ଛଅଟି ଡାଲାରେ ଶୁଖିଲା, ପଚା ପରିବା ସଜାଇ ନବ ସାହୁ ଗ୍ରାହକ ଈଶ୍ୱରମାନଙ୍କୁ ଅପେକ୍ଷା କରୁଥାଏ । କେବେ କେବେ ଜଣେ ଦୁଇଜଣ ଆସି ପରିବା ବାଛନ୍ତି । କେବେ ବହୁ ସମୟଧରି ସେ ଚୁପ୍‌ଚାପ୍ ବସିଥିବାର ଦେଖାଯାଏ । ମଇଳା ଧୋତି ପିନ୍ଧି ଖୋଲା ଦେହରେ ଅନ୍ୟ ଦୋକାନୀମାନଙ୍କ ଆଡ଼କୁ ଚାହିଁ ରହିଥାଏ ସତୃଷ୍ଣ ନୟନରେ । ବାଞ୍ଛା ସାହୁର ତେଜରାତି, ନିମାଇଁ ଗୁଡ଼ିଆର ତେଜରାତି ଜଳଖିଆ, ଶଙ୍କର କେଉଟର ମାଛ ଦୋକାନରେ ଗହଳି ଲାଗିଥିବା ବେଳେ ମକୁ ଦରଜି, ଗଫର ସାଇକେଲ ମରାମତିକାରୀ, ରତନା ସେଠୀର ସିମେଣ୍ଟ ଦୋକାନରେ ଭିଡ଼ ମୋଟେ ନଥାଏ । ତା' ଛଡ଼ା ଅଛି ତିନିଟା ପରିବା ଦୋକାନ, ସାତ ଆଠଟା ପାନ ଦୋକାନ, ବିବାହ ଋତୁ ଲାଗି ଗହଳି ହେଉଥିବା ଟେଣ୍ଟ୍ ହାଉସ୍ ଗୋଟେ, ଟେଲିଫୋନ୍ ବୁଥ୍, ରେଡ଼ିମେଡ୍ ଓ ଅଣ୍ଡା

ଦୋକାନ । ଅଭିନନ୍ଦନ ପତ୍ର, ରାକ୍ଷୀ, ଅବିରର ଦୋକାନ ଖୋଲେ ସାମୟିକ ଭାବେ । ସେହି ସମୟରେ ବଜାର ଦୁଲୁକେ ନୂଆ ସିନେମା, ଭଜନ ଓ ଲଘୁ ସଂଗୀତରେ । ସକାଳ ନ ପାହୁଣୁ ଆରମ୍ଭ ହେଉଥିବା ଏଇ ଶ୍ରୁତିକଟୁ ସଂଗୀତର ବିରାମ ନ ଥାଏ ବା ଆୟୋଜକମାନଙ୍କର କ୍ଳାନ୍ତି ନ ଥାଏ, ହୁଅନ୍ତୁ ପଛେ ଗାଆଁ ଲୋକମାନେ ଅତିଷ୍ଠ । ତେବେ ଏଇ ସମସ୍ତଙ୍କ ମଧ୍ୟରେ ନବ ସାହୁର ସ୍ଥାନ ସ୍ୱତନ୍ତ୍ର । ଇଚ୍ଛା ଥାଉ ବା ନଥାଉ ତା'ର ଆବଶ୍ୟକତା ପଡ଼େ ରବିବାରଦିନ ତ୍ରିନାଥ ମେଳା ବା ବର୍ଷକୁ ଥରେ ବଜାର କମିଟି ଦ୍ୱାରା ଆୟୋଜିତ ଗଣେଶପୂଜାର ଚାନ୍ଦା ଆଦାୟ ନିମନ୍ତେ । ଏଇ ଉତ୍ସବ ଅନୁଷ୍ଠାନରେ ତା'ର ଗୁରୁତ୍ୱ ବୁଝାପଡ଼େ ।

ନବ ଗୋଟେ ଦଦରା ସାଇକେଲ୍ ଚଢ଼ି ନିକଟସ୍ଥ ସହରକୁ ଯାଏ ସପ୍ତାହରେ ଦୁଇ ତିନି ଥର । ବାଛି ବାଛି ଗୋଦାମର ବଳକା ପରିବା ସବୁ କିଣେ । ତେବେ ତା'ବିଚାରରେ ଖୁବ୍ ଶସ୍ତାରେ ସାମୟିକ ପରିବା ମିଳିଲେ ଶାଗ, କୋବି, ବାଇଗଣ ପରି ସଜ ପରିବା ବା କମଳା, ସେଓ ପରି ଫଳ ମଧ୍ୟ ଆଣେ ବେଳେବେଳେ । ଏଥିରେ ତାକୁ ସାହାଯ୍ୟ କରେ ବଡ଼ ଝିଅଟି, ଯାହାର ମୁଣ୍ଡ ସାମାନ୍ୟ ଗୋଳମାଳ ଥିବାର ମନେହୁଏ ଚାଲିଚଳଣରୁ । ବିବାହ ବୟସ ଅନେକ ଦିନରୁ ଅତିକ୍ରାନ୍ତ ହୋଇ ଯାଇଛି । ଏବେ ବି ବାହା ହେବାର ସ୍ୱପ୍ନଦେଖେ । ସାଇତି ରଖିଥିବା ଏକମାତ୍ର ରଙ୍ଗୀନ୍ ଶାଢ଼ୀ ପିନ୍ଧି କାଳିଅନ୍ଧାରରୁ ଗ୍ରହ ବିପ୍ରଙ୍କ ନିକଟରେ କୋଷ୍ଠୀ ଗଣନା କରାଏ । ବାପା ସାଙ୍ଗରେ ଝଗଡ଼ା ଲଗାଏ ଆଉ କୋଉ ଝିଅ ବାହା ହେଉଥିବାର ଦେଖିଲେ । ଯୁବକ ଜଣେ ଦୋକାନକୁ ଆସିଲେ ହସି ହସି କଥା କହେ । ପାଖରେ ବସିଥିବା ନବ ଜମା ପାଟି ଫିଟାଏନି ବା କାମର ବାହାନା କରି ଉଠିଯାଏ । ହେଲେ ଉଷାକୁ କେହି ଶିଖାଇ ନେଇ ଯାଇନି ବା ସିଏ କାହାକୁ ଶିଖାଇ ତା' ସାଙ୍ଗରେ ପଳାଇ ଯାଇନି ।

ମହାଜନ ନବ ସାହୁ ଅପୁତ୍ରକ । ଏଥିପାଇଁ ତା'ର କୌଣସି କ୍ଷୋଭ ଅଛି କି ନାହିଁ, କେହି କହି ପାରନ୍ତିନି । ତେବେ କନିଷ୍ଠ କନ୍ୟାଟି ଭୂମିଷ୍ଠ ହେବାପରେ ସେ ତାକୁ ମାରିଦେବାକୁ ଚାହୁଁଥିଲା – ଦୁଃଖରେ ମୁହ୍ୟମାନ ହୋଇ ବା ନିଜେ ଆତ୍ମହତ୍ୟା କରିବାକୁ ଚେଷ୍ଟା କରୁଥିଲା ଏବଂ ନମରିଯାଇ ଏବେ କନିଷ୍ଠା କନ୍ୟା ଆଶାର ରୋଜଗାରରେ ମୁଖ୍ୟତଃ ଘର ଚଳାଉଛି ।

ଆଶାର ବୟସ ଅଠର କି ଉଣେଇଶ । ସଂଖ୍ୟା କ୍ରମରେ ତା'ର ପାଳି ଚତୁର୍ଥ । ଶ୍ୟାମଳବର୍ଣ୍ଣା ନକନକି ଝିଅଟି ତା ସୁନ୍ଦର ମୁହଁଟିର ଯତ୍ନ ନେବାକୁ ସମୟ ପାଏନି । ସକାଳୁ ଦାନ୍ତ ଘସିବା ପରେ ରାତିରୁ କିଣା ପାଉଁରୁଟି ଖଣ୍ଡିଏ ଖାଇ ଯାଏ ଗାଆଁ ଭିତରକୁ ଜଣେ ଦୁଇଜଣଙ୍କ ଘରେ କାମ କରିବା ପାଇଁ । ସାଲୱାର ପଞ୍ଜାବୀ, ରାତିପିନ୍ଧା ଢଙ୍ଗଢ଼ଙ୍ଗା

ପୋଷାକ ବା ଶାଢ଼ୀ - ଯାହା ପିନ୍ଧିଥାଉ - ଅଣ୍ଟାରେ ଖୋସି କୂଅରୁ ପାଣି ଆଣେ, ବାସନ ମାଜେ, ଘର ସଫା କରେ, ମସଲା ବାଟେ । ତା' ଭିତରେ ସମୟ ପାଇଲେ ଘରବାଲା ପିଲାମାନଙ୍କ ଅନିଚ୍ଛାକୁ ଉପେକ୍ଷା କରି ଦର୍ପଣ ସାମ୍ନାରେ ମୁହଁ ଦେଖେ, ବାଳ ସଜାଡ଼େ, ରବିବାରର ଦୂରଦର୍ଶନ କାର୍ଯ୍ୟକ୍ରମ ଓ ସବୁ ଚଳଚ୍ଚିତ୍ର ଦେଖେ । ପିଲାମାନଙ୍କ ପାଇଁ ଅଣା ହୋଇଥିବା ଜଳଖିଆ ଖାଇବାକୁ ଇଚ୍ଛାକରେ । କାନ୍ଥରେ ଟଙ୍ଗା ଯାଇଥିବା ବ୍ୟାଗରୁ ନେଇ କଞ୍ଚା ବାଦାମ ବା ଥାକରେ ଥୁଆ ହୋଇଥିବା ଆଚାର ସତର୍କରେ ପାଟିରେ ପୁରାଏ । କେହି ଦେଖିଦେଲେ ସଫେଇ ଦିଏ; ଗାଳି ଶୁଣେ । ରାତିରେ ବଳିଥିବା ରୁଟି ଅପେକ୍ଷା ପଖାଳ ଓ ତରକାରୀ ଅପେକ୍ଷା ପିଆଜ ରସୁଣକୁ ପସନ୍ଦ କରେ । କାହାରି ବାରଣ ନମାନି ବରକୋଳି ବା ନରକୋଳି ଗଛରେ ଚଢ଼େ । ମଝିରେ ମଝିରେ କୌଣସି ଘରବାଲାଙ୍କ ଉପରେ ବୀତସ୍ପୃହ ହେଲେ ଅକସ୍ମାତ୍ ଆଶାତୀତ ଭାବେ ଅଧିକ ଦରମା ମାଗେ ଓ କାମ ଛାଡ଼ିଦଏ । ଏମିତି ପାଞ୍ଚ ସାତ ଘର କାମ ଛାଡ଼ି ସାରିଲାଣି ଆଶା । ପୁଣି ଘରମାନଙ୍କରୁ ଡାକରା ଆସେ ଓ କାମ ଆରମ୍ଭ କରେ । ଏଇ ମଝି ସମୟତକ ନବ ସାହୁର ଖୁବ୍ ଅସୁବିଧା । ତେବେ ଆଶା ଖାଲିଟାରେ ବସେନି । ଜଙ୍ଗଲକୁ ଯାଇ ଜାଳକାଠ ଭାଙ୍ଗିଆଣେ ଓ ବଜାରରେ ବିକ୍ରି କରେ । ବଢ଼ନ୍ତା ଝିଅଟା ଜଙ୍ଗଲକୁ ଯିବାକୁ ମାଆ ବାରଣ କରେ ।

ଏଇ କେତେଦିନ ହେଲା ଦୟା ପରବଶ ହୋଇ ଗ୍ରାମ ସଭା ଆଶାକୁ ସ୍କୁଲ୍ ପିଲାଙ୍କ ମଧ୍ୟାହ୍ନ ଭୋଜନର ରାନ୍ଧୁଣିଆ ଭାବେ ନିଯୁକ୍ତି ଦେଇଛି । ପ୍ରତି ମାସରେ ନ ହେଲେ ମଧ ଦୁଇ ତିନି ମାସ ଅନ୍ତରରେ ତ ମିଳିବ ଟଙ୍କା ଦୁଇଶହ ଲେଖାଏଁ ।

ମଧ୍ୟାହ୍ନ ଭୋଜନ କାମଟା ଖୁବ୍ ଭଲଲାଗେ ଆଶାକୁ । ଭାତ ଡାଲି ବଳି ପଡ଼ିଲେ ଆଉ ଘରେ ଖାଇବାକୁ ହୁଏନି ବା ଦ୍ୱିପ୍ରହରେ ଘରକୁ ଫେରିବା ଆବଶ୍ୟକ ପଡ଼େନି । ତେବେ କାମ ଖୁବ୍ ବେଶୀ । ବାଲ୍‌ଟି ବାଲ୍‌ଟି ପାଣି ଗହୀରିଆ କୂଅରୁ କାଢ଼ି ଭାତ, ତରକାରୀ ରାନ୍ଧେ । ପିଲାମାନେ ଖାଇ ସାରିଲେ ଡେକ୍‌ଚି କରେଇ ମାଜି ସାଇତେ । ଦରକାର ପଡ଼ିଲେ ଶିକ୍ଷକମାନଙ୍କ ପାଇଁ ଦୋକାନରୁ ପାନ ବା ସିଗାରେଟ୍ ଆଣିବାକୁ ଯାଏ । କାମ ସରୁସରୁ ଦିନ ତିନିଟା । କ୍ଳାନ୍ତି ଲାଗେ ଆଶାକୁ । ତାକୁ କିନ୍ତୁ ଯିବାକୁ ହୁଏ । ସକାଳ କାମର ପୁନରାବୃତ୍ତି । ସନ୍ଧ୍ୟା ଉତ୍ତାରୁ ଘରକୁ ଫେରିବା ବାଟରେ ଅଟକି ଯାଏ ବାପା ଦୋକାନରେ । ଡିବି ଆଲୁଅ ଜାଳି ବସିଥାଏ ନବ ମହାଜନ । ତା' ପଛକୁ ବସେ ଆଶା । ଚିଲ ଆଖିରେ ଚାହିଁଥାଏ କାଳେ ଦରିଦ୍ର ଗରାଖମାନେ କିଛି ପରିବା ଉଠାଇ ନେବେ ବାପା ଅନ୍ୟମନସ୍କତାର ସୁଯୋଗ ନେଇ । ଇଚ୍ଛା ହେଲେ ଉଠି ଚାଲିଯାଏ ଅନ୍ଧାରେ ଅନ୍ଧାରେ ଗାଆଁ ବାହାରେ ଭୂତ ଭଳି ଛିଡ଼ା ହୋଇଥିବା ଓ ପାଣି ଗଳୁଥିବା ଛାତ

ଘରକୁ । ମାଆ ଗାରୁ ଗାରୁ ହୁଏ । ପାଟି କରେ । ଏତେ ଅନ୍ଧାରେ ବଢ଼ିଲା ଝିଅଟା ଗାଆଁ ମୁଣ୍ଡରେ ଚାଲି ଚାଲି ଆସିବ ? ଅନେକ ଅଘଟଣ ଘଟିଯାଇପାରେ । ନବ ନିର୍ବିକାର । ଟିକିଏ ପାଟି ଫିଟାଏନି । କ'ଣ ଘଟିବ ? ଝିଅ କାହା ସାଙ୍ଗରେ ପଳେଇ ଯିବ । ଯାଉ । ଝିଅମାନଙ୍କ ସଂସାର ବାନ୍ଧିବା ଦାୟିତ୍ୱ ସେ ସେମାନଙ୍କ ଉପରେ ଛାଡ଼ିଦେଇଛି । ତେଣୁ ମଝିଆଁ ଝିଅ ଉର୍ବଶୀ ଗୋଟେ ଖଣ୍ଡାୟତ ପିଲାସାଙ୍ଗେ ପଳେଇଗଲା ବେଳେ ବଡ଼ ଉଶ୍ୱାସ ଲାଗିଥିଲା ନବକୁ ।

ବଡ଼ ଭଉଣୀ ଉଷାକୁ ତିରିଶ ବର୍ଷ ଟପି ଯାଇଥିଲା । ବାପା ତାକୁ ବାହା କରିବା ନିମନ୍ତେ କୌଣସି ସ୍ୱରଶବ୍ଦ ଉଠାଉନଥିଲେ । ଚାରି ଭଉଣୀ ମିଶି ଗୋଟିଏ ବଖରାରେ ଶୋଉଥିଲେ । ସବା ସାନ ଆଶା-ଅପେକ୍ଷାକୃତ କମ୍ ବୟସର ହୋଇଥିବାରୁ ତା'ର ଶୀଘ୍ର ଶୋଇଯିବା ପାଇଁ ଇଚ୍ଛା ହେଲେ ବି ବର୍ଷାଦିନେ ଛାତରୁ ଗଳୁଥିବା ପାଣି ଟୋପା, ଖରାଦିନର ଗୁଳୁଗୁଳି ଓ ଶୀତ ରାତିର ମାତ୍ରାଧିକ ଶୀତ ତାକୁ ଚିଆଁଇ ରଖୁଥିଲା । କୌଣସି ଆଲୋଚନାରେ ଭାଗ ନନେବାକୁ ତା'ର ଅନିଚ୍ଛା ପ୍ରତି ଗୁରୁତ୍ୱ ନଦେଇ ଅନ୍ୟମାନେ ବିବାହ ବିଷୟରେ ଅନେକ ଆଲୋଚନା କରୁଥିଲେ । ଉର୍ବଶୀ ଚାଲି ଯାଇଥିଲେ ବି ସେଇ ଗାଆଁରେ ରହୁଥିବାରୁ ଅଧିକାଂଶ ସମୟ ଏମାନଙ୍କ ସଙ୍ଗେ ସାମିଲ ହେବାରେ କୌଣସି ଅସୁବିଧା ନଥିଲା । ତା' ସ୍ୱାମୀ ବି ରହିବା ବେଳେ ଏମାନଙ୍କ ପରିବାରକୁ ଆସି ଆଧିପତ୍ୟ ଜାହିର୍ କରୁଥିଲା । ଜଣେ ସାଙ୍ଗକୁ ଆଣି ତା'ପାଇଁ ଖାଦ୍ୟ ବ୍ୟବସ୍ଥା କରିବା ପାଇଁ ଏକ ପ୍ରକାର ବାଧ୍ୟ କରୁଥିଲା । ନବ ଓ ତା' ସ୍ତ୍ରୀକୁ ବାହାରେ ଶୋଇବାକୁ ହେଉଥିଲା । ବେଳେ ବେଳେ ସାମାନ୍ୟ ମୂଳଧନ ସଙ୍କୁଚିତ ହେଉଥିଲା ଏମାନଙ୍କ ଖାଦ୍ୟର ଆୟୋଜନ ନିମନ୍ତେ । ଆଶା ଉପର ଉର୍ମିଳା କିନ୍ତୁ ସେଇ ପିଲାଟି ସହ ଖୁସି ଗପ ହେଉଥିଲା । ତା'ର ଖାଦ୍ୟ ପ୍ରସ୍ତୁତ କରିବାରେ ଅହେତୁକ ଆନନ୍ଦିତ ହେଉଥିଲା । ବହୁଦିନରୁ ସଞ୍ଚିତ ପଇସାରେ ସାବୁନ୍ କିଣି ସଫାସୁତୁରା ହେଉଥିଲା । ବାଳକୁ ଆକର୍ଷଣୀୟ କରି ବାନ୍ଧୁଥିଲା । ସୁନ୍ଦର ଶାଢ଼ୀ ପିନ୍ଧୁଥିଲା ଓ ସାମୟିକ ଭାବେ ସୂତା କାଟିବା ତାଲିମ କେନ୍ଦ୍ରରୁ ପଳାଇ ଆସିବାକୁ ଇଚ୍ଛା କରୁଥିଲା ।

ଉର୍ମିଳା ବି ଚାଲିଗଲା ସେଇ ପିଲାଟି ସହ ।

ବହୁତ ଉଶ୍ୱାସ ଲାଗିଲା ନବକୁ ।

ମୂଳଧନ ସଙ୍କୁଚିତ ହେବାର ଦୁଃଖକୁ ଭୁଲିଯିବାକୁ ଲାଗିଲା ।

ନିୟମିତ ଦୋକାନକୁ ଆସି ପରିବା କିଣୁଥିବା ବଦାନ୍ୟ ଗ୍ରାହକ କେତେଜଣଙ୍କ ମଧ୍ୟରେ ଧାନକଳ ମାଲିକ ଆନନ୍ଦ ମଧ୍ୟ ଥିଲେ । ତେବେ ତାଙ୍କର କାର୍ଯ୍ୟକଳାପ

ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର । ସେ ବା ତାଙ୍କ ପିଲାମାନେ ବାଛି ବାଛି ଭଲ ପରିବା, ଅଦା, ରସୁଣ ନେଇ ପଛରେ ପଇସା ଦେବେ ବୋଲି କହୁଥିଲେ । ଅନେକ ଦିନ ଚାଲିଯାଉଥିଲା । ନବ ବା ଉଷା ମାଗିବାକୁ ଡରୁଥିଲେ । ବାରଣ୍ଡାରୁ ବାହାର କରିଦେବେ ଅବା ! ଜିନିଷ କିଣି ପଇସା ନ ଦେବାରେ ଆନନ୍ଦର ଭୂମିକା ଗୌଣ । ଦୋକାନୀ ଭୁଲିଗଲେ ସେଇ ଅର୍ଥଟା ନିଜର ହୋଇଯିବ ବୋଲି ତା' ସ୍ତ୍ରୀ ଏ ଧାରଣାଟି ସ୍ୱାମୀ ଓ ପିଲାମାନଙ୍କ ମନରେ ଭର୍ତ୍ତି କରିଦେଇଥିଲା । ଦୁର୍ଘଟଣାରେ ଗୋଟିଏ ଆଖି ନଷ୍ଟ ହୋଇ କନ୍ୟା ଦୁଷ୍ପ୍ରାପ୍ୟ ହେତୁ ନିଜେ ସମସ୍ତ ଅର୍ଥ ଖର୍ଚ୍ଚ କରି ଯେଉଁ ଅଭାବଗ୍ରସ୍ତ ପରିବାରର କନ୍ୟାଟିକୁ ଗ୍ରହଣ କରିଥିଲା ଆନନ୍ଦ, ସିଏ ଅତ୍ୟନ୍ତ ମୁଖରା ଓ କୃପଣ ଥିଲା । ଖାଲି ନବ କାହିଁକି, ଅନ୍ୟ ସମସ୍ତ ଦୋକାନୀଙ୍କ ଅବସ୍ଥା ସେଇଭଳି । ତେଣୁ ଆନନ୍ଦର ପିଲାମାନେ ବହୁ ସମୟରେ ପରିବା ନଆଣି ଖାଲି ହାତରେ ଫେରୁଥିଲେ ।

ନବ ଫେରାଇ ପାରିବନି । ମଝିରେ ମନକୁ ମନ ସାନ୍ତ୍ୱନା ଦିଏ । ଦୋକାନରେ ଦିନକୁ ତ କିଛି ଭଡ଼ା ଦେବାକୁ ପଡୁନି । ଆଶାର ଏହା ସହ୍ୟ ହୁଏନା । ସେମାନଙ୍କ ଘରେ ଖାଇବାକୁ ନଥିଲେ ଆନନ୍ଦ କ'ଣ ଗଣ୍ଡେ ଚାଉଳ ଦେଉଛି ? ବାପାର ବାରଣ ସତ୍ତ୍ୱେ ନମ୍ର ଭାବେ ପଇସା ମାଗିବାକୁ ଯାଏ । ବାରମ୍ବାର ତ ଫେରିବାକୁ ହୁଏ । ଟଙ୍କା ରେଜା ହୋଇନି । ନାହିଁ, ବାବୁ ଆସନ୍ତୁ ଦେବେ- ସରିଯାଇଛି ଶୁଣି ଶୁଣି । ତେବେ ଅନେକ ଥର ପରେ ଆନନ୍ଦର ସ୍ତ୍ରୀ ବିରକ୍ତ ହୋଇଯାଏ ବୋଧେ । ତେଣୁ ଅପେକ୍ଷାକୃତ କୋମଳ ସ୍ୱରରେ କହେ- ଆଲୋ ଆଶା, ତୁମର ତ ଚାଉଳ ଦରକାର ହେଉଥିବ । ନେଇଯା, ପଇସା ନାହିଁ । ଆଶାର ହଁ ନାହିଁକୁ ଅପେକ୍ଷା ନକରି କିଲେ ଦୁଇକିଲୋ ଚାଉଳ ଢାଳିଦିଏ । ସେଥିରେ ଗୋଡ଼ି, କୁଣ୍ଡା, ଆଉ ଭଙ୍ଗା ଚାଉଳ ମଧ୍ୟ ଥାଏ । ମୂଲିଆମାନଙ୍କୁ ଦେବାପାଇଁ ଚାଉଳରେ ଖୁଦ ମିଶାଇବାରେ ଆନନ୍ଦର ସ୍ତ୍ରୀ ଧୁରନ୍ଧର । ଏଇ କଥାଟି ଗାଆଁର ସବୁ ଲୋକ କହନ୍ତି । ଅସନ୍ତୁଷ୍ଟ ମୂଲିଆମାନଙ୍କୁ ସେଇ ପୁରୁଣା ରେକର୍ଡ଼ ବଜାଇ ଶୁଣାନ୍ତି । ସେମାନଙ୍କର ହୃଦ୍‌ବୋଧ ହୁଏନା । କାମ ନମିଳୁଥିବା ମୂଲିଆମାନେ ତାଙ୍କ ମିଲ୍ ବା କ୍ଷେତରେ କାମ କରନ୍ତି କୁଣ୍ଠିତ ଭାବେ । ବୋହୂଘରୁ ଆସିଥିବା ପିଠାପଣା ବା ଅନ୍ୟାନ୍ୟ ଖାଦ୍ୟବସ୍ତୁରୁ କାହାକୁ ଟିକିଏ ଦେବାକୁ ତା'ର ଇଚ୍ଛା ହୁଏନା । ବହୁଦିନ ସାଇତି ରଖିବା ପରେ ଅଖାଦ୍ୟ ହେବା ବେଳକୁ ମୂଲିଆମାନଙ୍କୁ ବା ଆଶା ଭଳି ଆଉମାନଙ୍କୁ କରୁଣାର କର ପ୍ରସାରି ଦେବାକୁ ଇଚ୍ଛା ହୁଏ ଆନନ୍ଦ ସ୍ତ୍ରୀର । ପରିବର୍ତ୍ତେ କିଛି କାମ କରି ଦିଅନ୍ତେ କି ? ପଇସାଟା ବଞ୍ଚି ଯାଆନ୍ତା । ବୋହୂ ବାପଘର ପିଠା, ବିଭିନ୍ନ ପର୍ବପର୍ବାଣୀର ଭାର ନ ପଠାଇ ସେହି ମୂଲ୍ୟର ଟଙ୍କା ପଠାଇ ଦିଅନ୍ତେ

କି ? ନୂଆ ବୋହୂଟା ପ୍ରତିବାଦର ସ୍ୱର ଉଠାଇ ପାରେନି । ନିଜ ସ୍ୱାମୀ ତ ପାଳଭୂତଟାଏ, ବେରୋଜଗାରିଆ । ମାଆ କଥାରେ କ'ଣ ପ୍ରତିବାଦ କରିବ ? ଆଶାର ସେଇ ବୋହୂଟି ପ୍ରତି ଦୟା ହୁଏ । ତା'କଥା ଶୁଣେ, କିନ୍ତୁ କିଛି କହିପାରେନା । ଚାଉଳ ବା ପଇସା, କିଛି ନଆଣି ଫେରିଆସେ । କେବେ ଅତି ଅଭାବ ହେଲେ ଚାଉଳ ମାଣେ ଦୁଇମାଣ ଧରି ଶୀଘ୍ର ବାହାରି ଆସେ । ନଚେତ୍ କାମର ସଂଖ୍ୟା, ଆନନ୍ଦ ସ୍ୱୀର ବାହାଦୁରି ବା ସାକୁଲା କଥାର ଶେଷ ହେବନି ।

ନବ ସାହୁ ବା ଆଶା କେହି ହେଲେ ବୁଝି ପାରନ୍ତିନି ତାଙ୍କ ଭଳି ନିରାଶ୍ରୟ ଅନ୍ନ ଚିନ୍ତାରେ ଉଦ୍‌ବିଗ୍ନ ମଣିଷମାନଙ୍କ ପ୍ରତି ଛତରା ଟୋକାମାନଙ୍କର ଆକ୍ଷେପ କାହିଁକି ? ଥରେ ଏମିତି ଗୋଟାଏ ଛତରା ଟୋକା ଶୁଣାଇ ଶୁଣାଇ କହିଲା ନବ ସାହୁ ବଢ଼ିଆ କରିଛି । ଝିଅମାନଙ୍କୁ ବାହା କରିଥିଲେ ଖର୍ଚ୍ଚ ହୋଇଥାନ୍ତା । ତେଣୁ ସେମାନଙ୍କ ଇଚ୍ଛା ମୁତାବକ ହାଡ଼ିଘରେ ପାଣଘରେ ଛାଡ଼ି ଦେଇଛି । କଥାଟା ବାଧିଲା ଆଶାକୁ । ଅଷ୍ଟାରେ ଲୁଗାଗୁଡ଼ାଇ ଆରମ୍ଭ କଲା ତା ସଙ୍ଗେ ତକରାଳ । ବଜାରି ଟୋକାଟା ଚୋରି କରେ । ଥରେ ଦୁଇଥର ଜେଲ୍ ଯାଇଛି । ଗରିବ । ତା'ର ବି ଭଉଣୀ ଜଣେ ଦୁଇଜଣ ଅବିବାହିତ ରହିଯାଇଛନ୍ତି । ଏବେ ଚୋରା ଗଞ୍ଜେଇ ଅଫିମ ବ୍ୟବସାୟ କରୁଛି । ଦିନ ବେଳଟାରେ ମଦ ଖାଇ ହୋସ୍ ହରାଏ ଓ ରାସ୍ତା କଡ଼ରେ ପଡ଼େ । ଅନ୍ୟ ପ୍ରରୋଚନାରେ ବୋତଲେ ଦୁଇ ବୋତଲ ମଦ ବିନିମୟରେ ଉଚ୍ଚ ବିଦ୍ୟାଳୟର ଶିକ୍ଷକ ବା ଡାକ୍ତରଖାନାର କର୍ମଚାରୀମାନଙ୍କ ସଙ୍ଗେ ଝଗଡ଼ା କରେ । ମଇଳା ସାର୍ଟ୍ ପିନ୍ଧି ରାସ୍ତାକଡ଼ରେ ବସିଥାଏ । ସିଏ ଭାବି ନ ଥିଲା ନବ ସାହୁର ଝିଅ ତା ସମ୍ମାନ କ୍ଷୁର୍ଣ୍ଣ ହେଲାଭଳି କଥା କହିବ । ତା'ର ଅହଂଭାବକୁ ଖୁବ୍ ବାଧିଲା । ତେଣୁ ତା'ରି ପରି ଆଉ ଦୁଇଜଣ ଟୋକାଙ୍କୁ ଧରି ନବକୁ ଅଭଦ୍ର ଭାଷାରେ ଗାଳିଦେଇ ପରିବା ଡାଲା ଫୋପାଡ଼ିଦେଲା । ଅସହାୟ ନବ ପ୍ରତିବାଦ କରିବାରୁ ତାକୁ ଏପରି ଏକ ଧକ୍‌କା ମାରିଲା ଯେ ଭୂଇଁରେ ପଡ଼ି ତା କାନରୁ ରକ୍ତ ବହିଲା । ଆଶାକୁ ରାସ୍ତାରେ ବେଜିତ୍ କରିବ ବୋଲି ଧମକ ଦେଲା । ଆଶା ବି ଛାଡ଼ିବା ପିଲା ନଥିଲା । କୁକୁର, ମଦୁଆ, ରାଣ୍ଡୁଆ କହି ଗାଳିଦେଲା ଓ ନିଜ ଭଉଣୀମାନେ ରାସ୍ତାରେ ବେଜିତ୍ ହେଉଛନ୍ତି ବୋଲି ଶୁଣାଇଦେଲା । ଭଉଣୀମାନଙ୍କ ବଦନାମ୍ ଆଉ ଅଧିକ ଶୁଣିବାକୁ ବା ଜମା ହୋଇଥିବା ଲୋକମାନଙ୍କୁ ଶୁଣାଇବାକୁ ଟୋକାଟା ପ୍ରସ୍ତୁତ ନଥିଲା । ତା'ର ହୋସ୍ ସାମାନ୍ୟ ଫେରିଆସିଥିଲା । ସିଏ ଚାଲିଯାଇଥିଲା । ଆହତ ବାପାକୁ ଡାକ୍ତରଖାନାକୁ ନେଇ ଚିକିତ୍ସା କରାଇବା ପାଇଁ ଆଶା ନିକଟରେ ପଇସା ନଥିଲା । ଦେଖଣାହାରୀଙ୍କ ମଧ୍ୟରୁ କେତେଜଣ ଥାନାକୁ ଯାଇ ଏତଲା ଦେବାକୁ ପରାମର୍ଶ ଦେଇଥିଲେ ।

ନବ ସାହୁ ଡାକ୍ତରଖାନା ବାରଣ୍ଡାରେ ବସିଥିଲା ଓ ଡାକ୍ତରଙ୍କ ଆଗରେ ଆମୂଳଚୂଳ ବର୍ଣ୍ଣନା କରି ତା'ର ଯେ ଅଶେଷ କ୍ଷତି ହୋଇଛି, ଏକଥା ବୁଝାଇବାକୁ ଚେଷ୍ଟା କରୁଥିଲା । ପୋଲିସ୍‌କୁ ଘଟଣାଟି ଜଣାଇବା ସପକ୍ଷରେ ଦୃଢ଼ ମତ ପୋଷଣ କରୁଥିବା ଡାକ୍ତରଙ୍କୁ ନବର ସାନଝିଅ କେବଳ ଔଷଧ ଲେଖି ଦେବାକୁ କହୁଥିଲା ଓ ପାଖରେ ଛିଡ଼ା ହୋଇଥିବା ସରପଞ୍ଚ ସେଇକଥାକୁ ସମର୍ଥନ କରୁଥିଲେ । ସେଇ ଟୋକା ବିରୁଦ୍ଧରେ ସରପଞ୍ଚ କୌଣସି ପଦକ୍ଷେପ ନେବେନି, ଆଶା ଜାଣିଥିଲା । ସହରରେ ତିଷ୍ଠି ନପାରି ଗାଆଁକୁ ପଳାଇ ଆସିଥିଲେ ସୁକାନ୍ତ ଦାସ । କୌଣସି ବ୍ୟବସାୟ ତାଙ୍କଦ୍ୱାରା ହେଲାନି । ଶିଳ୍ପାଞ୍ଚଳ ଉପକଣ୍ଠରେ ଚାଲିଥିବା ଲେଦ୍ ମେସିନ୍ ଜଣକୁ ଭଡ଼ା ଦିଆଯାଇଥିଲା । ଗାଆଁରେ ବିରାଟ ଆମ୍ବତୋଟା ଓ ଜମି ଭାଗ ଦିଆଯାଇଥିଲା । ସ୍ତ୍ରୀ ତାଙ୍କର ବାଡ଼ି କଦଳୀ ଓ ନଡ଼ିଆ ବିକୁଥିଲେ । ମହିଳା ଉଦ୍ୟୋଗ କରି ବଡ଼ି, ହଳଦୀଗୁଣ୍ଡ ତିଆରି କରୁଥିଲେ । ଆଉ ସୁକାନ୍ତ ଦାସ ସରପଞ୍ଚରେ ଛିଡ଼ା ହୋଇ ଜିତିବା ପରେ ସେଇ ଛତରା ଟୋକାଟାକୁ ଲଗାଇ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ, ସ୍କୁଲର ଶିକ୍ଷକ, କଣ୍ଟ୍ରୋଲ ଦୋକାନୀ, ବ୍ୟାଙ୍କ୍ ଅଫିସର, ଅନାଦି ଓଝାର ବାପା ବୁଢ଼ା ପଣ୍ଡିତ, ମହିଳା ସ୍ୱାସ୍ଥ୍ୟ ପରିଦର୍ଶିକା, ଇଲେକ୍ଟ୍ରିକ୍ ଲାଇନ୍‌ମ୍ୟାନ୍‌କୁ ଅକାରଣରେ ଗାଳି ଦେଇ ବେଜିତ୍ କରୁଥିଲେ । ପଞ୍ଚାୟତରେ ହେଉଥିବା କାମରେ ଠିକାଦାରଙ୍କଠାରୁ ଭାଗ ଚାହୁଁଥିଲେ । ଲୁନାରେ ତେଲ ପକାଇବା ପାଇଁ ଦୋକାନୀମାନଙ୍କୁ ଟଙ୍କା ମାଗୁଥିଲେ । ସେଇଭଳି ଜଣେ ବ୍ୟକ୍ତିଠାରୁ ନବ ସାହୁ କ'ଣ ବା ଆଶା କରିବ ?

ନବ ଫେରିଲା ଘରକୁ । ଅନ୍ଧାର ମଧ୍ୟକୁ । ଶୀତୁଆ ଶୀତୁଆ ପବନ ବାଡ଼ୋଉଛି ଜୋର୍‌ରେ । କେବେ ସିମେଣ୍ଟ ହୋଇଥିବା ଚଟାଣକୁ ଏବେ ଝିଅମାନେ ବା ସ୍ତ୍ରୀ ଗୋବରରେ ଲିପେ । ଭାଙ୍ଗି ଯାଇଥିବା ଝରକା କବାଟ ଯୋଗୁଁ ଅଖା ଟଣା ହୋଇଛି ଶୀତ ହ୍ରାସ କରିବା ପାଇଁ । ଦ୍ୱାରବନ୍ଧର କବ୍‌ଜା ହୁଗୁଳି ଗଲାଣି । କେବେ ଖସି ପଡ଼ିବ । ମସିଆ ହୋଇଗଲାଣି ଚୂନ ଧଉଳା କାନ୍ଥ । ଅସରାଏ ବର୍ଷା ହେଲେ ଛାତରୁ ପାଣି ଢାଳେ । ସବୁଆଡ଼େ ଫାଟ । ଘରକୁ ଲାଗି ବିରାଟ ପୋଖରୀ । ଦୁଇ ଏକର ପରିମିତ ଜାଗାର ବଗିଚା । ନଡ଼ିଆ ଗଛ ଦଶ ପନ୍ଦର, ଆମ୍ବ ଗଛ ଚାରି ପାଞ୍ଚ, ଓଉଗଛ ଗୋଟେ, ସପେଟା ଗଛ, ସପୁରୀ ଗଛ – ସବୁ ନବର ତତ୍ତ୍ୱାବଧାନରେ । ତେବେ କେବେ କେମିତି ତା ଭାଗରେ ଗୋଟେ ଦୁଇଟା ଫଳ ପଡ଼େ । ପଠାଣ ସାହିର ଟୋକାମାନେ ରାତିରେ ଚଢ଼ି ନଡ଼ିଆ ପାରି ନିଅନ୍ତି । ତନ୍ତୀ ସାହିର ଝିଅମାନେ ଖରାବେଳିଆ ଆସି ସପେଟା ବା ସପୁରୀ ନେଇଯାଆନ୍ତି । ପୋଖରୀଟା ତ ସର୍ବସାଧାରଣଙ୍କର- ମାଛ ମାରିନିଅନ୍ତି ବନ୍‌ଶୀ ପକାଇ, ପ୍ରତିବାଦ କଲେ ଶୁଣନ୍ତିନି । ଖାଲି ବଗୁଲିଆ ଟୋକା ନୁହଁନ୍ତି, ଅନେକ ବୟସ୍କ

ମଣିଷ ମଧ୍ଯ କହନ୍ତି - ଏ ଘର, ପୋଖରୀ, ଯାଗା ସବୁତ ଜମିଦାର ଗୋପାଳ ପଟ୍ଟନାୟକଙ୍କର । ନବ ଗୁମାସ୍ତାଙ୍କ ପାଖରେ ଜଣାଇଛି ଅନେକଥର । 'କେଶ୍ କରିବା' ବୋଲି ଆଶ୍ୱାସନା ଦେଇଛନ୍ତି ; କିଛି ହୋଇନି । ଲୋକମାନଙ୍କର ସାହସ ବଢ଼ିଯାଇଛି । ଅସଲ ସତ୍ୟ ହେଲା, ଜମିଦାରଙ୍କ ମୃତ୍ୟୁପରେ ପୁଅମାନେ ବିପର୍ଯ୍ୟସ୍ତ । ସବୁଠାରୁ ଜ୍ୟେଷ୍ଠ କୌଣସି ଏକ ଅଜ୍ଞାତ କୁଳଶୀଳ ଝିଅକୁ ବାହାହେବା ପାଇଁ ଜିଦ୍ କରି ଶେଷ ପର୍ଯ୍ୟନ୍ତ ଅବିବାହିତ ରହିଗଲା । ମାଆ ତଥା ନିଜ ଉପରେ ପ୍ରତିଶୋଧ ନେବାପାଇଁ ପ୍ରଚୁର ମଦ୍ୟପାନ କରୁଥିଲା । ଗୋଟେ କମ୍ପାନୀର ଉଚ୍ଚ ପଦବୀରେ ଅଧିଷ୍ଠିତ ଥାଇ ଦାୟିତ୍ୱହୀନ ଭାବେ କାର୍ ଚଳାଉଥିବା ବେଳେ ଦୁର୍ଘଟଣାର ସମ୍ମୁଖୀନ ହେଲା ଓ ମୃତ୍ୟୁ ମୁଖରେ ପଡ଼ିଲା । ମଝିଆଁ ଗାଆଁର ଜମିବାଡ଼ି ଦେଖାଶୁଣା କରୁଥିଲା । ସ୍ତ୍ରୀ ତାଙ୍କର ଆକାଶବାଣୀରେ କାର୍ଯ୍ୟରତ । ଚାଷୀମାନେ ଭାଗନେବାକୁ ଅନିଚ୍ଛୁକ । ଜମି ତ ବିକ୍ରି କରି ହେଉନି । କଟକରେ ରହିଥାଏ । ମଝିରେ ମଝିରେ ଗାଆଁକୁ ଆସି ବଗିଚାର ମୂଲ୍ୟବାନ ଗଛସବୁ ପାଣି ପରି ଦାମ୍‌ରେ ବିକ୍ରି କରିଦିଏ । ସାନ ବ୍ୟାଙ୍କ୍‌ର ନିର୍ବାହୀ ଅଧିକାରୀ, ଚାକିରିର ଇଚ୍ଛା ନାହିଁ । ନିକଟସ୍ଥ ସହର ଚାରିପଟେ ଗଢ଼ି ଉଠିଥିବା ଶିଳ୍ପାନୁଷ୍ଠାନମାନଙ୍କର ଶ୍ରମିକ ସଂଘ ଗଢ଼ି ତା'ର ନେତା ହୁଏ । ବିଭିନ୍ନ ରାଜନୈତିକ ଦଳକୁ ତ ସମର୍ଥନ କରେ; ସେମାନଙ୍କ ପତାକା ଧରି ବୁଲେ । କିଛି ଦିନ ପରେ ପୁଣି ଚାକିରିକୁ ଫେରିଯାଏ । ଯିବା ଆସିବା ତା'ର ଲାଗିଥାଏ ।

ଅସନ୍ତୁଷ୍ଟ ହେଲେ ବି କିଛି କରିପାରିବାର ସାହସ ସଞ୍ଚୟ କରିପାରେନା ନବ । ଘରଟା ତା' ନିଜର ନୁହେଁ । ନିଜର ସାହି ଭିତରେ ଥିବା ଡିହ ଖଣ୍ଡକ ବିକ୍ରି ହୋଇଯାଇଛି କେତେ କାଳୁ । କନିଷ୍ଠା କନ୍ୟା ଆଶା ଲାଗି ଚିନ୍ତା । ସେ ନିୟମିତ କାମ କରିବାକୁ ଯାଉଥିଲା । ରୋଷେଇ ପାଇଁ ଜଙ୍ଗଲରୁ ଜାଳ ସଂଗ୍ରହ କରୁଥିଲା । ଶୁଖିଯାଉଥିବା ଜୋର ଓ ଗାଡ଼ିଆରୁ ମାଛ ଧରୁଥିଲା । ପୋଖରୀରେ ପହଁରୁ ଥିଲା । ଫରିକଚ୍ଛା ମାରି ଗଛରେ ଚଢୁଥିଲା । ନଡ଼ିଆ ଚୋରି କରୁଥିବା ପଠାଣ ପିଲା ବା ସପୁରୀ ସପେଟା ପାଇଁ ଆଖେଇଥିବା ତନ୍ତୀ ସାହିର ଝିଅମାନଙ୍କ ସଙ୍ଗେ ଝଗଡ଼ା କରୁଥିଲା । ସାଇ ପଡ଼ିଶାର ବାହାଘର ବା ଅନ୍ୟ କୌଣସି ପର୍ବ ହେଲେ ଗୋଟିଏ ବା ଦୁଇଟି ବସ୍ତ୍ର ବିନିମୟରେ ପାଣି କାଢ଼ି କୁଣ୍ଡରେ ଜମା କରୁଥିଲା । ପରିବା କାଟୁଥିଲା; ଆବଶ୍ୟକ ପଡ଼ିଲେ ବାସନକୁସନ ବି ମାଜି ଦେଉଥିଲା । ସନ୍ଧ୍ୟାବେଳେ ବାପାର ପରିବା ଦୋକାନ ସମ୍ଭାଳୁଥିଲା । ଅନ୍ଧାରରେ ନିର୍ବିଘ୍ନରେ ଘରଠାରୁ ଦୋକାନ ବା ଦୋକାନଠାରୁ ଘର ଯାଇପାରୁଥିଲା । ଖେଁ ଖେଁ ହୋଇ ହସୁଥିଲା । ଲୁଚାଇ ଲୁଚାଇ କାନ୍ଦୁଥିଲା, କାରଣ

ଗୋଟିଏ ପୁଅକୁ ଆକୃଷ୍ଟ କରିବା ପାଇଁ ଯେତିକି ମାପଚୁପର ହସ ଓ କଥାବାର୍ତ୍ତା ଆବଶ୍ୟକ ତାକୁ ସେ କଳ୍ପନା କରିନଥିଲା । ତେଣୁ ଆଶା ଘରେ ରହିଥିଲା ।

ନବର ଚିନ୍ତା ବଢ଼ିଯାଉଥିଲା । ସାନ ମଝିଆଣି ଘର ଛାଡ଼ି ଚାଲିଯିବାର ତିନିମାସ ପରେ ଘରକୁ ଫେରିଆସିଲା । ସ୍ୱାମୀ ତା'ର ଆଗରୁ ବିଭାହୋଇଥିଲା ଓ ତା'ର ସ୍ତ୍ରୀ ଉର୍ମିଳାକୁ ଘରୁ ବାହାର କରିଦେଇଥିଲା । ତା' ପେଟରେ ଛୁଆଟିଏ ବଢୁଥିଲା ।

ନବ ସାହୁ ଦିନ ଗଣୁଥିଲା ।

ସବୁ ଝିଅମାନେ ବର୍ତ୍ତମାନ ପାଖରେ ।

□□

# ବର୍ଷା ଆସୁ, ବନ୍ୟା ଆସୁ

କଳାହାଣ୍ଡିଆ ମେଘ ଖଣ୍ଡେ ଉଠେଇଲାଣି ଆକାଶରେ । ଘଡ଼ଘଡ଼ି ଶବ୍ଦରେ ଚମକି ପଡ଼ିଲା ପିଲାଟି । ମାଆ କୋଳରେ ଥାଇ ଅନୁମାନ କଲା- ବର୍ଷା ଆସିବ । ମେଘ ଘଡ଼ଘଡ଼ି ସହ ବର୍ଷା ଆସିବାର ସେ ଦେଖିଛି । ମାଆର ବାରଣ ସତ୍ତ୍ୱେ ବାହାରକୁ ଉଠି ଆସିଲା ସିଏ ।

ଟିପ୍ ଟିପ୍ ବର୍ଷା ପଡ଼ିଲାଣି । ବର୍ଷାରେ ଭିଜିବା କି ଆନନ୍ଦ ! ମାଆ କିନ୍ତୁ ରାଗିବ । ଗାଳି ଦେବ । ମାଡ଼ ଦେଇପାରେ । ବାପାଙ୍କ ଆଗରେ ଫେରାଦ ହେବ, ବାପା ହସିବେ । ବାପା ସକାଳୁ ବଜାର ସଉଦା କରନ୍ତି । ଅଫିସ୍ ଯାଆନ୍ତି; କେବେ ଶୀଘ୍ର ଫେରନ୍ତି ତ କେବେ ଡେରି । ବାପା ଘରେ ନାହାନ୍ତି । କାଇଁ, ବୋଉ ପାଟି ତ ଶୁଣାଯାଉନି । ଘର ଭିତରେ କ'ଣ କରୁଛି ?

ପିଲାଟି ଅଗଣାକୁ ଓହ୍ଲାଇ ଆସିଲା । ଦାଣ୍ଡକୁ ଯିବାକୁ ହେଲେ ବଳଦ ଗୁହାଳ ଟପିବାକୁ ହେବ । ଚାଳରୁ ଟୋପା ଟୋପା ପାଣି ପଡ଼ିବାକୁ ଆରମ୍ଭ କଲାଣି ।

ଦାଣ୍ଡ ପିଣ୍ଡାରେ ପିଲାଟି ଦେଖିଲା ତା' ବୟସର ଆଉ ତିନି ଚାରିଜଣ ପିଲା ଓଳିପାଣି ନିକଟରେ କାଗଜ ଖଣ୍ଡିଏ ଲେଖାଏଁ ଧରି ଠିଆ ହୋଇଛନ୍ତି । ସେମାନଙ୍କ ଭିତରୁ ଜଣେ ପିଣ୍ଡା ଉପରେ ହାମୁଡ଼ି ଡଙ୍ଗା ତିଆରି କରୁଛି । ଓଳି ପାଣିରେ ଡଙ୍ଗାଟି ଭଲ ଭାବରେ ଭାସି ପାରୁନି । ଛୋଟ କାଠି ବା ଗୋଡ଼ି ନିକଟରେ ଅଟକି ଯାଉଛି ।

ଛୋଟ ପିଲାଟି ଓଳି ତଳକୁ ଓହ୍ଲାଇ ସଜାଡ଼ି ଦେଉଛି ଡଙ୍ଗାକୁ । ଆଉ ଟିକିଏ ଭାସି ଡଙ୍ଗାଟି ଅଟକି ଗଲା । ହତାଶ ଦୃଷ୍ଟିରେ ପିଲାମାନେ ଆକାଶକୁ ଚାହୁଁଛନ୍ତି । ମେଘ ଛାଡ଼ି ଆସୁଛି ।

ଛୋଟ ପିଲାଟି ଅନ୍ୟ ସାଥିମାନଙ୍କୁ ପ୍ରବର୍ତ୍ତାଇଲା - ଆସ ଇନ୍ଦ୍ର ଦେବତାଙ୍କୁ ପ୍ରାର୍ଥନା କରିବା - ଜୋର୍‌ରେ ବର୍ଷା ହେବ ।

ପିଲାମାନଙ୍କ କଥାକୁ ଶୁଣୁଥିବା ରଘୁ ମୁଣ୍ଡରୁ ଠେକାଟାକୁ କାଢ଼ିଲା । ବର୍ଷା ଛାଡୁନି । ଦିନା (ଦୀନବନ୍ଧୁ) ଶତପଥୀଙ୍କ ବିଲରେ ଆଜି କାମ କରି ହେବନି । କାମ ନ ହେଲେ ମୂଲ କିପରି ମିଳିବ ? x x x

ନଦୀର ଉପର ମୁଣ୍ଡରେ ବର୍ଷା । ତଳ ମୁଣ୍ଡରେ ବର୍ଷା । ରେଡ଼ିଓ ଆଉ ଦୂରଦର୍ଶନରୁ ସତର୍କ ସୂଚନା ଦିଆଯାଉଛି - ସମୁଦ୍ରରେ ଲଘୁଚାପ ସୃଷ୍ଟି ହୋଇଛି । ସ୍ଥଳ ଭାଗର ଆକାଶରେ କଳା ବାଦଲର ଛାୟା । ପାଣିପାଗ ଅଫିସ୍ ପ୍ରବଳ ବର୍ଷାର ସଙ୍କେତ ଦେଇଛି ।

ଦିନା ଶତପଥୀ ଟି.ଭି. ସମ୍ବାଦ ଶୁଣି ଖୁସି ହୋଇଯାଉଥିଲେ । ଓଡ଼ିଶାର ସବୁ ନଦୀରେ ବନ୍ୟା । ଦୁଇବର୍ଷ ହେଲା ନିର୍ବାଚନ ଶେଷହେଲାଣି । ଗୁଡ଼ାଏ ଅର୍ଥ ଖର୍ଚ୍ଚ ପରେ ସରପଞ୍ଚ ନିର୍ବାଚନରେ ଜିତାପଟ ହୋଇଥିଲା । ମାତ୍ର ନେତୃତ୍ୱ ଜାହିର ବା ଜନସାଧାରଣଙ୍କ ସେବା ପାଇଁ ମିଳୁନଥିଲା ସୁଯୋଗ ।

ଦୁଇବର୍ଷ ତଳେ ବାତ୍ୟା ହୋଇଥିଲା । ଉପକୂଳ ଅଞ୍ଚଳର କେତୋଟି ଜିଲ୍ଲାରେ ସୀମିତ ଥଲା ତାହା । ଏଥର କିନ୍ତୁ ବନ୍ୟା ଆସୁଛି । ମହାନଦୀର ଦୁଇଟା ଶାଖା ତାଙ୍କ ଗାଁ ପାଖେ ପ୍ରବାହିତ ହେଉଛି । ବନ୍ୟା ନିଶ୍ଚୟ ଆସିବ । ଜମିଗୁଡ଼ାକ ତ ସବୁ ବର୍ଷ ବୁଡ଼େ । ସେ କିଣିଥିବା ପଠା ଜମିରୁ ଶୀଘ୍ର ପାଣି ଛାଡ଼ି ଯାଇଥିବାରୁ ସେଥର ସାହାଯ୍ୟ ମିଳିନଥିଲା । x x x

ଏ ବର୍ଷର ବନ୍ୟା ଅଭୂତପୂର୍ବ । ଗାଁ ଚାରିପଟେ ପାଣି । ଗାଁ ଲୋକେ ସେଥିରେ ଅଭ୍ୟସ୍ତ । ଦିନା ଶତପଥୀ ଗୋଟାଏ ଡଙ୍ଗା ଯୋଗାଡ଼ କରି ବ୍ଲକ୍ କାର୍ଯ୍ୟାଳୟରେ ପହଞ୍ଚି ସାରିଥିଲେ । ସାଥିରେ ନେଇଥିବା ଦୁଇ ଚାରିଜଣ ପାର୍ଶ୍ୱଚର, ଆଖପାଖର ଆଉ ଚାରିଜଣ ନେତା ସରପଞ୍ଚ ମିଶି ବିଚାରବିମର୍ଷ କରୁଥିଲେ । ଚୁଡ଼ା ଚାଉଳ ଆସିବ । ଅସ୍ଥାୟୀ ଘର ପାଇଁ ପଲିଥିନ୍ । ସତର୍କତା ପଦକ୍ଷେପ ସ୍ୱରୂପ ଔଷଧ ଆଉ ନଷ୍ଟ ହୋଇଥିବା ଫସଲ ପାଇଁ ଆର୍ଥିକ ସାହାଯ୍ୟ - ଏସବୁ ସରକାରୀ ସାହାଯ୍ୟରୁ ମୁଖ୍ୟ ଅଂଶଟି ଯୋଗାଡ଼ ନକରି ପାରିଲେ ତାଙ୍କ ପତିଆରା କମିଯିବ ।

ମଣ୍ଡଳ ଉନ୍ନୟନ ଅଧିକାରୀଙ୍କ କାର୍ଯ୍ୟାଳୟ ଭିତରେ ଚିତ୍କାର କରୁଥିଲେ ଦିନା ଶତପଥୀ । ନେତାସୁଲଭ ବକ୍ତୃତା - ଆମ ଗାଆଁରେ କୌଣସି ସାହାଯ୍ୟ ପହଞ୍ଚିନି । ଡାକ୍ତର ଯାଇ ନାହାନ୍ତି । ଘରର କାନ୍ଥସବୁ ପଡ଼ିଗଲାଣି । ପଲିଥିନ ଖଣ୍ଡେ ନାହିଁ । ଲୋକେ ଖାଇ ନାହାନ୍ତି ବନ୍ୟା ଆସିବା ପରଠାରୁ । ଜ୍ୱର, ଝାଡ଼ା, ବାନ୍ତି ବ୍ୟାପିଗଲାଣି । ଅଫିସରମାନେ ଆରମରେ ବସିବେ, ଆଉ ଆମେ ଭୋକ ଉପାସରେ ମରିବୁ ।

ତାଙ୍କଠୁ ଛୋଟିଆ ନେତାମାନେ ବି ପାଟି କରୁଥିଲେ । ହୃଦ୍‌ରୋଗରେ ଆକ୍ରାନ୍ତ ଓ ରାଜଧାନୀରୁ ସାହାଯ୍ୟ ନ ପହଞ୍ଚିଥିବା ଚିନ୍ତାରେ ଭାରାକ୍ରାନ୍ତ ମଣ୍ଡଳ ଉନ୍ନୟନ ଅଧିକାରୀଙ୍କ ହୃତ୍‌ସ୍ପନ୍ଦନ ବଢ଼ିଯାଉଥିଲା ।

ବାହାରକୁ ଆସି ଦିନା ଶତପଥୀ ଆତ୍ମ ସନ୍ତୋଷରେ ମୁରୁକି ହସା ଦେଉଥିଲେ । ଏତେଦିନପରେ ମଣ୍ଡଳ ଉନ୍ନୟନ ଅଧିକାରୀଙ୍କୁ ନିଜର କ୍ଷମତା ଦେଖାଇ ପାରିଛନ୍ତି । ବାକି ରହିଲା ଡାକ୍ତର । ତା'ର ଭାରି ଗଉଁ । କଟକରେ ପଢ଼ିଛି । ବଡ଼ ବଡ଼ ସହରରେ ରହିଛି । କୋଉ ଗୋଟେ ବିଷୟରେ ବିଶେଷ ଯୋଗ୍ୟତା ହାସଲ କରିଛି । ତା'ବୋଲି ଆମେ ଗଲେ ଟିକିଏ ବସିବାକୁ କହିବନି । ରୋଗୀ ଦେଖୁଥିବ ଧାଡ଼ିରେ ଠିଆକରି ।

ବ୍ଲକ୍ ଅଫିସ୍ ନିକଟରୁ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଦୂରତା ଗୋଟେ କିଲୋମିଟର । ସାଙ୍ଗରେ ଆସିଥିବା ଟୋକାମାନେ ଶୁଣାଇଲେଣି- ଭୋକ ହେଲାଣି ଦିନା ଭାଇନା ।

ହ୍ୟାପ, ପେଟ କାବୁରିଆଗୁଡ଼ାକ । ଯୁଆଡ଼େ ଯାଉଛନ୍ତି ଖାଲି ଖାଇବୁ ଖାଇବୁ । ଟୋକାମାନେ ଟିକିଏ ଚାଲିଲା ପରେ କହିଲେ, ଅଟୋ ରିକ୍ସାଟେ ଡାକ ଭାଇନା । ଗୋଡ଼ କାଟିଲାଣି । ଏଗୁଡ଼ାକ ପାଇଁ ମଣିଷ କେତେ ଖର୍ଚ୍ଚ କରିବ ? ଏକୁଟିଆ ହୋଇଥିଲେ କେତେ ପାହୁଣ୍ଡ ରାସ୍ତା ଚାଲି ଚାଲି ଯାଇଥିଲେ ଚଳିଥାନ୍ତା । ଚା' ଦି'କପ୍ ପିଇ ଦେଇଥାନ୍ତେ ବା ଉପମା ପ୍ଲେଟ୍‌ଟାଏ ଖାଇ ଦେଇଥାନ୍ତେ । ଏମିତି ଭାବୁଥିବା ବେଳେ ଟୋକାଟାଏ କହିଲା- ଭାଇନା ଜଳଖିଆ ଖାଇବା ନି ? ଭୋକ ହେଲାଣି । ଚିଡ଼ି ଉଠିଲେ ବି କ୍ରୋଧ ଚାପି ଗୋଟେ ରାସ୍ତାକଡ଼ ଦୋକାନକୁ ଉଠିଲେ । ଘରୁ ଆଣିଥିବା ଟଙ୍କା ଶେଷ ହୋଇଗଲାଣି ।

ଡାକ୍ତରଖାନା ବହିର୍ବିଭାଗରେ ଦେଖିବା ବେଳକୁ ଗୋଟାଏ ନୂଆ ମୁହଁ । ରୋଗୀମାନଙ୍କୁ ଜଣକ ପରେ ଜଣେ ଦେଖି ବ୍ୟବସ୍ଥାପତ୍ର ଦେଉଛନ୍ତି ।

- ମୁଁ ଚମ୍ପେଇପୁର ସରପଞ୍ଚ ଆସିଥିଲି । କହିଲେ ଦିନା ଶତପଥୀ ।

ଡାକ୍ତର ହିମାଦ୍ରୀ ଔଷଧ ଲେଖା ବନ୍ଦ କରି ଉପରକୁ ଚାହିଁଲେ ଓ ପଚାରିଲେ- କ'ଣ ଦରକାର ଥିଲା କି ?

ମୁଁ ଡାକ୍ତର ସୁବାସ ଦାସଙ୍କୁ କହିବାକୁ ଆସିଥିଲି- ଆମ ଗାଁକୁ କୌଣସି ପୁରୁଷ କିମ୍ବା ମହିଳା ସ୍ୱାସ୍ଥ୍ୟକର୍ମୀ ଯାଇନାହାନ୍ତି । ବନ୍ୟା ଯୋଗୁଁ ବାହାରକୁ ଯାଇପାରୁନାହାନ୍ତି ଲୋକେ । ଏଣେ ଝାଡ଼ା, ବାନ୍ତି, ଜ୍ୱର, ସର୍ଦ୍ଦିରେ ଆକ୍ରାନ୍ତ ହେଲେଣି ।

- ହଉ, ଡାକ୍ତର ଦାସ ଆସିଲେ ମୁଁ ତାଙ୍କୁ କହିଦେବି । ଆପଣଙ୍କ ଗାଆଁକୁ ସ୍ୱାସ୍ଥ୍ୟସେବା ଦଳ ପଠାଇବେ । ଏହା କହି ରୋଗୀ ଦେଖାରେ ମନଦେଲେ ଡାକ୍ତର ହିମାଦ୍ରୀ ।

ଅନେକ କଥା ଚିନ୍ତାକରି ଆସିଥିଲେ ଦିନା ଶତପଥୀ । ବଛା ବଛା ତୀର ତୂଣୀରରୁ ବାହାର କରିଥାନ୍ତେ । ଅଭିଧାନ ବହିର୍ଭୁକ୍ତ ଶବ୍ଦ ସଂଯୋଜନାରେ କାନ ଫାଟିଥାନ୍ତା ଦାସ ଡାକ୍ତରର ।

ଡାକ୍ତରଖାନା ହତା ବାହାରକୁ ଆସି ଟୋକାଗୁଡ଼ାଙ୍କୁ ଶୁଣାଇଲେ- ହଉ, ଡାକ୍ତରୀ ସେବାଦଳ ଆମ ଗାଆଁକୁ ଆସନ୍ତୁ, ସେମାନେ ମୋତେ ଚିହ୍ନିବେ ଯେ ।

ବନ୍ୟାର ପ୍ରକୋପ, ସୁଅର ପ୍ରଖରତା ଆଉ ଜଳର ପତନ କମିଛି । ତଥାପି ଡାକ୍ତର ହିମାଦ୍ରୀ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟସେବା ଦଳର ମୁଖ୍ୟ ହୋଇ ଡଙ୍ଗାରେ ବସିବାକୁ କୁନ୍ଥୁ କୁନ୍ଥୁ ହେଉଥିଲେ । ପାଣି ଦେଖିଲେ ତାଙ୍କର ଡର । ପହଁରା ଜାଣି ନାହାନ୍ତି । ପିଲାଦିନେ ଗାଁ ପାଖ ଜୋରରେ ବର୍ଷା ପାଣି ପଡ଼ିଲେ ସ୍କୁଲ ଛୁଟି ହୋଇ ଯାଉଥିଲା । ଗୋପୀଭାଇ ପିଲାମାନଙ୍କୁ ଗାମୁଛା ପିନ୍ଧି ସ୍କୁଲ ପାର କରାଉଥିଲେ । ଏବେ ବନ୍ୟାଯୋଗୁଁ ତାଙ୍କୁ ଡେପୁଟେସନ୍‌ରେ ପଠାଯାଇଛି । ଏଇ ଜିଲ୍ଲାର ସବୁଠୁ ବେଶୀ ବନ୍ୟାପ୍ଲାବିତ ଅଞ୍ଚଳରେ ତାଙ୍କର କାମ । ଯନ୍ତ୍ରଚାଳିତ ଡଙ୍ଗାର ନାଉରିଆ ତାଙ୍କୁ ଆଶ୍ୱାସନା ଦେଉଥିଲା । ଦଶ ବାର ବର୍ଷର ପିଲାଟିଏ ଡଙ୍ଗାର ମଙ୍ଗ ଧରିଥାଏ । ଏବେ ପ୍ରଶିକ୍ଷଣରେ ଅଛି । ସ୍ୱାସ୍ଥ୍ୟ ପରିଦର୍ଶକ କହୁଥାନ୍ତି, ଡଙ୍ଗା ବୁଡ଼ିବାର ଥିଲେ ବୁଡ଼ିବ । ଆମେ ସିନା ମରିଯିବା, ଆମ ପିଲାମାନଙ୍କ ମଧ୍ୟରୁ ଜଣକର ତ କିଛି କିନାରା ହୋଇଯିବ ।

ନଦୀରେ ଡଙ୍ଗା ଚାଲିଛି । ପଠାଗୁଡ଼ା ସବୁ ବୁଡ଼ିଯାଇଛି । ବନ୍ଧ ଉପରେ ଚାରି ପାଞ୍ଚ ଥାକର ବାଲି ବସ୍ତା । ଅସ୍ଥାୟୀ ଘର ବାହାରେ ରୋଷେଇ । କଳସୀ ଭର୍ତ୍ତି ପାଣି ନେଉଛନ୍ତି ଝିଅ ଆଉ ବୋହୂମାନେ ଘାଟରୁ । ଡଙ୍ଗାସବୁ ଅପେକ୍ଷାରତ । ଛୁଆମାନେ ଖେଳୁଛନ୍ତି ବନ୍ଧ ଉପରେ । ବୟସ୍କମାନେ ଆଲୋଚନା କରୁଛନ୍ତି ସମ୍ଭାବ୍ୟ ସାହାଯ୍ୟ, ବନ୍ୟା ପରର ପ୍ରସ୍ତାବିତ ଚାଷ ଓ ଗୋଦାମ ମାଲିକ ଆତ୍ମସାତ୍ କରୁଥିବା ଚାଉଳ ବିଷୟରେ । ଖେପାଜାଲ ପକାଇ ମାଛ ଧରିବାର ପ୍ରୟାସ କରୁଛନ୍ତି କେଇଜଣ ଯୁବକ । ବେସୁରା ରାଗର ସଂଗୀତ ଶୁଣାଯାଉଛି ବଳଦ ଅଡ଼ାଇ ଚାଲିଥିବା ଗୋଟେ ପିଲା କଣ୍ଠରୁ ।

ବେଶ୍ ସ୍ୱଚ୍ଛନ୍ଦ ଭାବରେ ଚାଲିଛି ଜୀବନ । କାହାରି ମୁହଁରେ ବିଷାଦର ଛାୟା ନାହିଁ ।

ବନ୍ୟା ଆସିଛି । ଏଥିରେ ନୂତନତ୍ୱ କ'ଣ ଅଛି ? ପ୍ରକୋପଟା ଟିକିଏ ବେଶି । ଜୀବନ ସ୍ରୋତ କ'ଣ ଅଟକି ଯାଇଛି ? ହିମାଦ୍ରୀ ଅନୁଭବ କରି ପାରିଲେନି ।

ଦିଗ ପରିବର୍ତ୍ତନ କରି ଡଙ୍ଗା ମୋଡ଼ ନେଲା । ସେଇ ଗାଆଁକୁ ସ୍ୱାସ୍ଥ୍ୟସେବା ଦଳ ଯିବେ । କାଲି ବହିର୍ବିଭାଗରେ ବସିଥିବାବେଳେ ସରପଞ୍ଚ ଆସିଥିଲେ । ଡାକ୍ତର ଦାସ ଆଜି ତାଙ୍କୁ ପଠାଇଛନ୍ତି ।

ଗାଁ ଚାରିପଟେ ପାଣି । ଦାଣ୍ଡ ଏବଂ ଘର ଡିହସବୁ କେତେ ଉଚ୍ଚରେ । ଟିକିଏ ପାଣି ପଶିଲା ଭଳି ମନେ ହେଉନି । ଲୋକେ ଖୁବ୍ ସାବଧାନ । ପିଲାଟିଏ କହୁଥାଏ ଦମ୍ଭରେ - ଆମ ଗାଁ ଦାଣ୍ଡରେ ପାଣି ପଶିଲେ ଭୁବନେଶ୍ୱର ଭାସିଯିବ ।

ଗାଁ ମଝିରେ ଗୋଟେ ଭଙ୍ଗାଘରେ ବସି ବ୍ୟବସ୍ଥାପତ୍ର ଲେଖୁଥିଲେ ହିମାଦ୍ରୀ । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ଅନେକ ଲୋକ ଜମା ହୋଇଛନ୍ତି । ରୋଗ ଥାଉ ନ ଥାଉ ଔଷଧ ନେଇଯିବେ । ସତେ ଅବା କଣ୍ଟ୍ରୋଲ ସାମଗ୍ରୀ ! ଭାଗ ବୁଡ଼ିଯିବ ନନେଲେ ! ଦୁଇଘଣ୍ଟା ଅତିକ୍ରାନ୍ତ ହୋଇଥିବା ସତ୍ତ୍ୱେ ଲୋକଙ୍କର ଔଷଧ ନେବା ବନ୍ଦ ହେଉନି । ଆଶ୍ଚର୍ଯ୍ୟ ହେଉଥିଲେ ହିମାଦ୍ରୀ - ସତେ କ'ଣ ଏତେ ଗୁଡ଼ାଏ ଲୋକ ରୋଗାକ୍ରାନ୍ତ ହୋଇଗଲେ ? କିନ୍ତୁ କାହାରି ଦେହରେ ରୋଗର ଲକ୍ଷଣ ତ ଦେଖାଯାଉନି । ଆଜି ଅତିକମ୍‌ରେ ତିନି ଚାରିଟି ଗାଁ ବୁଲିବା କଥା । ହିମାଦ୍ରୀ ପ୍ରସ୍ତାବ ଦେଲେ, ଗାଆଁରେ କିଛି ନିତ୍ୟ ବ୍ୟବହାର୍ଯ୍ୟ ଦରକାରୀ ଔଷଧ ଜଣେ ମୁଖିଆ ଲୋକଙ୍କୁ ଦେଇ ଅନ୍ୟ ଗାଆଁକୁ ଯିବା । ରାଜି ହେଲେ ଉପସ୍ଥିତ ଲୋକେ ।

ଫେରି ଆସିଲେ ଡଙ୍ଗାକୁ ହିମାଦ୍ରୀ । ସ୍ୱାସ୍ଥ୍ୟକର୍ମୀ ଓ ପରିଦର୍ଶକ ତଥାପି ପହଞ୍ଚିନାହାନ୍ତି । ଶୁଣାଗଲା କୋଳାହଳ । ପହଞ୍ଚିଲେ ଦୁଇ ଚାରିଜଣ କଲେଜ ପଢୁଆ ଯୁବକ । ସେମାନଙ୍କ ମଧ୍ୟରୁ ଜଣେ ନିଜକୁ ୱାର୍ଡ଼ମେମ୍ବର ବୋଲି ପରିଚୟ ଦେଇ କହିଲା- ଆମ ସାହିରେ ତ ଅନେକ ଲୋକ ଜ୍ୱରରେ ଆକ୍ରାନ୍ତ । ସ୍ତ୍ରୀ, ପିଲା, ବୁଢ଼ା- କେହି ଆସିପାରିବା ଅବସ୍ଥାରେ ନାହାନ୍ତି । ଆସ ଆମ ସାହିକି ।

କେମିତି ଗୋଟାଏ ଧମକ ଦେବାର ଭଙ୍ଗୀ । ତା' ଭିତରୁ ଜଣେ ପ୍ରସ୍ତାବ ଦେଲା, ସବୁ ଏଇ ନରିଆନ୍ନାକୁ ଦେଇଦିଅନ୍ତୁ । ସେ ଟିକିଏ ଔଷଧ ବିଷୟରେ ଜାଣେ । ନରିଆନ୍ନା ନାମଧାରୀ ଯୁବକ ଜଣକ ସମର୍ଥକ ଜଣାଇଲା । ହଉ ଦେବେ ଯଦି ଦିଅନ୍ତୁ, ମୁଁ ବାଣ୍ଟି ଦେବି ।

ସନ୍ଦେହ ହେଲା ହିମାଦ୍ରୀଙ୍କର । ସିଏ ପ୍ରସ୍ତାବ ଦେଲେ ଚାଲ ଯିବା ସେଇ ସାହିକି । ରୋଗୀଙ୍କୁ ଆଣନ୍ତୁ । ଆମେ ଗୋଟିଏ ପାନ ଔଷଧ ଖାଇବାକୁ ଦେବୁ ସାଙ୍ଗେ ସାଙ୍ଗେ । ଆଉ ଘରେ ଖାଇବା ପାଇଁ କିଛି ଔଷଧ ଦେବୁ । ଅପ୍ରସନ୍ନ ଦିଶିଲେ ନରିଆନ୍ନା ସମେତ ଅନ୍ୟ ପିଲାମାନେ ।

ଗାଁ ମଝିରେ ଭାଗବତ ପିଣ୍ଡାରେ ହିମାଦ୍ରୀଙ୍କୁ ଘେରି ବସିଥିଲେ ଅନେକଗୁଡ଼ିଏ ପିଲା ତଥା ସେହି ଯୁବକ କେଇଜଣ । ରୋଗୀ କେହି ଆସୁନଥିଲେ । ଜଣେ ଅସ୍ପଷ୍ଟ ସ୍ୱରରେ କହୁଥିଲା, ଆମ ସାହିପାଇଁ କିଛି ଔଷଧ ରଖିଦେବା । ହିମାଦ୍ରୀ କିଛି କହୁନଥିଲେ । ଘଣ୍ଟାଏ ବସିବା ପରେ ପାଞ୍ଚ ସାତଜଣ ଆସିଥିଲେ । ବୟସ୍କ ଲୋକ ଜଣେ ପ୍ରସ୍ତାବ ଦେଲେ, ବାବୁମାନେ ଏଥର ଯାଆନ୍ତୁ । କେହି ଆଉ ଆସିବେନି ।

ପ୍ରସ୍ଥାନୋଦ୍ୟତ ହିମାଦ୍ରୀଙ୍କ ଆଡ଼କୁ ମାଡ଼ି ଆସୁଥିଲା ଅସୁର ମୁଖ ବିଶିଷ୍ଟ ଜଣେ ମଣିଷ । ଅଳ୍ପ ଚିହ୍ନା ବୁଝା ପଡୁଥିଲା । ହଁ ତ, ସେଇ ମୁହଁ । କାଲି ଏତେ ବିକୃତ

ଦିଶୁନଥିଲା । ସେ ସରପଞ୍ଚ; କାଲି ବର୍ହି ବିଭାଗରେ ଦେଖା ହୋଇଥିଲା । ତାଙ୍କ ମୁହଁରେ ପ୍ରସନ୍ନତା ତଥା କୃତଜ୍ଞତାର ଚିହ୍ନ ରହିବା କଥା ।

ହିମାଦ୍ରୀ ନିଜେ ଆସିଛନ୍ତି ସାହାଯ୍ୟକାରୀ ଦଳରେ । ସରପଞ୍ଚ ଚିତ୍କାର କରୁଥିଲେ । ମୁହଁରେ ଔଦ୍ଧତ୍ୟ ତଥା ଘୃଣାର ଚିହ୍ନ - ବନ୍ୟା ଆସି ଏତେ ଦିନ ଗଲାଣି । ସ୍ୱାସ୍ଥ୍ୟ ବିଭାଗର ନିଦ ଏବେ ଭାଙ୍ଗୁଛି । ଆମ ଗାଆଁର କେତେଜଣଙ୍କୁ ଝାଡ଼ା ଆଉ ଜ୍ୱର - ଏତିକି ଔଷଧ ଆଣିଛ ?

ଯୁବକ ଜଣେ କହିଲା- ଦିନା ଭାଇ, ସିଏ ଆମ ସାହିକି ଯିବା ପାଇଁ ମନା କରୁଛନ୍ତି ।

- କ'ଣ କହିଲୁ, ଯିବେନି ! ଅଲବତ୍ ଯିବେ । ନହେଲେ ସମସ୍ତଙ୍କୁ ଏଇଠି ବାନ୍ଧି ପକେଇବି । କିଏ ଆସି ପିଠିରେ ପଡ଼ିବ । ଔଷଧକୁ ସବୁ ଦୋକାନରେ ବିକିବେ । ସେ କାମ ଚଳିବନି । ଚାଲ ଆମ ସାହିକି । କେହି ଏଠିକି ଆସିବେନି । ଆମ ଗାଁ ବୋହୂ ଦାଣ୍ଡକୁ ଆସିବେ ?

ନିର୍ବାକ୍ ହିମାଦ୍ରୀଙ୍କ ନିକଟରେ ପହଞ୍ଚି ଲୋକଟା ଧମକ ଦେଉଥିଲା- ଉଠ, ଏଠି ବସିବା ଚଳିବନି ।

ହିମାଦ୍ରୀ ଅନ୍ୟମାନଙ୍କ ସଙ୍ଗେ ଚାଲିଲେ ସେଇ ନିର୍ଦ୍ଦିଷ୍ଟ ସାହି ଆଡ଼କୁ । ସେଠି ବି ରୋଗୀଙ୍କର ଦେଖା ନାହିଁ । ଯେଉଁ ଦୁଇଜଣ ଆସିଲେ ସେମାନେ ସରପଞ୍ଚଙ୍କ ମାଆ ଓ ସ୍ତ୍ରୀ । ସେମାନଙ୍କର ଅସୁସ୍ଥତା ନଥିଲା ।

ସରପଞ୍ଚ ଟହଲ ମାରି କହୁଥିଲେ- ଆରେ, ସାରିଆ କହୁଥିଲା ତା'ର ଜ୍ୱର ହେଉଛି, ଡାକ । ଘନିଆର ପରା ଝାଡ଼ା ହେଉଥିଲା; ଅନ୍ତରାର ମୁଣ୍ଡ ବଥଉ ଥିଲା ।

ତାଙ୍କ ପାଟିରୁ ଅନେକ ବ୍ୟକ୍ତି ଏବଂ ରୋଗ ଉପସର୍ଗର ନାମ ଶୁଣାଯାଉଥିଲା । କେହି ଡାକିବାକୁ ଯାଉ ନ ଥିଲେ କିମ୍ବା କେହି ଆସୁନଥିଲେ ।

ନଡ଼ିଆଗଛ ଫାଙ୍କରେ ସୂର୍ଯ୍ୟ ପଶ୍ଚିମାଭିମୁଖୀ ହୋଇ ସାରିଥିଲେ ଅନେକ ବେଳୁ; ଖରାର ତେଜ କମିଯାଇଥିଲା । ବାଦଲ ଢାଙ୍କିଥିଲା ଆକାଶକୁ । ହିମାଦ୍ରୀ ପଚାରି ପାରୁନଥିଲେ ଯେ ସେ ଏଥର ଯାଇ ପାରିବେ ନା ନାହିଁ । ନଅଟା ବେଳୁ ବାହାରିଥିଲେ ଚାରିଟା ହେଲାଣି, ସେ ସହଯୋଗୀମାନେ କିଛି ଖାଇନାହାନ୍ତି; ସୁଯୋଗ ମଧ୍ୟ ନାହିଁ । ପାଖରେ ସ୍ୱାସ୍ଥ୍ୟ କର୍ମଚାରୀଙ୍କ ଛଡ଼ା ଆଉ କେହି ଦିଶୁ ନାହାନ୍ତି । ପରିଦର୍ଶକ କହିଲେ, ସାର୍, ଏବେ ଯିବା ଚାଲନ୍ତୁ । ଆଉ କେହି ଆସିବେନି ।

ଡଙ୍ଗାରେ ଆସି ବସିବା ବେଳକୁ ପାଞ୍ଚଟା ପାଖାପାଖି । ନାଉରିଆ କାତ ମାରିବା ଆରମ୍ଭ କରିବା ସମୟରେ ପୁଣି ଦେଖାଗଲା ସେଇ ଅସୁରର ମୁହଁ । ପଛରେ କିଏ

ଥିଲେ କି ନା, ବୁଝାପଡୁ ନଥିଲା । ପାଗଳଙ୍କ ପରି ଲୋକଟା ପ୍ରଳାପ କରୁଥିଲା- ଆମ ଗାଁର ସବୁ ସାଇକି ଗଲେ ନା, ନ ହେଲେ ତାଙ୍କୁ ଛାଡ଼ିଥାନ୍ତି ?

ସୀମାହୀନ ଜଳରାଶି ଆଡ଼କୁ ଚାହିଁଥିଲେ ହିମାଦ୍ରୀ । ତାଙ୍କ ମାନସ ପଟରେ ନାଚୁଥିଲା, ନେତୃତ୍ୱ ପ୍ରକଟ କରିବା ପାଇଁ ଲୋକଟାକୁ ବନ୍ୟା ସୁଯୋଗ ଆଣିଦେଲା ନିଶ୍ଚୟ । ଅନ୍ୟ ଗାଆଁର ଲୋକମାନେ ସ୍ୱାସ୍ଥ୍ୟସେବା ନପାଆନ୍ତୁ, ଜ୍ୱର ରୋଗ ଭୋଗନ୍ତୁ ବା ଝାଡ଼ା ବାନ୍ତିରେ ମରନ୍ତୁ, କିଛି ଯାଏ ଆସେ ନାହିଁ ।

କାଳେ କାଳେ ବନ୍ୟାଆସୁ, ବାତ୍ୟା ଆସୁ, ଏଇ ଲୋକମାନଙ୍କ ସ୍ୱାର୍ଥ ଚରିତାର୍ଥ କରିବା ପାଇଁ, ସ୍ୱଳ୍ପ କାଳ ପାଇଁ ହେଲେ ମଧ୍ୟ ଲୋକମାନଙ୍କ ଆଗରେ ବାହାଦୁରୀ ଦେଖାଇବେ । ସୁବିଧା ପାଇଲେ ଜନସାଧାରଣଙ୍କ ଆବଶ୍ୟକୀୟ ସାମଗ୍ରୀରୁ କିଛି ହଡ଼ପ କରିବେ ।

ସ୍ରୋତର ବିପରୀତ ଦିଗରେ ଡଙ୍ଗା ଚାଲିଲା ।



# ଫୁଲମାଳ

ଏକାଏକା ଚାଲୁ ଚାଲୁ ରାସ୍ତାଟା ଯେ ସମ୍ପୂର୍ଣ୍ଣ ନିର୍ଜନ ହୋଇଯାଇଛି ଏହା ନୀରଜାକୁ ଜଣା ନଥିଲା । କେତେ ଟୋପା ଭାରି ବର୍ଷା, ଗଛ ଲତାକୁ ରାମ୍ପି ପକାଉଥିବା ସୁ ସୁ ପବନ, ଆକାଶକୁ ବିଦୀର୍ଣ୍ଣ କରୁଥିବା ବିଜୁଳି ଓ ଘଡ଼ଘଡ଼ିର ଐକ୍ୟନାଦ ଭୀତି ସଞ୍ଚାର କରୁଥିଲା ମନରେ । ଆହୁରି କେତେ ରାସ୍ତା ବାକି । ଗୁଡ଼ାଏ ଗାଳି ଖାଇଛି ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କଠାରୁ । କର୍ତ୍ତବ୍ୟରେ ଅବହେଳା ଯୋଗୁଁ ନୁହେଁ, ନେଇ ଯାଇଥିବା ଉପଢୌକନ ମନକୁ ଆସିଲାନି ବୋଲି । ସେ କ'ଣ କରିଥାଆନ୍ତା ଯେ । ସହକର୍ମୀମାନେ ସେହିପରି ପରାମର୍ଶ ଦେଲେ । ମାଛ ଦୁଇ କିଲୋଗ୍ରାମ୍ ବା ସମ ମୂଲ୍ୟର ମିଠା ନେଇ ପହଞ୍ଚାଇ ଦେଲେ ବାକିଥିବା ଦରମା ମିଳିଯିବ । ନୀରଜା କଥାଟାକୁ ସତ୍ୟବୋଲି ଅନୁଭବ କରିଥିଲା, କିନ୍ତୁ ଗୋଟିଏ ଦିନର ଛୁଟି ସଜାଡ଼ିବାକୁ ଏପରିଭାବେ ଅର୍ଥ ବରବାଦ କରିବାକୁ ସମର୍ଥନ କରିପାରୁନଥିଲା ।

ମାସର ଶେଷ ସପ୍ତାହ । ଯୋଜନା ବହିର୍ଭୂତ ପୁଞ୍ଜି ଟଣାଟଣି ଅବସ୍ଥାରେ । ସ୍ୱାମୀ ଜନ୍ମେଜୟର ତାଗିଦା, ଦରମା ପାଇବାମାତ୍ରେ ଶଶୁରଙ୍କ ନିକଟକୁ ଟଙ୍କା ପଠାଇବ । ସୈନ୍ୟବାହିନୀରେ ସେ ଚାକିରି କରିଛି । ବର୍ଷରେ ଦୁଇ ଚାରିଥର ଆସେ । ଅର୍ଦ୍ଧେକ ସମୟ ବାପାମାଆଙ୍କ ପାଖରେ । ବାକି ଅର୍ଦ୍ଧେକ ନୀରଜା ପାଖରେ । କି ନିଶା ଲାଗିଛି ମଣିଷଟାକୁ କେଜାଣି, ଗାଆଁରେ ଜମି କିଣିବ । ଇଆଡ଼େ ମାଆ ପୁଅ ଯେମିତି ଚଳନ୍ତୁ । ଦୁର୍ବଳ ସ୍ୱାସ୍ଥ୍ୟର ସାନ ପୁଅଟାକୁ ସର୍ଦ୍ଦିରୋଗ । ନୀରଜା ରକ୍ତଶୂନ୍ୟତା ଭୋଗୁଛି । କ୍ଷେତ୍ର କର୍ତ୍ତବ୍ୟ କଲାବେଳେ ପାଦର ଚପଲ ଛିଣ୍ଡୁ କି ଅଟୋରିକ୍ସାରେ ଗଲାବେଳେ ଟୋକାଙ୍କ କହୁଣି ବାଜୁ । ସ୍ୱଚ୍ଛ ଶକ୍ତିସମ୍ପନ୍ନ ଦୁଇଚକିଆ ଯାନଟିଏ କିଣିଦେଲେ ହୁଅନ୍ତା ନି ! ଜନ୍ମେଜୟ କଥାଟାକୁ ଟାଳି ଦେଉଛି । ଆଉ ଦୁଇବର୍ଷ ଯାଉ । ଗାଆଁ ଘରଟା ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କର । ତାଳୁଅ ଧାନ ଜମି ଶହେ ଡେସିମିଲ କିଣା ସରୁ । ନଣନ୍ଦର ବାହାଘର, ଦିଅରର ପାଠ ପଢ଼ା, ଶାଶୁଙ୍କ ଅପରେସନ, ଶଶୁରଙ୍କ ସରପଞ୍ଚ ନିର୍ବାଚନ, ସାନ ଯାଆର ସନ୍ତାନ ପ୍ରସବ, ଭଣଜାର ସ୍ୱନକ୍ଷତ୍ର, ପିଉସୀଙ୍କ ଘରକୁ ବେଭାର... ଏହିପରି ଅନେକ କାମ ଶେଷହେବା ବେଳକୁ ନୀରଜା ଅନେକ ଧକ୍କା

ଖାଇ କିଛି ଘଟିନି ବୋଲି ଭାବି ନେଇଥିବ । ଆଖି ତଳର କଳାଦାଗ ଓ ମଥା ଉପରର ଧଳାକେଶ କେଇଟା ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିସାରିଥିବ ।

ମୁହଁକୁ ଶାଢୀରେ ଘୋଡ଼ାଇ ଚାଲୁ ଚାଲୁ ପଛଆଡୁ ଗୋଟେ ଲୁନା ଆସି ଅଟକିଲା ଟିକିଏ ଆଗରେ । ଡରିଗଲା ନୀରଜା । ତା' ନିକଟରେ ଅର୍ଥ ନାହିଁ, ଗହଣା ସିଏ ପିନ୍ଧେନା । କିନ୍ତୁ ଅସୁର ପ୍ରକୃତି ବିଶିଷ୍ଟ ମଣିଷଗୁଡ଼ାଙ୍କର ଗହଣା ଅପେକ୍ଷା ସ୍ତ୍ରୀ ଲୋକମାନଙ୍କ ଶରୀର ଉପରେ ଲୋଭ ବେଶି । ତା'ସାଙ୍ଗକୁ ନିର୍ଜନ ପରିବେଶ । ମୁଣ୍ଡ ବାଳକୁ ହାତରେ ସାଉଁଲୁ ସାଉଁଲୁ ପଛକୁ ଚାହୁଁଛି ଲୋକଟା, ନୀରଜା ଅଟକି ଗଲାନି । ଦୌଡ଼ି ପଛକୁ ପଳାଇଯାଇ ପାରିଲାନି । ସେ ଚାଲୁଥିଲା । ପାଖାପାଖି ହୋଇଯିବାରୁ ସ୍ପଷ୍ଟ ହୋଇଗଲା ମୁହଁଟି । ସିଏ ଶରତ । ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ । କୁଆଡ଼େ ଯାଇଥିଲା ଯେ ଫେରୁଛି ।

-"ଦିଦି ବସିପଡ଼ ।"

ଖୁସି ହୋଇଗଲା ନୀରଜା । ଆଉ ଦୁଇ କିଲୋମିଟର ରାସ୍ତା ଚାଲିବାକୁ ପଡ଼ିଥାଆନ୍ତା ବର୍ଷାରେ ଭିଜିଭିଜି ।

ପ୍ରଥମେ ପଡ଼ିଲା ଶରତର ଘର । ସେଠୁ ବସ୍‌ଷ୍ଟାଣ୍ଡ୍ ପ୍ରାୟ ଗୋଟେ କିଲୋମିଟର । ସେଠୁ ଅଟୋରିକ୍ସା ନଚେତ୍ ଟ୍ରେକର ଧରିବାକୁ ହୁଏ । ସରକାରୀ ବସ୍‌ର ସମୟ ଡେରି ଥିଲେ ମଧ ତା'ର କୌଣସି ଠିକଣା ନଥାଏ । ଶରତକୁ ଅନୁରୋଧ କଲା ଟିକେ ଛାଡ଼ିଦେବା ପାଇଁ । ବର୍ଷା ଛାଡ଼ି ଯାଇଥିଲା । ଶରତର ଭଡ଼ାଘର ଚାଳରୁ ଟୋପା ଟୋପା ପାଣି ପଡୁଥିଲା । ତା' କଳାଧଳା ଟି.ଭି. ଆଣ୍ଟେନାରେ କାଉ ପର ଝାଡୁଥିଲା । ତା' ସ୍ତ୍ରୀ ଷ୍ଟୋଭ୍ ଜାଳି ଚା' ବସାଉଥିଲା କେଟ୍‌ଲିରେ । ଓଦା ଲୁଗାକୁ ଚିପୁଡୁ ଚିପୁଡୁ ବସିଲା ନୀରଜା । ତା' ମୁହଁରେ ପ୍ରସନ୍ନତା ନଥିଲା । ସେ ମନେ ପକାଉଥିଲା ଆଉ ଭୁଲି ଯିବାକୁ ଚାହୁଁ ନଥିଲା ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କ ଦୌରାତ୍ମ୍ୟ ।

ତା' ନୀରବତାକୁ ଭଙ୍ଗ କରିବା ପାଇଁ ଯେଉଁ ଶବ୍ଦ ଉଚ୍ଚାରିତ ହେଲା ତାହା ଶରତ ସ୍ତ୍ରୀ ହାତର ଚା' ପିଆଲା ନୁହେଁ, ଶରତର ଲଘୁ ପ୍ରଶ୍ନ - କେଉଁଠୁ ଫେରୁଥିଲ ନୀରଦିଦି ?

ବାସ୍ତବତାକୁ ଫେରି ଆସିଲା ନୀରଜା । କହିଲା- ଗୁଡ଼ାଏ ଗାଳି ଶୁଣିବାକୁ ଯୋଗ ଥିଲା ତ । ଅଫିସ୍ ଯାଇଥିଲି ଛୁଟି ନିୟମିତ କରିବା ପାଇଁ । ବି.ଡ଼ି.ଓ. କହିଲେ ଯେ ଛୁଟି ମଞ୍ଜୁର କ'ଣ ଏତେ ସହଜରେ ହୋଇଯିବ ? ତାଙ୍କୁ ରୋହି ମାଛ ଭଲ ଲାଗେନା । କେବଳ ଖାସି ମାଂସ । ପୁଣି ତାଙ୍କର ବଡ଼ ପରିବାର । ବଳିଲେ ଫ୍ରିଜ୍‌ରେ ସାଇତି ରଖିବେ । ଆଉ ମୁଁ କୁଆଡ଼େ କ୍ଷେତ୍ର ପରିଦର୍ଶନରେ ଯାଉନି, କର୍ତ୍ତବ୍ୟରେ

ହେଳା କରୁଛି । ଅନ୍ୟମାନେ ଅଭିଯୋଗ କରିଛନ୍ତି- ଏବେ ପୁଣି ବରାଦ କରିଛନ୍ତି ଫୁଲମାଳ ।

ଅନ୍ୟ କିଏ ହୋଇଥିଲେ ହସି ଦେଇଥାଆନ୍ତା ଏକଥା ଶୁଣି । ଶରତ କିନ୍ତୁ ସବୁ ଜାଣେ । ଅଫିସ୍ ସାରା ଅନ୍ୟ ସମସ୍ତେ । ବୁଢ଼ା ବି.ଡ଼ି.ଓ. ବିନା ଉତ୍କୋଚରେ କଲମ ଧରନ୍ତିନି, ଅର୍ଥ ବା ପଦାର୍ଥ ଯେକୌଣସି ଆକାରରେ ହେଉ । ସେ ଚାକିରି କରିଛନ୍ତି, ମାସିକ ବେତନ ପାଇବେ । କିନ୍ତୁ କାମ କରିବା ନିମନ୍ତେ ଆନୁପାତିକ ଭାବେ ଆର୍ଥିକ ବ୍ୟବସ୍ଥା ହେବା ଦରକାର । ନୀରଜାର ଛୁଟି ଦରଖାସ୍ତ ମଞ୍ଜୁର ହେବା ପରେ ବିଲ୍ ପ୍ରସ୍ତୁତ ହେବ । ଯାହା ବାକିଅଛି ଦରମା ମିଳିବ, ତା'ର ଗୋଟାଏ ଅଂଶ ସେ ପାଇବା ଦରକାର । ନୀରଜା, ଶରତ, ଆନନ୍ଦ, ଉପେନ୍ଦ୍ର ସମସ୍ତଙ୍କ ପାଇଁ ସେଇ ଏକା ନିୟମ । ଉତ୍କୋଚ ଭାବେ ନୁହେଁ, ଏହା ସେ ଉପଢ଼ୌକନ ଭାବେ ଗ୍ରହଣ କରିନିଅନ୍ତି । ଯଦି କ୍ଷମତା ଥାଆନ୍ତା, ତେବେ ସପ୍ତ ପୁରୁଷ ଉଦ୍ଧାର କରିବା ନିମନ୍ତେ ଅଭିଶାପ ଦେଇ ଦିଅନ୍ତା ନୀରଜା ।

ବର୍ଷା ଛାଡ଼ିଗଲାଣି । ସହରଠୁ ଅନେକ ଦୂରରେ ଥିବା ପାହାଡ଼ ମଥାନର ପାଖାପାଖି ହୋଇଗଲେଣି ସୂର୍ଯ୍ୟ । ଚାଳ ଉପରେ ବସିଥିବା କାଉ ଉଠିଗଲାଣି । ଚା' ପିଇସାରି ନୀରଜା ଉଠିଲା । ଶରତ ଲୁନାର ପଛ ସିଟ୍‌ରେ ବସି ଗଲାବେଳକୁ ଜମା ପାଟି ଫିଟାଇଲାନି ।

ବସ୍‌ଷ୍ଟାଣ୍ଡରେ ଅନେକ ଲୋକ । ଗାଡ଼ିନାହିଁ । ଝିପି ଝିପି ବର୍ଷା । ମନ୍ଦା ମନ୍ଦା ଗୋଳି ପାଣି । ଏଇନେ ବସ୍‌ଟିଏ ଆସିଲେ ଏପଟ ସେପଟ ହେଉଥିବା ମଣିଷଙ୍କର ଜାମାପଟା ନିଶ୍ଚୟ ଓଦା ହୋଇଯାଆନ୍ତା । କଦଳୀ, ବାଦାମ୍, ଲେମ୍ବୁ, ପାମ୍ପଡ଼ ବିକୁଥିବା ପିଲାଗୁଡ଼ା ଠେକୁଆ ପାଲଟି ଯାଆନ୍ତେ । ଏକାସଙ୍ଗେ ଉଠିବା ପାଇଁ ଲୋକେ ଠେଲାପେଲା ହୁଅନ୍ତେ ।

ଗାଡ଼ି ଆସୁନଥିଲା । ବ୍ୟସ୍ତଭାବେ ପଦଚାରଣା କରୁଥିଲେ ଲୋକେ । ଗୋଟେ ବନ୍ଦ ଦୋକାନର ଟିଣ ଛାତ ତଳେ ଠିଆ ହେଲା ନୀରଜା । ଯାଇପାରୁନଥିଲା ଶରତ । ଗୋଡ଼ ବିନ୍ଧିବା ସତ୍ତ୍ୱେ ସିମେଣ୍ଟ ଚଟାଣରେ ସେମାନେ ବସିପାରୁନଥିଲେ ।

– ଫୁଲମାଳ କାହିଁକି ବରାଦ୍ ଦିଆଯାଇଛି ନୀରଦି ?

– ଜାଣିନ କି ! ହାଡ଼ରେକେଟା ବୁଢ଼ା ନିଜ ବେକରେ ଲମ୍ବେଇବ । କ'ଣ ଗୋଟେ ରାଜ୍ୟସ୍ତରୀୟ ପୁରସ୍କାର ପାଇଛି ସେବାକାର୍ଯ୍ୟ ପାଇଁ । ଖବରକାଗଜରେ ବାହାରିଥିଲା । ପୁରସ୍କାର ଗ୍ରହଣ କରିବା ଦିନ ଲୋଭନୀୟ ଫୁଲ ହାରଟେ ନ ପକାଇଲେ ଲୋକେ ଚିହ୍ନିବେ କେମିତି ?

କି ସେବା ! ଝିଅ ବାହାଘର ବେଳେ ପ୍ରାଥମିକ ଶିକ୍ଷକମାନଙ୍କ ଦରମାରୁ ପଚାଶ ଟଙ୍କା ଲେଖାଏଁ କାଟିବା ଶରତର ପ୍ରତ୍ୟକ୍ଷ ଅନୁଭୂତି । ପ୍ରତିବାଦ କରିଥିବା ନିରୀହ ମଣିଷଗୁଡ଼ାଙ୍କୁ ପର ଋତୁରେ ବଦଳି କରିଦିଆଯାଇଥିଲା । କୌଣସି ଆପତ୍ତି ଅଭିଯୋଗ ଶୁଣାଯାଇ ନଥିଲା ସେମାନଙ୍କର ।

ଟ୍ରେକର୍ ଆସି ପହଞ୍ଚିଲା ।

ଡ୍ରାଇଭର ପଛ ଧାଡ଼ିରେ ଜାଗାଟିଏ ଯୋଗାଡ଼ କରିଦେଲା ଶରତ । କଡ଼ ଜାଗା । ଝିଅପିଲାଙ୍କ ପାଇଁ ଭଲ । ଅଧାଖିଆ ସିଗାରେଟ୍‌କୁ ଫୋପାଡ଼ି ଦେଇ କୋଡ଼ିଏ ବାଇଶି ବର୍ଷର ପିଲାଟିଏ ବସି ପଡ଼ିଲା ନୀରଜା ପାଖରେ । ହାତ ଗୋଡ଼ ହଲାଇ ବାହାରେ ଠିଆ ହୋଇଥିବା ତା' ବନ୍ଧୁ ସାଙ୍ଗରେ ତାଳମେଳ ନଥିବା ଗପ ଲମ୍ବାଇଥିଲା । ଲୋକ ଭର୍ତ୍ତି । ହେଲେ ଚାଳକ ଗାଡ଼ି ଛାଡ଼ୁ ନଥିଲା । ଯେତିକି ବସିଛନ୍ତି ଆଉ ସେତିକି ଓହଳି ଯିବେ । ଭଲ ନ ଲାଗିଲେ ବି କୌଣସି ଉପାୟ ନାହିଁ । ଚୁପ୍‌ଚାପ୍ ବସି ମାଡ଼ି ଆସୁଥିବା ଅନ୍ଧାରରେ ଅସ୍ପଷ୍ଟ ମୁହଁସବୁକୁ ଦେଖିବାକୁ ଚେଷ୍ଟା କରୁଥିଲା ନୀରଜା । ଅନ୍ଧାର ଯେତେ ଘନୀଭୂତ ହେବ ମଣିଷମାନଙ୍କ ଆସୁରିକ ପ୍ରବୃତ୍ତି ସେତେ ବଢ଼ି ଚାଲିବ । ପାଖରେ ବସିଥିବା ଟୋକାଟା ଆଖିରେ ଆଖିରେ ଝିଅମାନଙ୍କୁ ଗିଳି ପକାଇବାକୁ ଉଦ୍ୟତ । ନ ଜାଣିବାର ବାହାନା କରି ଛୁଇଁଦେବାର ପ୍ରୟାସ । ଏ ଅଭିଜ୍ଞତା ନୂତନ ନୁହେଁ ନୀରଜାର । ଚଳନ୍ତା ବସ୍, କାର୍ଯ୍ୟାଳୟ, କାର୍ଯ୍ୟକ୍ଷେତ୍ର- ସବୁଠି ଏଇ ଅମାନବୀୟ ପ୍ରବୃତ୍ତିର ପୁନରାବୃତ୍ତି । କାହାକୁ କିଛି କହିବାର ସାଧ ନାହିଁ । ବୁଢ଼ା ବି.ଡ଼ି.ଓ. ଏପରି ଜାଲ ବିଛାଇବ ଯେ ଏକୁଟିଆ ତା' କୋଠରୀକୁ ନ ଯିବାର ଗତିନାହିଁ । ମଧ୍ୟାହ୍ନ ଭୋଜନ ସମୟ ହେଉ ବା କାର୍ଯ୍ୟାଳୟ ସମୟ ଅତିକ୍ରାନ୍ତ ହେଉ, ତା'ର କୌଣସି ଲଜ୍ଜା ନାହିଁ । ମହିଳା କର୍ମଚାରୀଙ୍କୁ ଡାକରା ପଡ଼ିବ । ଏଣୁ ତେଣୁ ପ୍ରଶ୍ନ ପଚାରିବ । ପାଖରେ ଠିଆ କରାଇ ହାତ ଗୋଡ଼ ଛାଟିବ । କାର୍ଯ୍ୟାଳୟ ସାରା ସବୁ ଝିଅଙ୍କର ଏଇ ଅଭିଜ୍ଞତା । ଲାଜରେ କେହି ପ୍ରକାଶ କରି ପାରନ୍ତିନି । ନିଜ ନିଜ ମଧ୍ୟରେ ପରୋକ୍ଷରେ ଆଲୋଚନା କରନ୍ତି । ଅଭଦ୍ର ବୁଢ଼ାଟା ! ଘରେ ସ୍ତ୍ରୀ ଅଛି । ତଥାପି କାଙ୍ଗାଳିଆ ପ୍ରକୃତି ଛାଡୁନି । ସ୍ୱାମୀ ସଙ୍ଗେ କୌଣସି କାରଣରୁ ମନୋମାଳିନ୍ୟ ଘଟି ଏକୁଟିଆ ରହୁଥିବା ଟାଇପିଷ୍ଟ୍ ସଲୀଳାର ଅଭିଯୋଗ ଯୋଗୁଁ କାର୍ଯ୍ୟାଳୟର ସବୁ କର୍ମଚାରୀ ଓ ବାହାର ଲୋକେ ଜାଣିଲେ ଯେ ବୁଢ଼ାଟା ଦୁରଚାରୀ । ପ୍ରେସ୍‌ବାଲାଏ ବି ଜାଣିଲେ । ଜିଲ୍ଲାପାଳ ତଦନ୍ତ କଲେ । ବୁଢ଼ା ଦୁଇମାସ ଛୁଟିରେ ରହିବା ପରେ ପୁଣି କାର୍ଯ୍ୟାଳୟକୁ ଫେରିଲା । ଝିଅମାନଙ୍କୁ ଦେଖିଲେ ମୁରୁକି ହସା ଦେଲା ।

ବସ୍ତାଭଳି ମଣିଷଗୁଡ଼ା ଲଦି ହୋଇଗଲା ପରେ ଚାଲିଲା ଟ୍ରେକର୍ । ବାହାର

ପାଖ ରଡ୍ ଉପରେ ବସି ଟୋକାଟାଏ ଡ୍ରାଇଭରର ହାତ ଚାଳନାକୁ ଲକ୍ଷ୍ୟ କରୁଥାଏ । ଏତେ ଚୁଙ୍ଗାଚୁଙ୍ଗି ଭିତରେ ବି ଆଶ୍ୱସ୍ତ ହେଉଥାଏ ନୀରଜା ଯେ ଘରେ ପହଞ୍ଚି ହେବ । ପୁଅ କାନ୍ଦି କାନ୍ଦି ଥକି ପଡ଼ିବଣି । ମାଆ ବ୍ୟସ୍ତ ହେବଣି ।

ଅପେକ୍ଷାକୃତ ନିର୍ଜନ ଜାଗାରେ ଓହ୍ଲାଇଲେ ମଧ ଡର ଲାଗୁନଥିଲା ନୀରଜାକୁ । ଏଇଟା ତା'ର ନିତିଦିନିଆ ରାସ୍ତା । ଅନ୍ଧାର ସତ୍ତ୍ୱେ ଆବଡ଼ା ଖାବଡ଼ା ରାସ୍ତାରେ ଚାଲିବାକୁ ତା'ର ଅସୁବିଧା ହେଉନଥିଲା । ଅଧିକନ୍ତୁ ଅନ୍ୟଜଣେ ଛୋଟ ପିଲାକୁ ସିଏ ବାଟ କଢ଼ାଉଥିଲା । ସବୁ ବର୍ଷ ରାସ୍ତା ମରାମତି ବାବଦରେ କିଛି ଖର୍ଚ୍ଚହୁଏ । ତଥାପି ପଥଚାରୀଙ୍କ ପାଇଁ ରାସ୍ତାଟା ବିପଦସଙ୍କୁଳ । ଛୋଟ ପିଲାମାନେ ପଥରରେ ଝୁଣ୍ଟନ୍ତି । ସାଇକେଲ ଆରୋହୀ ଧକ୍କା ଖାଏ । ଟ୍ରକ୍ ଜିପ୍‌ର ବେଗ ପାଦଚଲା ମଣିଷଙ୍କ ଗତିଠାରୁ ଧିମେଇଯାଏ ଏବଂ ସମସ୍ତ ସତର୍କତା ସତ୍ତ୍ୱେ ଓଲଟି ପଡ଼ିବାର ଆଶଙ୍କା ବି ଥାଏ ।

କ୍ଳାନ୍ତ ଶରୀର ନେଇ ଘରେ ପହଞ୍ଚିଲା ବେଳକୁ ରାତି ସାତଟା । ସାନଭାଇ ନାହିଁ, ପୁଅ କାନ୍ଦୁଛି । ମାଆ ପାଟିକଲା, କୋଉଠି ଏତେବେଳଯାଏ ଥିଲୁ ? ପିଲାଟା ଜରରେ କମ୍ପୁଚି । ରାଗିଯିବାକୁ ଇଚ୍ଛା ହେଉଥିଲା ନୀରଜାର । ଅଧା ଓଦା ଲୁଗାଟାକୁ ପାଲଟି ଦାଣ୍ଡକୁ ଆସିଲା । ଭାଇର ଲୁନାଟା ଥୁଆ ହୋଇଛି । ସିଏ କିନ୍ତୁ ପାଖରେ ଦେଖାଯାଉନି । ପିଲାଟାର ଦାୟିତ୍ୱଜ୍ଞାନ ନାହିଁ । ବାହାରୁ ବୁଲି ଆସି ପୁଣି କୁଆଡ଼େ ଚାଲିଗଲା । ବଡ଼ ପାଟିରେ ଡାକିବାର ଇଚ୍ଛା ଥିଲେ ବି ଡାକି ପାରିଲାନି । ବିରକ୍ତିରେ ଅପେକ୍ଷା କରିବା ବ୍ୟତୀତ ବିକଳ୍ପ ନଥିଲା ।

ଡାକ୍ତରଙ୍କ ପାଖରୁ ଫେରିବା ବେଳକୁ ରାତି ଅନେକ । ମାଆ ଅପେକ୍ଷା କରିଥିଲା । ପୁଅକୁ ଔଷଧ ଦେବାପରେ ତା' ଜ୍ୱର ସାମାନ୍ୟ କମିବାଭଳି ଜଣାପଡୁଥିଲା । ନିଦ ହେଉ ନଥିଲା ନୀରଜାକୁ । ପଇସା ସରିଆସିଲାଣି ପାଖରୁ । ବି.ଡ଼ି.ଓ.ଙ୍କ ଖାସି ମାଂସ ଓ ଫୁଲମାଳ, ସ୍ୱାମୀଙ୍କ ଜମିକିଣା ନିଶା, ପୁଅର ଜ୍ୱର, ଦରମା ଉପର୍ଯ୍ୟୁପରି ଖର୍ଚ୍ଚ ଅଟକଳ ମଧ୍ୟରେ ସିଏ ସଙ୍କୁଚିତ ହୋଇ ପଡୁଥିଲା ।

ବି.ଡ଼ି.ଓ. ବୁଢ଼ା ରାଜ୍ୟସ୍ତରୀୟ ପୁରସ୍କାର ପାଇବା କଥା କେହି କଳ୍ପନା କରି ନଥିଲେ, ବିବେଚିତ ହେବା ତ ଦୂରର କଥା । କିନ୍ତୁ ଆଉ ଦୁଇଦିନ ବାକି ରହିଲା ପୁରସ୍କାର ବିତରଣ ସମୟ ।

ନୀରଜା ପାଖରେ ଟଙ୍କା ନାହିଁ । ଦାମୀ ଫୁଲମାଳ କିଣା ହୋଇ ଆସିବ କଟକରୁ । ତାକୁ ଫୁଲତୋଡ଼ା ପାଇଁ ବରାଦ ଦିଆହୋଇଛି ଯେ ! ଧାର ନେଲେ ବି ଚଳନ୍ତା, କିନ୍ତୁ ମିଳୁଛି କେଉଁଠି ? ଛୁଟି ନେବାକୁ ସ୍ଥିର କଲା ସେ । ପୁଅର ଅସୁସ୍ଥତା କାରଣ ଦର୍ଶାଯାଇପାରେ ।

ଛୁଟି ଦରଖାସ୍ତଟିକୁ ଡାକରେ ପଠାଇ ଦେଇ ସେ ଆଶ୍ୱସ୍ତ ହେଲା । ପରେ କାମରେ ଯୋଗ ଦେବ । ଦୁଇଦିନ ପରେ ସମ୍ବାଦପତ୍ର ଓଲଟାଇବାବେଳେ ବୁଢ଼ାର ଫଟୋ ଆଖିରେ ପଡ଼ିଲା ତା'ର । କେତେ ଫୁଲମାଳ ବେକରେ ଲମ୍ବାଇଛି ! ହସୁଥିବା ମୁହଁର ପ୍ରତିଛବି ବିରକ୍ତିକର । କିଛି ଚିନ୍ତା କରିପାରିଲାନି ସେ ।

କାମରେ ଯୋଗଦେବା ଦିନ ସେ ଖବର ପାଇଲା- ସବୁଠାରୁ ସୁନ୍ଦର ଫୁଲମାଳଟା ବୁଢ଼ା ନିଜେ କିଣିଥିଲା । ପୁଣି ଏକ ସମ୍ବର୍ଦ୍ଧନା ସଭାର ଆୟୋଜନ ହେଉଛି କାର୍ଯ୍ୟାଳୟ ଓ କ୍ଷେତ୍ର କର୍ମଚାରୀଙ୍କ ତରଫରୁ । ସେଦିନ କେତେ ଫୁଲମାଳ ଲମ୍ବିବ ସାର୍‌ଙ୍କ ବେକରେ ।

ନିର୍ବୋଧ ଭାବରେ ଚାହିଁଥିଲା ନୀରଜା । ପୁଣି କି ଦୁର୍ଭାଗ୍ୟ ତାକୁ ପ୍ରତୀକ୍ଷା କରିଛି, ଏହା ସେ ମନେ ମନେ ଚିନ୍ତା କରୁଥିଲା ।



# ପ୍ଲାଟ୍‌ଫର୍ମ୍‌ର ତିନି ବନ୍ଧୁ

ବାରରୁ ପନ୍ଦର ବର୍ଷ ମଧ୍ୟରେ ତିନିଜଣଙ୍କର ବୟସ । ପ୍ଲାଟ୍‌ଫର୍ମ୍‌ରେ ସେମାନଙ୍କର ଦେଖା ସାକ୍ଷାତ । ଆବଶ୍ୟକତା ଦୃଷ୍ଟିରୁ ହେଉ ବା ଦୈବାତ୍ ଭେଟାଭେଟି ଯୋଗୁଁ ହେଉ, କର୍ମସ୍ଥଳୀ ଗୋଟିଏ ପ୍ଲାଟ୍‌ଫର୍ମ୍ । କାର୍ଯ୍ୟ କରିବାର ସମୟ- ସୂର୍ଯ୍ୟୋଦୟ ହେଲେ ପ୍ରଥମ ଯାତ୍ରୀବାହୀ ଗାଡ଼ି ପ୍ରବେଶ କରିବା ପରଠାରୁ ସୂର୍ଯ୍ୟାସ୍ତ ପୂର୍ବରୁ ଶେଷ ରେଳଗାଡ଼ି ଛାଡ଼ିବା ପର୍ଯ୍ୟନ୍ତ । କେବେ କେବେ ଯେ କିଛି ବିଳମ୍ବ ନ ହୁଏ, ତା' ନୁହେଁ । ତେବେ ରେଳ ଚଳାଚଳର ସମୟ ନିର୍ଘଣ୍ଟ ଉପରେ ସେଇଟା ବେଶୀ ନିର୍ଭର କରେ । ଦେଖି ଦେଖି ଏତେ ଅଭ୍ୟସ୍ତ ହୋଇଗଲେଣି ଯେ, ଅନୁସନ୍ଧାନ ଝରକା ପଛପଟେ ବସିଥିବା ରେଳ କର୍ମଚାରୀଙ୍କ ଅପେକ୍ଷା ସେମାନେ ଅଧିକ ନିର୍ଭୁଲ ସମୟ ବତାଇ ଦେଇ ପାରନ୍ତି ପ୍ରଶ୍ନକର୍ତ୍ତାଙ୍କୁ ।

ଗାଡ଼ି ହର୍ଣ୍ଣ ଦେଲା । ଚଞ୍ଚଳ ହୋଇ ଉଠିଲେ ତିନି ବନ୍ଧୁ । କ୍ରିଷ୍ଣା ତା' ଷ୍ଟାଣ୍ଡ୍ ହାତରେ ଧରି ବ୍ୟାଗ୍ କାନ୍ଧରେ ପକାଇଲା । ଅଖା ବ୍ୟାଗ୍‌ରେ ଅଛି ବିଭିନ୍ନ ରଙ୍ଗର ପଲିସ୍, କ୍ରିମ୍, ରଙ୍ଗ ଓ ବ୍ରଶ୍ । ସୀତାଂଶୁର ବି ବ୍ୟାଗ୍‌ଟାଏ ଅଛି କନାର, ଯେଉଁଥିରୁ ବିଭିନ୍ନ ରଙ୍ଗର ପତ୍ରପତ୍ରିକା ମୁହଁ କାଢ଼ି ଉଙ୍କି ମାରୁଥାଆନ୍ତି । ପ୍ରତାପର କିନ୍ତୁ ଡାଲା, ବାଦାମ ଭର୍ତ୍ତି । ପ୍ଲାଟ୍‌ଫର୍ମ୍‌ରେ ଗହଳି ଥିବା ବେଳେ ତିନି ବନ୍ଧୁ କାମରେ ଲାଗିଯାଆନ୍ତି ପରସ୍ପରଠାରୁ ବିଚ୍ଛିନ୍ନ ହୋଇ । କ୍ରିଷ୍ଣା ଷ୍ଟାଣ୍ଡ୍ ଦେହରେ ବ୍ରଶ୍ ବାଡ଼େଇ ବାଡ଼େଇ ଡାକ ପକାଏ – 'ପଲିସ୍', 'ପଲିସ୍', 'ଜୋତା ପଲିସ୍' ଚମତ୍କାର ଜୋତା ବା ଚପଲ ପିନ୍ଧା ମଣିଷ ଜଣେ ଦେଖିଲେ ପଚାରେ, 'ସାବ୍ ପଲିସ୍' ! ଗ୍ରାହକ ଜଣେ ମିଳିଗଲେ ତଳେ ବସି କାମରେ ଲାଗିଯାଏ । ଗାଡ଼ି କୌଣସି କାରଣରୁ ଷ୍ଟେସନରେ ପଡ଼ି ରହିଲେ 'ପଲିସ୍' 'ପଲିସ୍' ଡାକ ଦେଇ ଧ୍ୟାନ ଭଙ୍ଗ କରାଏ ବିବ୍ରତ ଯାତ୍ରୀଙ୍କର । କେହି କେହି ହସନ୍ତି, କେହି କେହି ବିରକ୍ତ ହୁଅନ୍ତି । କ୍ରିଷ୍ଣାର ସେଥିପ୍ରତି ଖାତିର ନଥାଏ ।

ସୀତାଂଶୁ ମର୍ଯ୍ୟାଦାସମ୍ପନ୍ନ । ଗୋଟେ ଶାନ୍ତିନିକେତନ ମୁଣାରେ କିଛି ପାକ୍ଷିକ, ମାସିକ ପତ୍ରିକା ପୂରାଇ ଓ ହାତରେ କିଛି ଦୈନିକ ସମ୍ବାଦପତ୍ର ଧରି ଡାକିଚାଲେ । ଓଡ଼ିଆ, ହିନ୍ଦୀ, ଇଂରାଜୀ, ବେଙ୍ଗଲୀ ପତ୍ରିକାରୁ କିଛି ଧରି ନିଃସଙ୍ଗ, ଅର୍ଦ୍ଧଶିକ୍ଷିତ, ଶିକ୍ଷିତ

ଧନ୍ଦାନ୍ୱେଷୀ ବେକାର ବା ଗପ, କାର୍ଟୁନ୍ ପ୍ରିୟ ଛୋଟ ପିଲାଙ୍କ ସଙ୍ଗେ କାରବାର କରେ । ପୂର୍ବାହ୍ନରେ ବେଶି ବିକ୍ରି ହୁଏ ଦୈନିକ ଖବରକାଗଜ । ଅପରାହ୍ନରେ ପ୍ରାୟତଃ ପତ୍ରପତ୍ରିକା । ସେ ପାଠ ପଢ଼ିଛି ଷଷ୍ଠ ଶ୍ରେଣୀ ପର୍ଯ୍ୟନ୍ତ । ପ୍ଲାଟ୍‌ଫର୍ମରେ ଗାଡ଼ି ଲାଗିଲେ ଗୋଟେ ଡବା ନିକଟରୁ ଅନ୍ୟ ଡବାକୁ ଦୌଡ଼ିଯାଏ ଗ୍ରାହକ ପାଇବା ଆଶାରେ ।

ପ୍ରତାପ ଯାତ୍ରୀ ଗହଳିରେ 'ବାଦାମ୍', 'ଭଜା ବାଦାମ୍' ଡାକ ଛାଡ଼େ; ଗ୍ରାହକ ମିଳନ୍ତୁ ନ ମିଳନ୍ତୁ । ଟଙ୍କାଏ, ଦୁଇଟଙ୍କାର ବାଦାମ୍ ସହ ଲୁଣ ଲଙ୍କା ପୁଡ଼ିଆଟିଏ ବଢ଼ାଇ ଦେଇ ଆଗେଇଯାଏ । ବାଦାମ୍ ଓ ଲୁଣ ଲଙ୍କାର ପୁଡ଼ିଆ ଆଗରୁ ସଜଡ଼ା ଥାଏ । ଷ୍ଟେସନରେ ଡାଲା ସହ ବୁଲିବା ଛଡ଼ା ସ୍ଥାନୀୟ ବା ଦ୍ରୁତଗାମୀ ଚଳନ୍ତା ରେଳଗାଡ଼ିରେ ଡବା ଡବା ବୁଲି ବିକ୍ରି କରୁଥାଏ ସେଇ ଚିରାଚରିତ ଡାକ ସହ । ତେବେ ସେ ସେତିକି ଦୂର ଯାଏ, ଯେଉଁଠୁ ସନ୍ଧ୍ୟା ସୁଦ୍ଧା ଫେରି ବନ୍ଧୁମାନଙ୍କ ସହ ମିଶି ପାରିବ ।

ସେମାନଙ୍କ ନିର୍ଦ୍ଧାରିତ ଟ୍ରେନ୍ ଛାଡ଼ିବା ପରେ ତିନିବନ୍ଧୁ ମିଶି ସିମେଣ୍ଟ ବେଞ୍ଚ୍ ଉପରେ ବସି ବ୍ୟାଗ୍‌ମାନ ଥୋଇ ହିସାବ କରନ୍ତି ବେପାର କେତେହେଲା । ସୀତାଂଶୁ ଯାଏ ପତ୍ରିକା ଫେରାଇବା ପାଇଁ । କ୍ରିଷ୍ଣା ପଲିସ୍‌ର ଡବା ଖୋଲି କେତେ ଶେଷ ହୋଇଛି ଦେଖେ । ପ୍ରତାପ ବଳକା ବାଦାମ୍‌କୁ ଜରିରେ ପୂରାଏ । କାହାର ରୋଜଗାର କମ୍ ହୋଇଥିଲେ ଅନ୍ୟ ଦୁଇଜଣ ଆଗ୍ରହ ସହକାରେ ବନ୍ଧୁକୁ ସାହାଯ୍ୟ କରନ୍ତି । ଶସ୍ତା ହୋଟେଲ୍‌ରେ କେବେ କେବେ ଭୋଜି କରନ୍ତି । ସାଦା ଭୋଜି । ପଇସା ବେଶି ହେଲେ ମାଛ ବା ମାଂସ । ସୀତାଂଶୁ ମାଂସପ୍ରିୟ । ପ୍ରତାପ, କ୍ରିଷ୍ଣା ତାକୁ ସମର୍ଥନ କରନ୍ତି ।

ଏହାପରେ ପ୍ରସ୍ଥାନ ପର୍ବ । ପ୍ରତାପ ଯାଏ ଗୋଦାମ୍‌କୁ ବାଦାମ୍ କିଣିବା ପାଇଁ । ଲାଭକୁ ଅଲଗା କରି ସେଥିରେ ସାନ ଭଉଣୀ ମୁନି ପାଇଁ କେବେ ବିନ୍ଦି, ତେଲ, ନଖପଚା, ରବର କିଣିନିଏ । ଘରେ ପହଞ୍ଚୁ ପହଞ୍ଚୁ ରାତି ନ'ଟା । ଉଦ୍‌ବିଗ୍ନ ଅବସ୍ଥାରେ ଅନାଇ ରହିଥାଆନ୍ତି ମା' ଓ ଭଉଣୀ । ଏତେ ଡେରି କାହିଁକି କରୁଚୁ ଭାଇ ବୋଲି ଭଉଣୀ ପ୍ରଶ୍ନ କରେ । ବୋଉ ବ୍ୟସ୍ତ ହୁଏ । ବେଳେବେଳେ କାନ୍ଦି ପକାଏ । ପ୍ରତାପ ଆଗେ ବୁଝି ପାରୁନଥିଲା । ଏବେ ବୁଝି ପାରିଲାଣି ବୋଉର ଅସହାୟତା । ଏକମାତ୍ର ଅଳ୍ପବୟସ୍କ ପୁଅର ସ୍ୱଳ୍ପ ରୋଜଗାରରେ ପ୍ରତିପାଳିତ ହେବାର ଦୈନ୍ୟ । କିନ୍ତୁ ଗତ୍ୟନ୍ତର ବି କ'ଣ ? ପାଖ ଘରେ ଶୋଇଥିବା ମାଉସୀର ଏଇ ଘରଟା । ବାପା ଦ୍ୱାରା ଉପେକ୍ଷିତା ହୋଇ ମାତ୍ର ପାଞ୍ଚ ବର୍ଷ ବ୍ୟବଧାନ ମଧ୍ୟରେ ପୃଥିବୀଟା ଓଲଟି ପଡ଼ିଛି ବୋଉ ପାଇଁ, ପ୍ରତାପ ପାଇଁ ଆଉ ସାନ ଭଉଣୀ ପାଇଁ ବି । ସୁଦିନ ଅପେକ୍ଷା ଦୁର୍ଦ୍ଦିନର ସମ୍ମୁଖୀନ ହୋଇଛନ୍ତି ସେମାନେ ବେଶି । ତାକୁ ସେମାନେ ଆପଣେଇ ନେଇଛନ୍ତି । ବାପା ନାମକ

ମଣିଷ ଜଣକୁ ଯେଉଁଦିନଠାରୁ ପ୍ରତାପ ଜାଣିଲା ସେଇଦିନଠାରୁ ତାଙ୍କୁ ସେ ଅତିଥି ଭାବି ନେଇଥିଲା । ଗୃହ ଆଗମନ ଖୁବ୍ କମ୍ । ଯେବେ ଆସିଲେ ବୋଉ ଉପରେ ବିରକ୍ତି; ଅନାକାଂକ୍ଷିତ ବ୍ୟକ୍ତି ପରି ବ୍ୟବହାର । ଦୟା ପ୍ରଦର୍ଶନ କରିବାର ହାବଭାବ । ପ୍ରତାପ ଓ ସୁନିଙ୍କୁ କିଛି କହୁ ନଥିଲେ । ମାସକୁ ମାସ ଚଳିବା ପାଇଁ ଖର୍ଚ୍ଚ ଦେଇଯାଉଥିଲେ ଯାହା । ସେତେବେଳେ ସମୟ କୋଉଠି କଟାଉଥିଲେ ବାପା ? ଏଇ ମାଉସୀ ଘରେ ନୁହେଁ ତ ! ବୋଧହୁଏ ହଁ । କାରଣ ସିଏ ମଝିରେ ମଝିରେ ବାପାଙ୍କ ସାଙ୍ଗରେ ଆସୁଥିଲେ । ଦିନେ ଦୁଇଦିନ ରହୁଥିଲେ । ତା'ପରେ ଫେରି ଯାଉଥିଲେ- ବାପା ବି । ସିଏ ବାପାଙ୍କ ଛାଇ ପାଲଟି ଯାଇଥିଲେ, ନା ବାପା ତାଙ୍କର ! ଅଳ୍ପ ବୟସରେ ବୈଧବ୍ୟ ଯନ୍ତ୍ରଣା ଭୋଗୁଥିବାରୁ ସାହାଯ୍ୟ ଓ ସାହଚର୍ଯ୍ୟ ପାଇଁ ଜଣେ ମଣିଷ ତାଙ୍କର ଦରକାର ଥିଲା । ସେଇ ମଣିଷ ବାପା । ପରିବର୍ତ୍ତନରେ ବିଶ୍ୱାସୀ ଓ ସଦା ଅସନ୍ତୁଷ୍ଟ । ମାଉସୀଙ୍କ ସ୍ୱାମୀ କର୍ତ୍ତବ୍ୟରତ ଅବସ୍ଥାରେ ଦୁର୍ଘଟଣାର ଶିକାର ହୋଇ ମୃତ୍ୟୁବରଣ କରିଥିବାରୁ ଉତ୍ତରାଧିକାରୀଙ୍କ ପାଇଁ ଛାଡ଼ି ଯାଇଥିଲେ ମୋଟା ଅଙ୍କର ଅନୁଦାନ । ଗୋଟେ ଘର, ପରିବାର ଭତ୍ତା ଓ ଅନୁକମ୍ପାମୂଳକ ଚାକିରି ଖଣ୍ଡିଏ । ନିଃସନ୍ତାନ ମାଉସୀ ଚାଲି ଆସିଥିଲେ ତା' ବାପାର ବଳୟ ଭିତରକୁ । ଅଭିନୟକୁ ସତ ବୋଲି ଗ୍ରହଣ କରିନେଇଥିଲେ । ଆଉ ବାପା, ପିଆଇ ଚାଲିଥିଲେ ସପନର ମଦ । ନିଶାଗ୍ରସ୍ତ ଅବସ୍ଥାରୁ ଚେତନା ଫେରି ପାଇବା ବେଳକୁ ପ୍ରତାପ, ବୋଉ, ସୁନି ବାଧ ଭାବେ ମାଉସୀର ସେଇ ଛୋଟ ଘରେ ଖୁନ୍ଦି ହୋଇ ଯାଇଥିଲେ । ବାପା ପାଇଁ ଆଉ ଜାଗା ନଥିଲା । ସେ ନିଜେ ଛିଟିକି ବାହାରି ଯାଇଥିଲା ଗୋଟେ ଡକାୟତ ଭଳି । ଦାନବରେ ପରିଣତ ହୋଇ ଯାଇଥିଲା ସିଏ । ମଦ ପିଉଥିଲା ସଚେତନ ବା ଅଚେତନ ଭାବେ । ରକ୍ତ ପିଉଥିଲା ଗୋଟେ ନିର୍ବୋଧ ଝିଅର । ରହୁଥିଲା ଆଉ ଗୋଟେ ସହରରେ । ରାଜସ୍ୱ ଆଦାୟ କରାଯାଉଥିବା ଗୋଟେ ବିଭାଗର ଚାକିରି କରିଥିବା ହେତୁ ଆହାର ପରିତ୍ୟାଗ କରି ଟଙ୍କା ସବୁ ଗିଳି ପକାଉଥିଲା । ସୁଖରେ ରଖିଛି ବୋଲି ମିଥ୍ୟା ଆଶ୍ୱାସନା ଦେଇ ଗୋଟେ ଘରେ ବନ୍ଦୀକରି ରଖିଥିଲା; ସାମାଜିକତାର ଗନ୍ଧ ତା'ଠୁ ପୋଛି ନେଇଥିଲା । ମାଉସୀ ଓ ବୋଉକୁ ଠିକ୍ ଶିକ୍ଷା ଦେଇଛି ବୋଲି ହସୁ ହସୁ ରଙ୍ଗୀନ୍ ଚଷମା ତଳେ କାନ୍ଦି ପକାଉଥିଲା ।

ମାଉସୀ ବର୍ଷେ ଗୋଟିଏ ଦୁଇଟି ଠିକ୍ ଭାବେ କାମକୁ ଯାଉଥିଲା । ମାନସିକ ଭାରସାମ୍ୟ ହରାଇ ଅସୁସ୍ଥ ହୋଇପଡ଼ିଲା ସିଏ ।

ପ୍ରତାପ ଦିନେ ଯାଇଥିଲା ସେଇ ସହରକୁ ବୋଉ ସହିତ । ଗଳି ଗୁଡ଼ାକ ଅପରିଷ୍କାର, ରାସ୍ତା ଆବଡ଼ା ଖାବଡ଼ା । ଗହଳ ଚହଳ କମ୍ । ବସା ଘର ସାମ୍ନାରେ ଥିବା ଜଳଖିଆ ଦୋକାନର ମାଟି ଚଟାଣରେ ପିମ୍ପୁଡ଼ି ଓ ଜନ୍ଦାମାନଙ୍କର ରାଜତ୍ୱ । ଗରାଖମାନେ

ଅପରିଷ୍କାର ଲୁଗାପଟା ପିନ୍ଧି ମଳିନ ଦିଶୁଥିଲେ । ଯେଉଁ ଗଛର ଛାଇ ତା' ଉପରେ ପଡୁଥିଲା ସେଥିରୁ ପାଚିଲା ବରଫଳ ଖସୁଥିଲା । ଭଙ୍ଗା ଆଜ୍‌ବେଷ୍ଟସ୍ ଛାତରୁ ଟୋପା ଟୋପା ପାଣି ଖସୁଥିଲା । ବୁଡ଼ିଯାଉଥିବା ସୂର୍ଯ୍ୟଙ୍କ କିରଣ ନେସି ହୋଇଯାଉଥିଲା ଛାତରେ । ଉଦ୍ଦିଷ୍ଟ ବାସଘର କବାଟ ଫାଙ୍କରୁ ଯେଉଁ ଝିଅଟି ମୁହଁ କାଢ଼ି ଦେଖିଲା ସିଏ ବୋଧହୁଏ ପ୍ରତାପଠାରୁ ସାତ ଆଠବର୍ଷ ବଡ଼ ହୋଇପାରେ । ପରିଚୟ ପାଇବା ପରେ ମୁହଁଟା ତା'ର ଶୁଖିଗଲା । କ'ଣ କଥାଭାଷା କରିବ ବୁଝି ପାରିଲାନି । ତଥାପି ବୋଉ ବସି ରହିଲା ବାପା ଆସିବା ଯାଏଁ । ଏଣୁ ତେଣୁ ଗପି ଗପି ବାପା ଆସିଲା । ତା' ଆଖି ଲାଲ୍ ଦେଖାଯାଉଥିଲା । ସିଏ ବୋଧହୁଏ ଖଟରେ ଗଡ଼ି ପଡ଼ିଥାଆନ୍ତା ବା ସେଇ ଝିଅଟାକୁ କିଛି କରିବାକୁ ବରାଦ କରିଥାଆନ୍ତା । ମାତ୍ର ସ୍ତ୍ରୀ ଓ ପୁଅକୁ ଦେଖି ମୁଣ୍ଡର ତନ୍ତ୍ରୀଗୁଡ଼ାକ ଏପଟ ସେପଟ ହୋଇଗଲା । ବକି ଚାଲିଲା ଅଶ୍ରାବ୍ୟ ଭାଷାରେ ସ୍ତ୍ରୀକୁ । କୁକୁରୀ, ଯଦି ଏଠିକୁ ଆସିବୁ ତୋ' ହାତ ଗୋଡ଼ ଭାଙ୍ଗିଦେବି । ଟଙ୍କା ଦେବି ? କିଛି ଦେବିନି । ପ୍ରତାପ ବା ସୁନିକୁ ତା' ପିଲାଭାବେ ଭରଣପୋଷଣର କିଛି ଦାୟିତ୍ୱ ଅଛି ବୋଲି ସେ ସ୍ୱୀକାର କରୁନଥିଲା । ପ୍ରତାପର ପ୍ରତିବାଦ କରିବାର ବୟସ ହୋଇନଥିଲା । ଦଶ ବାରବର୍ଷର ପିଲାଟା ବାପାର ଏପରି ଅଶୋଭନୀୟ ଆଚରଣ ପାଇଁ କ'ଣ ବା ପ୍ରତିବାଦ କରି ପାରନ୍ତା ? ମାଆକୁ ଚୁପ୍ କରାଇ ଫେରି ଆସିଲା ସେଇ ଘରକୁ । ସେଇଦିନୁ ପ୍ରତାପ ଆଉ ଯାଇନି । ଷ୍ଟେସନ୍‌କୁ ଆସୁଚି ବାଦାମ୍‌ର ଡାଲାଧରି ଦୈନନ୍ଦିନ କର୍ମ ପରି, ମିଶୁଛି କ୍ରିଷ୍ଣା ଓ ସୀତାଂଶୁ ସହ । କ୍ରିଷ୍ଣା ସହ ପରିଚୟ ସ୍କୁଲରେ ପଢୁଥିବା ସମୟରୁ ।

କ୍ରିଷ୍ଣା ତେଲ୍‌ଗୁ ସମ୍ପ୍ରଦାୟର । ତା' ବାପା ମଜୁରୀ କରେ । ମାଆ ଗଳି ଗଳି ବୁଲି ପରିବା ବିକେ । କେବେ କେବେ ଦୈନିକ ହାଟରେ ତେନ୍ତୁଳି ବା ଆମ୍ବୁଲ ସହ ତାକୁ ଦେଖିବାକୁ ମିଳେ । ମାଆ ପାଖରେ ଖେଳୁଥାଏ କ୍ରିଷ୍ଣା । ପାଦଚଲା ରାସ୍ତାରେ ଖୋଲିଥିବା ଦୋକାନସବୁକୁ ପିଇଗଲା ଭଳି ଦେଖୁଥାଏ । ତା' ଦେହରେ ଚିରା ଫଟା ଜାମା । ତେଣୁ ଶ୍ରେଣୀରେ ପଛ ଧାଡ଼ିରେ ବସେ । ବହିପତ୍ରରେ କିଛି ଠିକଣା ନଥାଏ ବା ସ୍କୁଲ ପଢ଼ା କରିବାକୁ ମନେ ନଥାଏ । ମାଡ଼ ଖାଏ ସାର୍‌ଙ୍କଠାରୁ । ଅଳ୍ପ ସମୟ ପାଇଁ କାନ୍ଦିଲେ ବି ଖେଳଛୁଟି ବେଳକୁ ସବୁ ଭୁଲି ଯାଇଥାଏ । ମାଆ ପସରାରୁ ଲୁଚାଇ ଆଣିଥିବା ତେନ୍ତୁଳିର ପ୍ରଲୋଭନ ଦେଖାଇ ସାଙ୍ଗମାନଙ୍କଠାରୁ ଜଳଖିଆ ଖାଏ । ପଇସା ପାଇଲେ ଇଡ଼ଲି, ଘୁଗୁନି ସାଙ୍ଗମାନଙ୍କ ମଧ୍ୟରେ ବାଣ୍ଟେ । ଖସି ଯାଉଥିବା ପ୍ୟାଣ୍ଟକୁ ମୋଡ଼ିଦେଇ ଦଉଡ଼େ ଖୁବ୍ ଜୋର୍‌ରେ । ତାକୁ କେହି ଛୁଇଁ ପାରନ୍ତି ନାହିଁ ଖେଳରେ । ସରସ୍ୱତୀ ବା ଗଣେଶ ପୂଜାରେ ଘଣ୍ଟା ବାଡ଼େଇବାକୁ ବା ବିସର୍ଜନ ବେଳେ ମୂର୍ତ୍ତି କାନ୍ଧେଇବାକୁ ଆଗଭର ହୁଏ । ଉପର ପତା ଓଲଟାଇ ପିଲାମାନଙ୍କୁ ଡରାଏ । ମାଆର

ମାଡ଼ ଡରରେ ସ୍କୁଲକୁ ଯାହା ଆସେ । ଛୁଟି ମିଳିଲେ ଗୁଲି ଖେଳେ; ଗୁଡ଼ି ଉଡ଼ାଏ, ବନ୍‌ଶୀ ତିଆରି କରେ, ପାଣିରେ ପହଁରେ । ସତକଥା କହିବାକୁ ଗଲେ ସ୍କୁଲକୁ ଯିବାକୁ ତା'ର ଜମା ଇଚ୍ଛା ନଥାଏ ।

ଗୋଟେ ସରକାରୀ କ୍ୱାର୍ଟରରେ ଖାଲି ଜାଗାରେ ମାଟି, ବାଉଁଶ ତିଆରି ଚାଳଘରେ ଜନ୍ମ ହୋଇଥିବା ଓ ଶିକ୍ଷା ନିମନ୍ତେ ସମସ୍ତ ପ୍ରତିକୂଳ ପରିବେଷ୍ଟନୀ ମଧ୍ୟରେ ଉନ୍ମେଷ ନିମନ୍ତେ ଚେଷ୍ଟା କରୁଥିବା କ୍ରିଷ୍ଣା ପାଇଁ ପ୍ରତୀକ୍ଷା କରୁଥିଲା ବିଶେଷ ଦୁର୍ଭାଗ୍ୟ । ଗୋଟେ ଦୁର୍ଘଟଣାରେ ତା'ବାପାର ମୃତ୍ୟୁ ହୋଇଗଲା । ଦୁଃଖରେ ଅଭିଭୂତା ମାଆକୁ କିଛିଦିନ ପର୍ଯ୍ୟନ୍ତ ଦୈନନ୍ଦିନ ହାଟ ବା ଗଳିରେ ଦେଖିବାକୁ ମିଳିଲାନି । ସ୍କୁଲରେ ପଢୁଥିବା ପିଲାମାନେ କ୍ରିଷ୍ଣାର ବୀରତ୍ୱ ବା ଆଚାର ପାଇଁ ବହୁଦିନ ଧରି ଅପେକ୍ଷା କଲେ । ଗଣେଶ ପୂଜା ପରେ ଦୁର୍ଗାପୂଜା ଆସିଲା । ମକର, ପ୍ରଥମାଷ୍ଟମୀ, ଗୁରୁଜୀଙ୍କ ଅସୁସ୍ଥତା, ପରିଦର୍ଶକଙ୍କ ଅଚାନକ ଆଗମନ, ପିଲାମାନଙ୍କର ନିମ୍ନମାନର ଉତ୍ତର ପ୍ରଦାନ, ଅଭିଭାବକମାନଙ୍କର ବିରକ୍ତି, ସବୁ ଶେଷ ହେବାପରେ ପୁଣି ସରସ୍ୱତୀ ପୂଜା । କ୍ରିଷ୍ଣା ବିଦ୍ୟାଳୟ ବାରଣ୍ଡା ଉଠିଲାନି । ସମସ୍ତେ ତାକୁ ଭୁଲି ଯାଉଥିବାବେଳେ ତା'ର ପୁଣି ଦେଖାହେଲା ପ୍ଲାଟ୍‌ଫର୍ମରେ । ବାପର ପୁଅ ସ୍କୁଲକୁ ପଢ଼ିବାକୁ ଯାଉଥିଲା; ମାଆର ପୁଅ ପ୍ଲାଟ୍‌ଫର୍ମକୁ ଗଲା । ବ୍ୟାଗ୍ ଭିତରେ ବହି, କାଗଜ, କଲମ ପରିବର୍ତ୍ତେ ଜୋତା ସଫା କରି ଚକ୍ ଚକ୍ କରିବାର ସରଞ୍ଜାମ । କ୍ରିଷ୍ଣା ନିଜକୁ ଖୁବ୍ ସ୍ୱାଧୀନ ମନେକଲା । ମିଳୁଥିବା ମଜୁରୀରୁ ମୁଖ୍ୟ ଅଂଶଟି ଖାଇବା ନିମନ୍ତେ ଖର୍ଚ୍ଚକରି ବାକି ପଇସା ମାଆ ହାତକୁ ଧରାଇ ଦେଉଥିଲା । ବାପା ମରିବାର ବେଶ୍ କିଛିଦିନ ପରେ ଗଳିରେ ପରିବା ଓ ଉପରବେଳା ଦୈନିକ ହାଟରେ ତେନ୍ତୁଳି ବିକିବାକୁ ଆରମ୍ଭ କଲା କ୍ରିଷ୍ଣାର ମାଆ । ସ୍ୱାମୀର ବନ୍ଧୁ ରାଜେଶ୍ ନାଇଡୁ ଆସିଲେ ସ୍ୱାଗତ ଜଣାଇଲା । ତା' ରିକ୍ସାରେ ବସି କେବେ କେମିତି ମାଟିନି ସୋ ସିନେମା ଦେଖିବାକୁ ଗଲା । କ୍ରମେ କ୍ରମେ ନାଇଡୁ ପାଇଁ ରୋଷେଇର ବ୍ୟବସ୍ଥା କରାଗଲା । ନାଇଡୁ ବି ବାକି ଜୀବନ ସେଠି ରହିବାକୁ ଅସମ୍ମତି ପ୍ରକାଶ କରି ନଥା'ନ୍ତା, ଯଦି ସେଇ ଚାଳ ଓ ମାଟିର ଘର ବର୍ଷା ଯୋଗେ ଭୁଷୁଡ଼ି ପଡ଼ି ନଥା'ନ୍ତା । ଏବେ ଅନ୍ୟ ଉପାୟ ନଥିଲା । ମାଆ ପୁଅ ଚାଲିଲେ ରାଜେଶ୍ ନାଇଡୁର ନର୍ଦ୍ଦମା ପାର୍ଶ୍ୱବର୍ତ୍ତୀ ଭଙ୍ଗା ଚାଳଘରକୁ । ସେଇ ଘରଟା ବସ୍ତିର ଶେଷ ଆଡ଼କୁ ଥିଲା ଓ ତା' ପାଖାପାଖି ରହୁଥିଲେ ପୁରୁଣା ପୋଷାକପତ୍ର କିଣି ଷ୍ଟିଲ ବାସନ ବଦଳ କରୁଥିବା ରେଖା ବେରା, କୁଳା, ବେତା, ବୋଝର ବୁଣାଳୀ ଅପର୍ତ୍ତି ନାୟକ । ଗୁଣ୍ଡ କୋଇଲା ଗୋବର ମିଶାଇ ଜାଳେଣୀ ପ୍ରସ୍ତୁତ କରୁଥିବା ସଞ୍ଜୁ ମଣ୍ଡଳ, ପାନ, ବିଡ଼ି, ସିଗାରେଟ୍, ଦୋକ୍ତା କ୍ୟାବିନ୍‌ବାଲା ହରି ସାହୁ, ରଦି ଲୁହା ପ୍ଲାଷ୍ଟିକ୍ ସଂଗ୍ରହ କରୁଥିବା

ରାମ ଅବତାର, ଟ୍ରକ୍ କୁଲି ହଳଧର, ରାମେୟା, ସୁବାରାଓ, ଦାମ, ସୁକାନ୍ତି ପ୍ରଭୃତି ।

ସକାଳ ଆଠଟାରୁ ସନ୍ଧ୍ୟା ଛଅଟା ପର୍ଯ୍ୟନ୍ତ ରାଜୁ ନାଇଡୁ କୁଡ଼ିଆଟା ଚୁପ୍‌ଚାପ୍ ଶୋଇଯାଉଥିଲା । ରିକ୍ସାରେ ଲକ୍ଷ୍ମୀ ବୋଝ ସହ ବସୁଥିଲା ରାଜକୀୟ ଠାଣିରେ । ରାଜୁ ତାକୁ ଟାଣି ନେଉଥିଲା ପରିବା ଗଦି ନିକଟକୁ । ତା' ପରେ ସେ ଚାଲିଯାଉଥିଲା ଭଡ଼ା ସନ୍ଧାନରେ । କ୍ରିଷ୍ଣା ଯାଉଥିଲା ବ୍ୟାଗ୍ କାନ୍ଧରେ ପକାଇ ଷ୍ଟେସନ ପ୍ଲାଟ୍‌ଫର୍ମକୁ । ରାସ୍ତା କଡ଼ରେ ବିକ୍ରି ହେଉଥିବା ଇଡ଼୍‌ଲି ବା ଚକୁଳିରେ ତା'ର ଚଳିଯାଉଥିଲା ।

ଦ୍ୱିପ୍ରହର ଭୋଜନଟା ସମସ୍ତଙ୍କର ବାହାରେ । ସର୍ବପ୍ରଥମେ ଲକ୍ଷ୍ମୀ କୁଡ଼ିଆକୁ ଫେରିଆସି ରୋଷେଇ ବସାଉଥିଲା ଓ କ୍ରିଷ୍ଣାକୁ ଅପେକ୍ଷା କରୁଥିଲା । କ୍ରିଷ୍ଣା ପୁଣି ସ୍କୁଲକୁ ଯାଆନ୍ତା ଓ ପାଠ ପଢ଼ନ୍ତା ବୋଲି ଲକ୍ଷ୍ମୀ ଚାହୁଁଥିଲା । ରାଜୁର ଏ ବିଷୟରେ କିଛି ମତାମତ ନଥିଲା । କ୍ରିଷ୍ଣା କିନ୍ତୁ ପ୍ରଥମରୁ ପାଠ ପଢ଼ିବାକୁ ଅମଙ୍ଗ । ପ୍ଲାଟ୍‌ଫର୍ମରୁ ଫେରି ଖାଇଦେଉଥିଲା ଓ ଶୋଇପଡୁଥିଲା । ରାଜୁ ଫେରିବାର କିଛି ଠିକଣା ନଥାଏ । ଯାହା ହେଲେ ରାତି ଦଶ ସାଧାରଣ କଥା । ଜଗି ବସିଥାଏ ଲକ୍ଷ୍ମୀ, ନଚେତ୍ ପାଟି କରିବ । ଅଶ୍ଳୀଳ ଭାଷାରେ ଗାଳିଦେବ । କ୍ରିଷ୍ଣା ଉପରେ ବିରକ୍ତି ପ୍ରକାଶ କରିବ । ମାଆ ପୁଅକୁ ବାହାର କରିଦେବାର ଧମକ ଦେବ । ମାତ୍ର ଲକ୍ଷ୍ମୀର ଟିକିଏ ସୋହାଗରେ ସବୁ ଭୁଲିଯିବ ଓ ଖାଇବାକୁ ବରାଦ କରିବ ।

ଲକ୍ଷ୍ମୀର ଆଉ ଗୋଟେ ପୁଅ ହେଲା । ରାଜୁ ସଞ୍ଚୟ କରିଥିବା ଟଙ୍କାରେ ଗୋଟେ ଉତ୍ସବ ଯୋଗାଡ଼ କରିବାରେ ଲାଗିଗଲା । କ୍ରିଷ୍ଣା କିନ୍ତୁ ଦିନକୁ ଦିନ ଅବସନ୍ନ ଦେଖାଗଲା ଓ ବନ୍ଧୁମାନଙ୍କୁ ତା'ର ଗୋଟେ ଭାଇ ହୋଇଥିବା ଖବରଟା ଜଣାଇବାକୁ ସଙ୍କୋଚ କରୁଥିଲା । ଟିକି ପିଲାଟିକୁ ଦେଖି ଅବଶ୍ୟ ତା'ର ଖୁବ୍ ଦୟା ହେଉଥିଲା । ମଝିରେ ମଝିରେ ତା' ପାଇଁ ଗୋଟେ ଖେଳନା କିଣି ନେଉଥିଲା ଓ ରାତିରେ ମାଆ କାମ କଲାବେଳେ ତାକୁ ଜଗି ରହୁଥିଲା ବା ତାକୁ ଖେଳାଇବାକୁ ଚେଷ୍ଟା କରୁଥିଲା । କିନ୍ତୁ ନାଇଡୁ ଘରେ ପ୍ରବେଶ କଲାମାତ୍ରେ ସେ ଶୋଇ ପଡ଼ିବାର ବାହାନା କରୁଥିଲା । ସତ କହିବାକୁ ଗଲେ କ୍ରିଷ୍ଣା ତାକୁ ମୋଟେ ବାପା ବୋଲି ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲା । ଅଧିକନ୍ତୁ, ଘୃଣା କରୁଥିଲା କହିଲେ ଠିକ୍ ହେବ ।

ପ୍ରଥମ ଟ୍ରେନ୍ ପ୍ରବେଶ ପୂର୍ବରୁ ବା ଶେଷ ଟ୍ରେନ୍ ଅପସରି ଯିବାପରେ ତିନି ବନ୍ଧୁ ଯେତେବେଳେ ଟିକିଏ ଖୁସି ଗପରେ ମାତି ଯାଉଥିଲେ, ପ୍ରତାପ ଅତି ଅଭଦ୍ର ଭାଷାରେ ଗାଳି ଦେଉଥିଲା ତା' ବାପାକୁ । ସେଥିରୁ ଆନନ୍ଦ ପାଉଥିଲା । ନାଇଡୁର ସପ୍ତପୁରୁଷ ଉଦ୍ଧାର କରୁଥିଲା କ୍ରିଷ୍ଣା । ସୀତାଂଶୁ କିନ୍ତୁ ଏଇ ପ୍ରସଙ୍ଗରେ ସଦାବେଳେ ଚୁପ୍‌ଚାପ୍ । ସେ ତା'ର ବାପାକୁ କେବେ ଦେଖିନି ବା ମାଆକୁ ଏ ବିଷୟରେ କିଛି ପଚାରିନି ।

ସୀତାଂଶୁ ପ୍ଲାଟ୍‌ଫର୍ମରେ ପତ୍ରିକା ବିକିବା ପୂର୍ବରୁ ମାଆ ସହିତ ଆଉ ଗୋଟେ ଷ୍ଟେସନ୍ ନିକଟ ନୁଆଁଣିଆ ଘରେ ରହୁଥିଲା । ତାଙ୍କପରି ଆଉ ଅନେକ ବି ରହୁଥିଲେ । ସବୁ ଘରର ଛାତରେ ଛଣ, ଭଙ୍ଗାଟିଣ ବା ତାର୍ପୋଲିନ୍, ରଦି ଟିଣକୁ କଣ୍ଟାବାଡ଼େଇ ଗୋଟେ ଫ୍ରେମ୍ ମଧ୍ୟରେ କବାଟର ରୂପ ଦିଆଯାଇଥିଲା । ସବୁ ଘର ଆଗରେ ଗୁଣ୍ଡ କୋଇଲାର ବସ୍ତା । ସମସ୍ତଙ୍କ ମାତୃଭାଷା ସମାନ; ବଙ୍ଗଳା । ଜୀବିକା ସମାନ । କୋଇଲା ଖାଲି କରାଯାଇଥିବା ମାଲ୍‌ଡବାରୁ ଅବଶିଷ୍ଟ ଗୁଣ୍ଡ ସଂଗ୍ରହ । ସମୟ ଓ ସୁବିଧା ପାଇଲେ ଭରା ଡବାରୁ ମାଲ୍ ଉତରା । ସୁରକ୍ଷା କର୍ମଚାରୀଙ୍କ ସମ୍ମୁଖରେ ପଡ଼ିଲେ କିଛି ଲାଞ୍ଚ ପ୍ରଦାନ ବା ଅହେତୁକ ଦୈନ୍ୟ ପ୍ରକାଶ କରି ଖସିଯିବାର ବିଭିନ୍ନ ଉପାୟ ।

ସକାଳୁ ସକାଳୁ ଖିଆ ଶେଷ କରି ବାହାରି ପଡ଼ନ୍ତି ଦଳ ଦଳ । ଯୋଉ ପ୍ରଥମ ଟ୍ରେନ୍ ମିଳେ ସେଥିରେ ଚାଲି ଯାଆନ୍ତି ଉଦ୍ଦିଷ୍ଟ ଷ୍ଟେସନ୍‌କୁ । ଖାଲି ଡବା ବିଶିଷ୍ଟ ଟ୍ରେନ୍ ଠିଆ ହୋଇଥିଲେ ଖୁସିରେ ମାଡ଼ି ଯାଆନ୍ତି ଦେଖିବାକୁ - କୋଇଲା ଉଝୁଡ଼ା କି ନା ! ଗୁଣ୍ଡକୁ ଝାଡ଼ୁରେ ଓଳାଇ ଅଖାରେ ଭର୍ତ୍ତି କରନ୍ତି । ପାଖ ବଜାରରେ ଜଳଖିଆ ଦୋକାନରେ କେହି ପାଣି ଦେଇ ବକ୍ତିଏ ଭୋଜନ ବ୍ୟବସ୍ଥା କରନ୍ତି; ତା'ପରେ ଫେରନ୍ତା ଗାଡ଼ିକୁ ଅପେକ୍ଷା ।

ମାଆ ଜୀବିକାରେ ଗଲାବେଳେ ସୀତାଂଶୁ ମୁଖ୍ୟତଃ ଗୋଟେ ବୁଢ଼ୀ ପାଖେ ରହୁଥିଲା । ସ୍କୁଲରୁ ଫେରି ତା' ହେପାଜତରେ ଖାଉଥିଲା । ସମବୟସ୍କ ପିଲାମାନଙ୍କ ସଙ୍ଗେ ଖେଳୁଥିଲା ଓ ମାଆ ଆସିବାକୁ ଅପେକ୍ଷା କରୁଥିଲା । ସେଇ ବସ୍ତିଟି ଥିଲା ନାରୀ ପ୍ରଧାନ । ଖୁବ୍ କମ୍ ପୁରୁଷ ଥିଲେ । ସେମାନେ ସବୁ ନିକମା ଓ ସ୍ତ୍ରୀମାନଙ୍କୁ ସାହାଯ୍ୟ କରୁଥିଲେ । ସୀତାଂଶୁର ମାଆକୁ ସାହାଯ୍ୟ କରିବାକୁ କେହି ନଥିଲେ । ତେଣୁ ଖୁବ୍ କଷ୍ଟରେ ଚଳୁଥିଲା ତା' ମାଆ ଗୌରୀ । ଭଲ ଶାଢ଼ୀ ଖଣ୍ଡେ ପିନ୍ଧି ପାରୁନଥିଲା । ପୁଅର ସ୍କୁଲ ଉପଯୋଗୀ ବହିପତ୍ର କିଣିପାରୁନଥିଲା । ତା'ର କେହି ନିକଟସମ୍ପର୍କୀୟ ନଥିଲେ । ବଙ୍ଗଳାଦେଶ ଜନ୍ମ ହେଲା ପରେ ବିଭିନ୍ନ ବୈଷୟିକ କାରଣ ହେଉ ବା ଅତ୍ୟାଚାରରୁ ମୁକ୍ତି ପାଇବା ପାଇଁ ହେଉ, ସେ ଘରଛାଡ଼ି ଦେଇଥିଲା ଓ ଉଦ୍‌ବାସ୍ତୁ ଭାବେ ଏତେ ଦୂରକୁ ଚାଲି ଆସିଥିଲା ସୀମା ପାରିହେବା ସମୟରେ ଓ ତା'ପରେ ଅମୀୟନାଥ, ତାରାଚାନ୍ଦ ବା ପ୍ରିୟଦର୍ଶନ ତା' ସହିତ ରହିଥିଲେ କ୍ରମାନ୍ୱୟରେ । ପ୍ରଥମ ଦୁଇଜଣ ମରିଯାଇଥିଲେ ଅଜଣା ରୋଗରେ । ସେମାନଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ଗୌରୀ ମୁଣ୍ଡ ଧୋଇବା ଛଡ଼ା ଅନ୍ୟ କ୍ରିୟାକର୍ମ ନିମନ୍ତେ ଚିନ୍ତା କରିପାରିନଥିଲା । ସେମାନେ ଥିଲେ ରୁଗ୍‌ଣ । ପ୍ରିୟଦର୍ଶନ ପୃଥକ୍ ହୋଇଯିବାର କାରଣ କିନ୍ତୁ ସମ୍ପୂର୍ଣ୍ଣ ଭିନ୍ନ । ସୀତାଂଶୁ ଆଗମନ ଜଣାପଡ଼ିବା ପରେ ଗର୍ଭପାତ ନିମନ୍ତେ ପ୍ରବର୍ତ୍ତାଇଥିଲା ପ୍ରିୟଦର୍ଶନ । ଗୌରୀ

ମୋଟେ ରାଜି ହେଲାନି । ତା'ପରେ ପ୍ରିୟଦର୍ଶନ କୁଆଡ଼େ ଚାଲିଗଲା ଯେ ଆଉ ଫେରିନି । ଅନେକ କଷ୍ଟରେ ଷ୍ଟେସନରେ ମାଗି ମାଗି ବଞ୍ଚିଥିଲା ଗୌରୀ । ସହଯାତ୍ରୀ ଜଣେ ବୁଢ଼ୀ ସାହାଯ୍ୟରେ ସୀତାଂଶୁକୁ ଜନ୍ମଦେଲା । କିଛି ସମୟ ଅସାଡ଼ ହୋଇ ପଡ଼ିବା ପରେ ଛୋଟ ଛୁଆର ଯତ୍ନ ନେଲା । ନିଜେ ପରିଷ୍କାର ହେଲା । ସେଇ ବୁଢ଼ୀଟି ମାସେ ଖଣ୍ଡେ ଚଳାଇ ଦେଲା ମାଆ ପିଲାଙ୍କୁ ସଞ୍ଚିତ ପୁଞ୍ଜିରେ । ସିଏ ଗୌରୀର ସମ୍ପର୍କୀୟ ନୁହେଁ । ତେବେ ସରକାରୀ ଜମିରେ ଚାଳଖଣ୍ଡେ ଛିଡ଼ା କରାଇବାରେ ସାହାଯ୍ୟ କରିଛି, ସୀତାଂଶୁକୁ ଜଗି ରହିଛି, ଏବେ ଛପର ଖଣ୍ଡକ ଜଗୁଛି ମାଆ ପୁଅର ଅନୁପସ୍ଥିତିରେ ।

ସୀତାଂଶୁ ବଢ଼ିଛି ମାଆର ଯତ୍ନରେ । ବାପାର ପରିଚୟ ବା ଉପସ୍ଥିତି ତା'ନିକଟରେ ଅପାଂକ୍ତେୟ । ତେଣୁ ବାପା ସମ୍ବନ୍ଧୀୟ ଆଲୋଚନାରେ ସେ ଉଲ୍ଲସିତ ହୁଏନି ବା ଭାଙ୍ଗି ପଡ଼େନି । ବାପା ଶବ୍ଦ ପ୍ରତି ଦୁର୍ବଳତା ନାହିଁ । ସମ୍ପୂର୍ଣ୍ଣ ନିର୍ବିକାର ସେ ।

ବାପା ନାମକ ଦୁର୍ଲ୍ଲଭ ବସ୍ତୁର ସମ୍ପୂର୍ଣ୍ଣ ଅବର୍ତ୍ତମାନରେ ଚାଲିଛନ୍ତି ତିନିବନ୍ଧୁ । ରେଳଗାଡ଼ିକୁ ଚାହୁଁଛନ୍ତି । ପ୍ଲାଟ୍‌ଫର୍ମ୍‌କୁ ଆପଣେଇ ନେଇଛନ୍ତି । ବଞ୍ଚିଛନ୍ତି ଅତୀତ ଆଡୁ ଚକ୍ଷୁ ଅପସାରଣ କରି ।

□□

# ଶ୍ରୀକାନ୍ତ ମାମୁଁ ଆସିଥିଲେ

ସକାଳର ଚା' ରାସ୍ତା ଆଡ଼କୁ ଚାହିଁ ନ ପିଇଲେ ତୃପ୍ତି ଲାଗେନା କଲ୍ୟାଣୀକୁ । ପିଣ୍ଡା ତଳ ଲନ୍‌ରେ ମୋଟା ଘାସର ଚଦର । କେତେଟା ବଣୁଆ ଗୁଳ୍ମର ସ୍ୱର୍ଦ୍ଧିତ ଉପସ୍ଥିତି ଲନ୍‌ର ସୌନ୍ଦର୍ଯ୍ୟ ନଷ୍ଟ କରୁଥିବାର ମନେ ହେଉଥିଲେ । ହେଲେ ଶରଦୀନ୍ଦୁ ମାନିବାକୁ ପ୍ରସ୍ତୁତ ନୁହନ୍ତି । କଲ୍ୟାଣୀ ଚାହିଁଥିଲା ବିଭିନ୍ନ ରଙ୍ଗର ଗୋଲାପ ଏବଂ ଋତୁକାଳୀନ ଫୁଲଗଛ ସବୁ ଲଗାଇବାକୁ । ଗୋଲାପ ଚାରା ତ ଆସିଲା । ତା' ସହିତ ଏଇ ବଣୁଆ ଗଛର ମୂଳସବୁ । ଗୋଟିଏ ଋତୁ ପାଇଁ ବଡ଼ ବଡ଼ ଗୋଲାପ ସବୁ ଫୁଟିଲା ଅନ୍ୟ ଫୁଲମାନଙ୍କ ସହ । ବିଚିତ୍ର ବର୍ଣ୍ଣା ହୋଇଉଠିଲା ଲନ୍‌ଟା । ମୁଗ୍ଧ ଆଖିରେ ଚାହିଁଲା କଲ୍ୟାଣୀ ଲନ୍‌କୁ, ଶରଦୀନ୍ଦୁକୁ । ବଣୁଆ ଗଛର ଗଜାଗୁଡ଼ାକ ଚାହିଁଲେ ଉଭୟଙ୍କୁ ଟିକିଏ କରୁଣା ପ୍ରାର୍ଥନା କରି । ଶୀତ ଲହରୀ ଅତିକ୍ରାନ୍ତ ହେଲା । ରୁଗ୍‌ଣ ହୋଇଗଲେ ଗୋଲାପର ଶାଖା, ଝରିଗଲେ ସ୍ତବକ । ଭୂମିଶାୟୀ ହେଲେ ଗୁଲମୋହର । ପଲ୍ଲବିତ ହେଲେ ବଣ୍ୟ ପାଦପ । ବସନ୍ତ ସ୍ପର୍ଶରେ ଭରିଗଲା ସେମାନଙ୍କ ତାରୁଣ୍ୟ । ଶରଦୀନ୍ଦୁ ଉତ୍‌ଫୁଲ୍ଲ ହେଲେ । କଲ୍ୟାଣୀର ପ୍ରସ୍ତାବ ନୂଆ କଲମୀ ଗଛସବୁ ଆଣ । ବର୍ଷର ସବୁ ସମୟରେ ସତେଜ ରହିଥିବ । ଅଳ୍ପ ଅଳ୍ପ ହଲିଲେ ହିଲ୍ଲୋଳରେ ସଞ୍ଚରି ଯାଉଥିବ ମହକ । ଛୁଟି ଆସୁଥିବେ ଭ୍ରମର ଦଳ । ନାଚୁଥିବେ ପ୍ରଜାପତି । କଲ୍ୟାଣୀର ଅନୁରୋଧ ଉପେକ୍ଷିତ ହୋଇନି । ହସନ୍ତି ଶରଦୀନ୍ଦୁ । ନର୍ସରୀରେ ସେଇ ଗୁଣ ବହନ କରୁଥିବା ଚାରାର ଅଭାବ । ଅଗତ୍ୟା ହୃଷ୍ଟପୁଷ୍ଟ ଭାବେ ବଢୁଥିବା ବଣୁଆ ଗଛଗୁଡ଼ାକୁ ଚାହେଁ କଲ୍ୟାଣୀ । ଛିଣ୍ଡା ପ୍ୟାଣ୍ଟ ଉପରେ ଗାମୁଛା ବାନ୍ଧି ଦେଇଥିବା ପିଲା, ତଳ ଉପର ହେଉଥିବା ତା' ବାଡ଼ି, ଦାଢ଼ି ବଢ଼ାଉଥିବା ଛେଳି, ଛୁଆମାନଙ୍କୁ ଚାହିଁ ଚାଲୁଥିବା ସଦ୍ୟ ପ୍ରସବା ମାଈ କୁକୁର, ହମ୍ବାରଡ଼ି କରି ଡେଉଁଥିବା ବାଛୁରୀ, ଚିରା ଶାଢ଼ୀ ବାରମ୍ବାର ଦେହ ଉପରକୁ ଟାଣୁଥିବା ରାଣୀର ରୁଗ୍‌ଣ ଶରୀର ମଧ୍ୟ ତା' ଦୃଷ୍ଟିରେ ପଡ଼େ । ଘରଠାରୁ ସାମାନ୍ୟ ଦୂରରେ ଥିବା ଅଶ୍ୱତ୍ଥ ବୃକ୍ଷ ପତ୍ରମାନଙ୍କର ଶିହରଣ ଦେହରେ ପ୍ରତିଫଳିତ ହୁଏ । ଅନ୍ୟମନସ୍କ ହୋଇଯାଏ ସେ । ସକାଳର ଚା'ପିଇବା ପାଇଁ ଲନ୍ ମଧ୍ୟରେ ଚଉକିଟିଏ ପକାଇବାକୁ ଇଚ୍ଛା ହୁଏ । ସାଥିରେ ଆଉ ଜଣକର ସାନିଧ୍ୟ ମଧ୍ୟ । ଶରଦୀନ୍ଦୁକୁ ଏଇ କଥା ଶୁଣାଇଥିଲା ବାହାହୋଇ ଆସିବା ପରେ ।

"ମୁଁ ତ ପିଏନି । ତମେ ଚାହିଁଲେ ପିଇବି ।" ଶରଦୀନ୍ଦୁର ଏଇ ପ୍ରସ୍ତାବଟିକୁ ଗ୍ରହଣ କରିପାରେନି କଲ୍ୟାଣୀ "ନା ଥାଉ ।" ଏକା ଚା'ପିଆ ସାଙ୍ଗକୁ ପଲ୍ଲବିତ ଅଶ୍ୱତ୍ଥ ବୃକ୍ଷକୁ ଛୁଇଁ ଆସୁଥିବା ମନ୍ଦ ମଳୟ ମନରେ ଶିହରଣ ଭରିଦିଏ । "ତମେ ଖାଲି ବସ । ଚା' ଅଭ୍ୟାସ କରନି ।" ଛୋଟ ବେଞ୍ଚ ଉପରେ କଲ୍ୟାଣୀ ନିକଟରେ କେବେ ବସନ୍ତି ବା ଲନ୍‌ରେ ଘୁରି ଘୁରି ଗପ କରୁଥାନ୍ତି ଶରଦୀନ୍ଦୁ ।

ପିଲାମାନେ ସ୍କୁଲକୁ ଆଉ ଶରଦୀନ୍ଦୁ ଅଫିସ୍ ଚାଲିଯିବା ପରେ ନିଃସଙ୍ଗ କଲ୍ୟାଣୀ ଉଠିଆସେ ବାହାରକୁ; ଚାହେଁ ରାସ୍ତା ଆଡ଼କୁ । ଶୂନ୍‌ଶାନ୍ ରାସ୍ତାଟାରେ କେବେ କେମିତି ଜଣେ ଅଜଣା ମଣିଷ ଦୃଷ୍ଟିରେ ପଡ଼ନ୍ତି । ହଳିଆମାନେ ବିଲ କାମରେ ବ୍ୟସ୍ତ ଥାଆନ୍ତି । ଖରାର ତେଜ ବଢ଼ିଯାଇଥାଏ । ଆକାଶର ରଙ୍ଗ ବଦଳୁଥାଏ । ପକ୍ଷୀମାନେ ଖାଦ୍ୟ ଅନ୍ୱେଷଣରେ ବିଲମାଳ ଆଡ଼େ ଚାଲିଯାଇଥାନ୍ତି; ବଗୁଲିଆ ପିଲାମାନେ ତୋଟାକୁ । କଲ୍ୟାଣୀର ଇଚ୍ଛା ହୁଏ ଚିହ୍ନା ମଣିଷ ଜଣେ ଆସନ୍ତା, ଅନେକ ସମୟରେ କେହି ଜଣେ ବି ଦେଖାଯାନ୍ତି ନାହିଁ । ରୋଷେଇ ଘରେ ବ୍ୟସ୍ତ ରହିବାକୁ ଚେଷ୍ଟା କରେ । ବେଳେ ବେଳେ ଟି.ଭି. ଦେଖେ, ଏମିତି କିଛି ନିର୍ଦ୍ଦିଷ୍ଟ ସମୟ ବା କାର୍ଯ୍ୟକ୍ରମ ନୁହେଁ । ଟି.ଭି. ଖୋଲିଦେଲେ ଯାହା ଆଖିରେ ପଡ଼େ । ଦିନେ ପହଞ୍ଚିଲେ ଶ୍ରୀକାନ୍ତ ମାମୁଁ । ଆଶ୍ଚର୍ଯ୍ୟ ହୋଇଗଲା ସିଏ । କେବେ ତ ଆସି ନାହାନ୍ତି । ଆସିବା କଥା ମଧ୍ୟ ନୁହେଁ । ନିଜ ମାମୁଁ ନୁହଁନ୍ତି । ଭଦ୍ରଖରେ ବାପା ଥିବାବେଳେ ଆସୁଥିଲେ ସରକାରୀ କ୍ୱାଟରକୁ । ବୋଉକୁ ଅପା ଅପା ଡାକନ୍ତି, କ'ଣ ଗୋଟାଏ ହିସାବ ପକେଇ । ବୋଉର ସମ୍ପର୍କୀୟ ଦାଦାଙ୍କ ଶଳାର ପୁଅ । ସେଇ ସମ୍ପର୍କଟା କ୍ରମେ ଘନିଷ୍ଠ ହୋଇଗଲା ଏବଂ ସେ ସପ୍ତାହରେ ଥରେ ଦୁଇଥର ନିୟମିତ ଆସିଲେ । ବୋଉର ଔପଚାରିକ ନିମନ୍ତ୍ରଣକୁ ସମ୍ମାନ ଜଣାଇ ରାତ୍ରି ଭୋଜନରେ ଯୋଗଦେଲେ । ସେ ଯେ ରୋଜଗାରକ୍ଷମ ନଥିଲେ, ତା' ନୁହେଁ । ବରଂ ବାପାଙ୍କ ଚାକିରି ଅପେକ୍ଷା ତାଙ୍କ ଚାକିରିଟା ବିଶେଷ ଅର୍ଥକାରୀ ଥିଲା । ରାସ୍ତା ଏବଂ ଗୃହ ନିର୍ମାଣ ବିଭାଗର କନିଷ୍ଠ ଯନ୍ତ୍ରୀ । ଦରମାକୁ ବାଦ୍‌ଦେଇ ମୋଟା ଅଙ୍କ ଆୟର ସମ୍ଭାବନା । ସରକାରୀ ବାସଗୃହ ନଥିବାରୁ ଗୋଟେ ଭଡ଼ାଘରେ ରହୁଥିଲେ । ସ୍ଥାନୀୟ ଅଧିକାରୀ ସଂଘ ବାର୍ଷିକ ନାଟକ ଆୟୋଜନର ପୃଷ୍ଠପୋଷକ । ତାଙ୍କୁ ଯଚାଯାଉଥିବା ଜରାସନ୍ଧ ବା ଭୀମ ଭଳି ଭୂମିକାକୁ ଆନନ୍ଦର ସହ ଗ୍ରହଣ କରୁଥିଲେ । ଏଥିପାଇଁ ତାଙ୍କ ଚେହେରାଟି ଖାପ୍ ଖାଉଥିଲା । ତାଙ୍କ ପାଇଁ ଉପଯୁକ୍ତ ଭୂମିକା ନଥିଲେ ମଞ୍ଚ ପରିଚାଳନା, ଅଭିନେତା-ଅଭିନେତ୍ରୀମାନଙ୍କ ସଂଳାପର ପ୍ରାକ୍ କଥନର ଦାୟିତ୍ୱ ବହନ କରୁଥିଲେ ଏବଂ ଜଣେ ମାମଲତ୍‌କାର ଭାବେ ନିଜକୁ ପ୍ରତିପାଦିତ କରୁଥିଲେ । ସେ ସବୁବେଳେ ଗୋଟେ ପୁରୁଣା ରାଜଦୂତ ମଟର ସାଇକେଲ୍‌ରେ ଆସୁଥିଲେ ଏବଂ

ସନ୍ଧ୍ୟା ପୂର୍ବରୁ ପହଞ୍ଚିଲେ କଲ୍ୟାଣୀ କିମ୍ବା ତା'ର ସାନ ଭାଇଭଉଣୀମାନଙ୍କୁ ବୁଲାଇ ନେବାର ପ୍ରସ୍ତାବ ଦେଉଥିଲେ । ସେତେବେଳେ କଲ୍ୟାଣୀର ବୟସ ଖୁବ୍ ବେଶୀ ହେଲେ ବାର ହେବ । ତା'ର ତ ଯିବାକୁ ଇଚ୍ଛା ହୁଏନା । ସାନ ଭାଇଭଉଣୀମାନେ ଆଗଭର ହୋଇ ବାହାରନ୍ତି । ଘେରାଏ ବୁଲାଇ ଆଣିବା ପରେ ଘର ସାମ୍ନାରେ ଷ୍ଟାଣ୍ଡ୍‌ମାରି ଡାକ ପକାନ୍ତି, ଅପା କିଛି କାମ ଅଛି ନା ଚାଲିଯିବି ? ବୋଉ ନଶୁଣିବା ଯାଏଁ ପାଟି କରୁଥିବେ । ବୋଉ ସେଇ ଘର ଭିତରୁ ପାଟିକରି କୁହେ, ରହ ଖାଇକରି ଯିବୁ । ଶ୍ରୀକାନ୍ତ ମାମୁଁ ଅଟକି ଯାଆନ୍ତି । ଦାଣ୍ଡଘରେ ଗୋଟେ ତକିଆ ଧରି ଅର୍ଦ୍ଧଶାୟିତ ଅବସ୍ଥାରେ ପିଲାମାନଙ୍କ ସହ ଗପ କରନ୍ତି । ତାଙ୍କ ବିଭାଗ, ସ୍କୁଲ, ଗାଆଁ ଜମିବାଡ଼ି, ତାଙ୍କ ଭାଇ ଭାଉଜ, ସାନ ଭାଇର ଠିକାଦାରୀ ବା ପ୍ରେମ କଥା । କଲ୍ୟାଣୀର ସେସବୁ ଶୁଣିବାକୁ ଆଗ୍ରହ ନଥାଏ । ପାଖଘରେ ସ୍କୁଲ ପାଠ୍ୟ ପ୍ରସ୍ତୁତ କରିବା ସମୟରେ ସେସବୁ ଶୁଣାଯାଏ ତାକୁ ।

ଅନେକ ଦିନଯାଏଁ ନିଃସଙ୍ଗ ଜୀବନଯାପନ କରୁଥିବା ଓ ସାଙ୍ଗ ମେଳରେ ବ୍ରହ୍ମଚାରୀ ଭାବେ ପରିଚିତ ଥିବା ଶ୍ରୀକାନ୍ତ ମାମୁଁ ଦିନେ ପ୍ରସ୍ତାବ ବାଢ଼ିଲେ ବୋଉ ଆଗରେ, "ଅପା ଧୀରା ସାଙ୍ଗରେ ମୋର ବାହାଘର ପ୍ରସ୍ତାବ ପକାଇଲେ ହୁଅନ୍ତାନି ?" ବୋଉ ଆଶ୍ଚର୍ଯ୍ୟ ହେଇଗଲା- "କୋଉ ଧୀରା ?"

"ସେଇ ଯେଉଁ ଝିଅଟି ତମ ଘରେ ରହି ମାଟ୍ରିକ୍ ପରୀକ୍ଷା ଦେଇଥିଲା । ସେ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବାର ଖବର ମୁଁ ପାଇଛି । ତା' ଭାଇ, ଯିଏ ନନାଙ୍କ ଅଫିସ୍‌ରେ ଚାକିରି କରେ, ତା'ଠୁ ବୁଝିଛି ।"

"ହଉ ଦେଖିବି," କହି ପ୍ରସଙ୍ଗଟିକୁ ସେଇଠି ସମାପ୍ତ କରିଦେବାକୁ ଚାହୁଁଥିଲା ବୋଉ । ମାମୁଁ କିନ୍ତୁ ନଛୋଡ଼ବନ୍ଧା । ଯେବେ ଆସିଲେ ପଚାରୁଥିଲେ, "କ'ଣ ଆଗେଇଲୁ ଅପା ? ସେମାନେ କ'ଣ କହିଲେ ? ସେମାନଙ୍କଠାରୁ ସମ୍ମତି ପାଇଲେ ମୁଁ ଭାଇଙ୍କି କହିବି, ଇତ୍ୟାଦି ଇତ୍ୟାଦି ।" ବଡ଼ ଗପୁଡ଼ି ମାମୁଁ । ତାଳଦଣ୍ଡାଠାରୁ ତଳକୋଟା, ଦିଲ୍ଲୀଠାରୁ ଦଣ୍ଡନାଚ; ବନ୍ଧୁ ଚର୍ଚ୍ଚାଠାରୁ ବିଶ୍ୱବ୍ରହ୍ମାଣ୍ଡ ପର୍ଯ୍ୟନ୍ତ ବିଷୟରେ ଦୀର୍ଘ ଭାଷଣ ଦେବା ତାଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ । ପ୍ରସ୍ତାବ ତ ପଡ଼ିଲା । ତେବେ ଆପତ୍ତି ଉଠାଇଲେ ଧୀରା ଅପାଙ୍କ ସାନଭାଇ । ମୋର ଏତେ ସୁନ୍ଦର ଭଉଣୀକୁ ଜରାସନ୍ଧ ଚେହେରାର ଲୋକସଙ୍ଗେ ବାହା କରାଇବି ? ବାପା ବୁଝାଇଲେ । ବୋଉ ମଧ୍ୟ ବୁଝାଇଲା । ଶ୍ରୀକାନ୍ତ କନିଷ୍ଠ ଯନ୍ତ୍ରୀ । ତାଙ୍କ ବିଭାଗରେ ପଦୋନ୍ନତି ଖୁବ୍ ଶୀଘ୍ର । ଗାଆଁରେ ବହୁ ଜମିବାଡ଼ି ଅଛି । ତା'ଛଡ଼ା ଗୃହନିର୍ମାଣ କନିଷ୍ଠ ଯନ୍ତ୍ରୀମାନଙ୍କର ଆୟର ଅନେକ ପନ୍ଥା । ଧୀରା ଅପା ଭାଇଙ୍କ ମନରୁ ତଥାପି ସଙ୍କୋଚ କଟୁ ନ ଥିଲା । ବୋଉ ପଚାରିଲା, "ହଉ ଏଠାରେ ନକର । ଅନ୍ୟ କେଉଁଠି ପ୍ରସ୍ତାବ ରଖିଛ ? ଅନେକ ଦିନ ବସିବା ପରେ ଧୀରା ମାଟ୍ରିକ

ପରୀକ୍ଷା ଦେଇଥିଲା । ତା'ର କ'ଣ ବୟସ ବସିଛି ?" ଭାଇମାନେ ବୁଝିଗଲେ । ଚେହେରାରେ କ'ଣ ଥାଏ ? ଆଉ ବା କୋଉଠି ଭଲ ପ୍ରସ୍ତାବ ଅଛି ?

ଧୀରା ଅପାର ବିବାହ ଶ୍ରୀକାନ୍ତ ମାମୁଁ ସଙ୍ଗେ ହୋଇଗଲା । କଲ୍ୟାଣୀ ଧୀରା ଅପାକୁ ବୋହୂ ବେଶରେ ଦେଖିପାରିଲାନି । ବାପାଙ୍କ ବଦଳି ଏବଂ ସଙ୍ଗେ ସଙ୍ଗେ ଦାୟିତ୍ୱ ହସ୍ତାନ୍ତର ଯୋଗୁଁ ସରକାରୀ ଗୃହ ଛାଡ଼ି ନୂଆଜାଗାକୁ ଚାଲିଯାଇଥିଲେ ସେମାନେ । ବାହାଘରକୁ କେବଳ ବାପା ଯାଇଥିଲେ । ସେ ଅନେକ ଦିନ ତଳର କଥା । ସପ୍ତମ ଶ୍ରେଣୀରେ ପଢୁଥିବା କଲ୍ୟାଣୀ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରି ବାହାହେଲା । ତା'ପରେ ଦଶବର୍ଷ ଅତିକ୍ରାନ୍ତ ହେଲାଣି । ପୁଅ ତୃତୀୟ ଶ୍ରେଣୀରେ ପଢ଼ିଲାଣି । ଶ୍ରୀକାନ୍ତ ମାମୁଁ ଓ ଧୀରାମାଇଁଙ୍କ ଦାମ୍ପତ୍ୟ ଜୀବନର ଅନେକ ଖବର ଆସି ପହଞ୍ଚିଛି । କସ୍ତୁରୀ ମୃଗ ସ୍ୱନାଭି ନିର୍ଗତ ସୁରଭିର ଉତ୍ସ ଜାଣିବାକୁ ଇତସ୍ତତଃ ହୋଇ ଘୁରିବା ଭଳି ଗ୍ରାମ୍ୟ କିଶୋରୀ ଧୀରା ଅପା ଶ୍ରୀକାନ୍ତ ମାମୁଁଙ୍କୁ ବାହା ହେବା ପରେ ସେ ଯେ ଅସାମାନ୍ୟ ସୌନ୍ଦର୍ଯ୍ୟର ଅଧିକାରିଣୀ- ଈର୍ଷାଳୁ ମହିଳା ଓ ପୁରୁଷମାନେ ତା' କାନରେ ପହଞ୍ଚାଇ ଦେଲେ । ଅନେକ ଲୋକଙ୍କଠାରୁ ଶୁଣିବା ପରେ ତା'ର ମଧ୍ୟ ଧାରଣା ହୋଇଗଲା ଜରାସନ୍ଧ ନୁହେଁ ସୌମ୍ୟକାନ୍ତିମୟ କର୍ଣ୍ଣ ବା ବୀର ଅର୍ଜୁନ ତା' ନିମନ୍ତେ ଯୋଗ୍ୟ ହୋଇଥାନ୍ତେ । ସିଏ ଉନ୍ମାଦଗ୍ରସ୍ତ ହୋଇପଡ଼ିଲେ । ଗାଁ ଲୋକମାନେ ତାଙ୍କ ସମ୍ବନ୍ଧରେ ଗୁଡ଼ାଏ ମିଥ୍ୟା ସମ୍ବାଦ ଶୁଣାଉଥିଲେ । କଲ୍ୟାଣୀ ଜାଣେନା, କିନ୍ତୁ ମଝିରେ ମଝିରେ ଖବର ଆସୁଥିଲା- ଧୀରା ମାଇଁ ନଈକୁ ଆତ୍ମହତ୍ୟା କରିବା ପାଇଁ ଧାଉଁଥିଲେ ଏବଂ ଶ୍ରୀକାନ୍ତ ମାମୁଁ ତାଙ୍କ ପଛରେ ଗୋଡ଼ାଇ ବିପର୍ଯ୍ୟସ୍ତା, ଆଲୁଳାୟିତ କେଶା ମାଇଁଙ୍କୁ ଘରକୁ ଆଣିଥିଲେ । ଥରେ ଖବର ପହଞ୍ଚିଲା- ମାମୁଁଙ୍କ ଅନୁପସ୍ଥିତିରେ ମାଇଁ ତାଙ୍କ ଭଗ୍ନୀପତିଙ୍କୁ ମାଡ଼ ମାରିଥିଲେ । ଏହା ମାମୁଁଙ୍କ ନଜରକୁ ଆସିବା ପରେ ସେ ଚନ୍ଦ୍ର ମଉସାଙ୍କୁ ତାଙ୍କ ଘରକୁ ଆସିବାକୁ ବାରଣ କରିଥିଲେ । ଏଗୁଡ଼ାକ ଶୁଣା କଥା । କଲ୍ୟାଣୀ ଆଶ୍ଚର୍ଯ୍ୟ ହେଉଥିଲା- ଏତେ ବନ୍ଧୁବାନ୍ଧବ ଥିବା ସତ୍ତ୍ୱେ ଧୀରା ମାଇଁଙ୍କ ନାମରେ କାହିଁକି ଏତେ ଅପବାଦ !

ତା' ବାହାଘରକୁ ଶ୍ରୀକାନ୍ତ ମାମୁଁ ଆସିଥିଲେ । ସିଏ ଗୋଟାଏ ଉପହାର ପ୍ୟାକେଟ୍ ଧରିଥିବାର ଦେଖିଥିଲା କଲ୍ୟାଣୀ । ବୋଉ କିନ୍ତୁ ପରେ ମନଦୁଃଖ କରୁଥିଲା । ବାହାଘର ପରେ ଧୀରାର ମୁହଁ ଦେଖାବେଳେ ଅଧଭରି ଓଜନର ଝରା ଦେଇଥିଲି । କିନ୍ତୁ ମୋ ପ୍ରଥମ ଶୁଭକର୍ମ ବେଳକୁ ଶ୍ରୀକାନ୍ତ କ'ଣ ଆଣିଲା ? ବୋଉର ଏ ରୁଗ୍ଣ ମାନସିକତାକୁ ସମର୍ଥନ କରେନି କଲ୍ୟାଣୀ । ତୁ ଦେଇଥିଲୁ, ଠିକ୍ ଅଛି । ପ୍ରତିଦାନ କାହିଁକି ଆଶା କରୁଛୁ ? ଏ ଭିତରେ ଅନେକ ବୈଶାଖ ବହିଗଲାଣି । ଶୀତ ପ୍ରକୋପରେ ପାଦପମାନେ ପତ୍ରଶୂନ୍ୟ ହେଲେଣି । ମାମୁଁଙ୍କର ପୁଅ ଝିଅ ବଡ଼ ହେଲେଣି । ଶରଦୀନ୍ଦୁଙ୍କର ଅନେକ

ଜାଗାକୁ ବଦଳି ହେଲାଣି, ଯଦିଓ ଶ୍ରୀକାନ୍ତ ମାମୁଁ ତାଙ୍କ କରିତ୍‌କର୍ମା ଶକ୍ତି ବଳରେ ସେଇ ରାଜଧାନୀରୁ ଆଉ ଘୁଞ୍ଚୁ ନାହାନ୍ତି । ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷଙ୍କ ଆବଣ୍ଟନରୁ ପାଇଥିବା ଜମିରେ ଘର ତିଆରି କରୁଛନ୍ତି । ପଦୋନ୍ନତି ପାଇଁ ତାଙ୍କ କାଗଜପତ୍ର ପ୍ରସ୍ତୁତ ହେଉଥିବା କଥା ଅନେକ ଦିନରୁ ଶୁଣାଗଲାଣି ।

ଶ୍ରୀକାନ୍ତ ମାମୁଁ ଆସିଛନ୍ତି, ଏତେଦିନର ବ୍ୟବଧାନରେ । ନିଜର ମାମୁଁମାନେ କେବେ ଆସନ୍ତିନି । ଭାଣିଜୀମାନେ ବାହାହୋଇ ଗଲାପରେ ମାମୁଁମାନଙ୍କର ଆଉ କି ସମ୍ପର୍କ ?

ଶ୍ରୀକାନ୍ତ ମାମୁଁ କିନ୍ତୁ ଆସିଛନ୍ତି ।

ଶରଦୀନ୍ଦୁ କାର୍ଯ୍ୟାଳୟକୁ ଯାଇଛନ୍ତି । ଫେରିବେ ଚାରିଟା ବେଳକୁ । ବଡ଼ପୁଅ ସ୍କୁଲରୁ ଶନିବାର ଯୋଗୁଁ ଫେରିଆସି କ୍ରିକେଟ୍ ବ୍ୟାଟ୍ ଖୋଜୁଛି । ସାନପୁଅ ବହିପତ୍ର ଖଟ ଉପରେ ଗଦା କରିଦେଇ ଘର ପଛପଟେ ଥିବା ପଡ଼ିଆରେ ତା' ସାଙ୍ଗମାନଙ୍କ ସହିତ ଦୌଡ଼ାଦୌଡ଼ି କରୁଛି । ଗ୍ୟାସ୍ ଉପରେ ବସିଥିବା ହାଣ୍ଡିରୁ ଭାତ ଫୁଟି ଗନ୍ଧ ଆସୁଛି । ରାସ୍ତାରେ କେହି ପରିଚିତ ମଣିଷ ଦେଖାଯାଉ ନାହାନ୍ତି । ବଣୁଆ ଗଛର ଫୁଲ, ମୋଟା ଘାସର ଲନ୍ ଆଡ଼କୁ ମୁଗ୍ଧ ଦୃଷ୍ଟିରେ ଚାହିଁଥିବା କଲ୍ୟାଣୀକୁ ଆଶ୍ଚର୍ଯ୍ୟ କରି ଶ୍ରୀକାନ୍ତ ମାମୁଁ ପାହାଚ ଉଠିଲେ ।

ଗପ ଆରମ୍ଭ ହେଲା । ରାଜଧାନୀକୁ ଜାବୋଡ଼ି ଧରିବାର ସୂକ୍ଷ୍ମକଳା, ମନ୍ତ୍ରୀ, ବିଧାୟକମାନଙ୍କର ନିକଟତର ହେବାର ମାନସିକ ତଥା ଶାରୀରିକ ପ୍ରସ୍ତୁତି, ପୁଅ ଝିଅଙ୍କର ପ୍ରତ୍ୟୁତ୍ପନ୍ନମତିତା, ଧୀରା ମାଇଁଙ୍କ ଗୃହ ପରିଚାଳନାର ଦକ୍ଷତା ଆଉ ଭୁବନେଶ୍ୱର ନିର୍ମାଣାଧୀନ ଗୃହର ଅଗ୍ରଗତି । ଥଣ୍ଡା ପାନୀୟରୁ ଢୋକେ ଦି ଢୋକ ପିଇଲା ପରେ ବାରି କବାଟରେ ଶବ୍ଦ ହେଲା । ସାନପୁଅ ପଶିଆସିଲା ଦର ଆଉଜା କବାଟକୁ ମେଲା କରି । ନୂଆ ନୂଆ ସ୍କୁଲକୁ ଯାଉଥିବା ବିବେକ ମାମୁଁ ଆଡ଼କୁ ଚାହିଁଲା । ପାଖକୁ ଆସିଲାନି । ମାମୁଁ ମଧ ତାକୁ ଚାହିଁଲେ । ପାଖକୁ ଡାକିବାର ଇଚ୍ଛାକୁ ନିୟନ୍ତ୍ରଣ କରି କହିଲେ, "ବୁଝିଲୁ ମାଆ, ତରବରରେ ଚାଲି ଆସିଲି ତ, ପିଲାମାନଙ୍କ ପାଇଁ କିଛି ଆଣିପାରିଲି ନାହିଁ ।" କଲ୍ୟାଣୀ ଅନ୍ୟମନସ୍କ ଥିଲା । ଶ୍ରୀକାନ୍ତ ମାମୁଁଙ୍କ କଥାଗୁଡ଼ା ସେ ଠିକ୍‌ଭାବେ ଶୁଣିପାରୁ ନଥିଲା । ତା'ର ପଚାରିବାକୁ ଇଚ୍ଛା ହେଉଥିଲା ବିରେନ୍ ମାମୁଁଙ୍କ କଥା, ଯିଏ ଅଦ୍ୟାବଧି ଏକାକୀତ୍ୱକୁ ଗ୍ରହଣ କରି ନେଇଛନ୍ତି ଲେଖା ଆଚାର୍ଯ୍ୟ ପ୍ରତ୍ୟାଖ୍ୟାନ ଦୁଃଖରେ ମୁହ୍ୟମାନ ହୋଇ । ତା'ର ପଚାରିବାକୁ ଇଚ୍ଛା ହେଉଥିଲା ନିଃସନ୍ତାନ ଶରତ ମାଇଁଙ୍କ କଥା । ହେଲେ ଶ୍ରୀକାନ୍ତ ମାମୁଁଙ୍କ ଗପ ସୁଅରେ ତାଙ୍କ ଭାବନା ମୁଣ୍ଡ ଗୁଞ୍ଜିପାରୁ ନଥିଲେ । ମଝିରେ ଥରେ ମାତ୍ର ପଚାରିଥିଲା ବାପା ବୋଉଙ୍କ କଥା । କାର୍ଯ୍ୟବ୍ୟସ୍ତ ମାମୁଁ

ସବୁବେଳେ । ତେଣୁ ଭୁବନେଶ୍ୱରରେ ରହୁଥିଲେ ମଧ୍ୟ କଟକସ୍ଥ କଲ୍ୟାଣୀର ବାପା ମାଆଙ୍କ ଖବର ରଖିବା ପାଇଁ ତାଙ୍କ ଆନ୍ତରିକତାର ଅଭାବ ନିଶ୍ଚୟ । ଆଉ ଏଇ ପଚାରିଦେବାଟା କେବଳ ସୌଜନ୍ୟ ରକ୍ଷା କରିବା ପାଇଁ । ଉତ୍ତର ଶୁଣିବା ପାଇଁ ତାଙ୍କର ଧୈର୍ଯ୍ୟ ନାହିଁ । ଅନ୍ୟ ପ୍ରସଙ୍ଗ ଉଠାଇଲେଣି ।

ଭାତ ଫୁଟିଲାଣି ଅନେକବେଳୁ । ହୁଏତ କଅଁଳ ହୋଇଯାଇପାରେ । "ରୁହ ମାମୁଁ ଭାତଟା ଓହ୍ଲାଇ ଦେଇ ଆସୁଛି," କହି ରୋଷେଇ ଘରକୁ ଗଲା କଲ୍ୟାଣୀ । ମାମୁଁଙ୍କ ପାଇଁ ଶ୍ରୋତାର ଅଭାବ । ନୀରବ ରହିବାଟା ତାଙ୍କ ସ୍ୱଭାବ ବିରୁଦ୍ଧ । ଝରକା ଦେଇ ରାସ୍ତାକୁ ଚାହିଁଲେ । କେହି ଜଣେ ଲୋକ ଦେଖାଯାଉ ନାହାନ୍ତି । ତାଙ୍କର ମନେହେଲା ଏଠିକି ନ ଆସିଥିଲେ ସିଏ ହୁଏତ କାର୍ଯ୍ୟାଳୟରେ ବସି କୌଣସି ଠିକାଦାର ସଙ୍ଗେ କାର୍ଯ୍ୟର ମାପ ଆଲୋଚନା କରୁଥାନ୍ତେ କିମ୍ବା କାର୍ଯ୍ୟକ୍ଷେତ୍ରରେ ତଦାରଖ ଏବଂ ଅଗ୍ରଗତି ସମ୍ବନ୍ଧରେ ମଜୁରିଆମାନଙ୍କୁ ଉପଦେଶ ଦେଉଥାନ୍ତେ । କାର୍ଯ୍ୟ ସମୟରେ ଲୋକ କୁଆଡୁ ଆସିବେ ରାସ୍ତା ଉପରେ ! ସେମାନେ ହୁଏତ ବିଲରେ, ଶାଳରେ, କଳ କାରଖାନାରେ କାମ କରିବେ ନଚେତ୍ କାର୍ଯ୍ୟାଳୟର ପଙ୍ଖାତଳେ ବିଫଳତାକୁ ଦାୟୀକରି ଦୀର୍ଘନିଃଶ୍ୱାସ ପକାଇବେ ଅଥବା ପରଛିଦ୍ରରେ ନାକଗୁଞ୍ଜି ଆତ୍ମସନ୍ତୋଷ ପାଇବେ ।

ଭାତ ଓହ୍ଲାଇ ଦେଇ ଦାଣ୍ଡଘରକୁ ଆସିଲା କଲ୍ୟାଣୀ । ମାମୁଁ ସିଧା ହୋଇ ବସିଲେ । ପୁଣି ତାଙ୍କର ଗପ ଆରମ୍ଭ ହେବ । କଲ୍ୟାଣୀ ପଚାରିବାକୁ ଚାହୁଁଥିଲା ମାଇଁ କିପରି ଅଛନ୍ତି, ପିଲାମାନେ କିପରି ଅଛନ୍ତି । ସେ କିଛି ପଚାରି ପାରିଲାନି । ତାକୁ ଶ୍ରୋତା ହେବାକୁ ପଡ଼ିବ । ମାମୁଁ ଆରମ୍ଭ କଲେ- "ବୁଝିଲୁ ମାଆ, ପୁଅ ଶୀତୁ ଏଥର ମିଳିତ ପ୍ରବେଶିକା ପରୀକ୍ଷା ଦେଇଥିଲା । ତାକୁ ମାଗଣା ସିଟ୍ ମିଳିଲାନି । ତେବେ ମାଇଁ ଏବଂ ମୁଁ ସ୍ଥିର କରିଛୁ ଡୋନେସନ୍ ସିଟ୍‌ରେ ତା'ର ନାମ ଲେଖାଇବୁ । ଘର କରିଦେଲୁ ତ । ଟଙ୍କା ସବୁ ସରିଯାଇଛି । ତା' ନାମଲେଖା ପାଇଁ ଦେଢ଼ଲକ୍ଷ ଟଙ୍କା ଆବଶ୍ୟକ । କୋଡ଼ିଏ ହଜାର ନିଅଣ୍ଟ ପଡୁଛି । ଜ୍ୱାଇଁଙ୍କୁ କହି ଟଙ୍କା ଆମକୁ ଦେଇଥା । ମାର୍ଚ୍ଚ ମାସରେ ପାଇଲେ ଆମେ ତୋତେ ଦେଇଦେବୁ ।"

କଲ୍ୟାଣୀ କୌଣସି ପ୍ରତିଶ୍ରୁତି ଦେଇ ପାରିଲାନି । ତା' ପାଖରେ ଟଙ୍କା ରହେନା । ଶରଦୀନ୍ଦୁଙ୍କ ଦରମାର ବଡ଼ ଅଂଶଟା ଭବିଷ୍ୟନିଧି ପାଣ୍ଠି, ଜୀବନ ବୀମା, ଗୃହଋଣ ପରିଶୋଧ ବାବଦକୁ କଟିଯାଏ । ବାକି ଟଙ୍କାରେ ଘର ଚଳେ । ଅଭାବ ଲାଗିଥାଏ । ତା' ସାଙ୍ଗକୁ ପୁସ୍ତକ, ପତ୍ରପତ୍ରିକା କିଣା, ବଗିଚା ଯତ୍ନ, ବନ୍ଧୁ ବେଭାର- ସବୁ ଶରଦୀନ୍ଦୁ ବୁଝନ୍ତି । କଲ୍ୟାଣୀ ରୁଷ୍ଟ ହେଲେ କହନ୍ତି ଟଙ୍କା ଦେଇଦେଉଛି । ଘର ଚଳାଅ ।

କଲ୍ୟାଣୀର ଭୟ ହୁଏ । ସେ ହିସାବ ଠିକ୍ ରଖିପାରେନା ।

ଦ୍ୱିଧାଗ୍ରସ୍ତ କଲ୍ୟାଣୀ । ଟଙ୍କା ନାହିଁ କହିବାକୁ ସଙ୍କୋଚ । ଅଥଚ ସଞ୍ଚୟ ନଥିବା କଥା ସିଏ ଜାଣେ । "ହଉ ସିଏ ଆସନ୍ତୁ ମୁଁ ତାଙ୍କୁ କହିବି ।"

ଧୀରା ମାଇଁ ପଠାଇଥିବା ଖବରଟାରେ ଖୁସି ହେବାର ଉପାଦାନ କିଛି ନଥିଲା । ଅଧିକନ୍ତୁ ରୁଷ୍ଟ ହେବାର ଅନେକ ଖୋରାକ । ସତରେ କ'ଣ ମାମୁଁଙ୍କର ଟଙ୍କା ଆବଶ୍ୟକ ଯାହା ତାଙ୍କ ପାଖରେ ନାହିଁ ? ଏମିତି ବି ହୋଇପାରେ- ନିଜ ଟଙ୍କାକୁ କୌଣସି ଲାଭଜନକ କାର୍ଯ୍ୟରେ ଖଟାଇ ବନ୍ଧୁବାନ୍ଧବମାନଙ୍କ ହାତ ଉଧାର ଟଙ୍କାରେ ପୁଅର ନାମଲେଖା ଦେୟ କାମ ଚଳାଇନେବେ । ଟଙ୍କା ପାଇଁ ମାଇଁଙ୍କର କୌଣସି ଅମର୍ଯ୍ୟାଦାଜନକ କାର୍ଯ୍ୟ କରିବାରେ ସଙ୍କୋଚ ନଥାଏ । ଏପରିକି ଥରେ ଚିରାଶାଢ଼ୀ ପିନ୍ଧି ଏକ ସରକାରୀ ଋଣ ନିମନ୍ତେ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟାଳୟରେ ଧାଡ଼ିରେ ଛିଡ଼ା ହୋଇଥିଲେ । ଏଥିପାଇଁ ମାମୁଁଙ୍କ ସ୍ୱୀକୃତି ଏବଂ ଋଣ ପାଇବାରେ ସଫଳତା ମିଳିଥିଲା କି ନା ସେଇଟା ଭିନ୍ନ କଥା, କିନ୍ତୁ ଖବର ଯିଏ ଦେଇଥିଲା ଏବଂ କଲ୍ୟାଣୀ ନିଜେ, ମାଇଁଙ୍କ ଏତାଦୃଶ କାର୍ଯ୍ୟକୁ ନାପସନ୍ଦ କରିଥିଲେ । ସେଇ ପ୍ରକାର ଋଣ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଶିକ୍ଷିତ ବେକାରମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ଧୀରା ମାଇଁଙ୍କ ସ୍ୱାମୀ ରାସ୍ତା ଏବଂ କୋଠାବାଡ଼ିର ଯନ୍ତ୍ରୀ, ଶିକ୍ଷିତା ଏବଂ ବେକାର ହେଲେ ମଧ୍ୟ ସେ ସେଇ ବର୍ଗରେ ଆସିବେ କି ନା, କଲ୍ୟାଣୀର ସନ୍ଦେହ ଥିଲା ।

ପିଲାମାନେ ଶୋଇଯିବା ପରେ ଶ୍ରୀକାନ୍ତ ମାମୁଁଙ୍କ ଧାର୍ ନେବା କଥା ଉଠାଇଲା କଲ୍ୟାଣୀ । ସେ ଭାବିଥିଲା ଏକଥା ଶୁଣି ଶରଦୀନ୍ଦୁ ରାଗିଯିବେ ଏବଂ ସିଧା ସିଧା ମନା କରିଦେବେ । ସିଏ କିନ୍ତୁ କହିଲେ, "ମୋ ପାଖରେ ଏତେ ଟଙ୍କା ତ ନାହିଁ । ତମ ପାଖରେ ଅଛି କି ?" ଅନ୍ୟ ସମୟ ହୋଇଥିଲେ କଲ୍ୟାଣୀ ଜବାବ ଦେଇଥାନ୍ତା, ଯେଉଁ ଟଙ୍କାଗୁଡ଼ାକ ମୋତେ ଦେଇଥିଲ ସେଗୁଡ଼ାକ ଅଛି । ସେ ଯଥାସମ୍ଭବ ସଂଯତ ରହି କହିଲା, "ଆମ ପାଖରେ ତ ଏତେ ଟଙ୍କା ନାହିଁ । ମୁଁ ଭାବୁଥିଲି ଚାରି ପାଞ୍ଚ ହଜାର ଟଙ୍କା ଦେଇଥାନ୍ତେ । ସତରେ ଯଦି ତାଙ୍କର ଟଙ୍କାର ଅଭାବ ଥାଏ ପିଲାଟା ଯାନ୍ତ୍ରିକ ବିଦ୍ୟାର୍ଟା ଲାଭ କରିପାରିବ ନାହିଁ । ତା' ଛଡ଼ା ସେ ଯଦି ଆଉଥରେ ମାଗିବା ପାଇଁ ଆସନ୍ତି ତେବେ ଦେବା, ନଚେତ୍ ନାଇଁ ।"

"ହଉ ଦେଖିବା"- ଶୋଇପଡ଼ିଲେ ଶରଦୀନ୍ଦୁ ।

ଶ୍ରୀକାନ୍ତ ମାମୁଁଙ୍କ କାର୍ଯ୍ୟାଳୟର ପିଅନ ଇତି ମଧ୍ୟରେ ଆସି ଭେଟୁଥିଲା ଏବଂ ଟଙ୍କା କଥାଟାକୁ ମନେପକାଇଦେଉଥିଲା । କେବଳ କଲ୍ୟାଣୀ ନୁହେଁ, ଶରଦୀନ୍ଦୁ ମଧ୍ୟ ଏକଥା ଶୁଣୁଥିଲା ଧୈର୍ଯ୍ୟର ସହ । ପ୍ରତି ତିନି ଚାରିଦିନ ବ୍ୟବଧାନରେ ଟଙ୍କା ଉଧାର

କଥା ଶୁଣି ଶୁଣି ବିରକ୍ତ ହୋଇଯାଇଥିବା ଶରଦୀନ୍ଦୁ ଦିନେ ଦଶହଜାର ଟଙ୍କା ଆଣି କଲ୍ୟାଣୀ ହାତରେ ଧରାଇଦେଲେ । ମାସ ଶେଷ ସପ୍ତାହରେ ଏତେଗୁଡ଼ାଏ ଟଙ୍କା ସଞ୍ଚୟ ଖାତାରୁ ଉଠାଇଲେ ନା ତାଙ୍କ ପାଖରେ ଥିଲା, ପଚାରିବାକୁ ସାହସ ହେଉ ନଥିଲା କଲ୍ୟାଣୀର । ତେବେ ନଟବର ହାତରେ ଟଙ୍କାଟା ପଠାଇଦେବା ପରେ ତାକୁ ହାଲୁକା ଲାଗୁଥିଲା ଅନ୍ତତଃ ସେଇ ସମୟ ପାଇଁ । ନଟବର ଆଉ ଆସିବନି । ଶରଦୀନ୍ଦୁଙ୍କ ନିକଟରେ ତାକୁ ଟଙ୍କା ଯୋଗାଡ଼ କରିବା ପାଇଁ କହିବା ଆବଶ୍ୟକ ପଡ଼ିବନି ।

କଲ୍ୟାଣୀର ଆଶା ଥିଲା ମାର୍ଚ୍ଚ ମାସ ଶେଷବେଳକୁ ମାମୁଁ ଟଙ୍କା ଫେରାଇଦେବେ । ତା'ର ଭୟ ହେଉଥିଲା ଶରଦୀନ୍ଦୁ ଉପଲକ୍ଷ୍ୟ କରି ପଚାରିଦେବେ । ମନେପକାଇ ଦେବାପାଇଁ ତାକୁ ସଙ୍କୋଚ ଲାଗୁଥିଲା । ଜୁଲାଇ ମାସ ବେଳକୁ ଶାଶୁଙ୍କର ଯେତେବେଳେ ଅସୁସ୍ଥତାର ଖବର ଆସିଲା, ଶରଦୀନ୍ଦୁ ବ୍ୟସ୍ତ ହେଲେ । ସଞ୍ଚୟ ଖାତା, ବନ୍ଧୁ, ସହକର୍ମୀମାନଙ୍କଠାରୁ ହାତ ଉଧାର ଆଣିଲେ ମଧ୍ୟ ନିଅଣ୍ଟ ପଡୁଥିଲା । ଶ୍ରୀକାନ୍ତ ମାମୁଁ ଏବଂ ଧୀରାମାଇଁଙ୍କ କଥା ସିଏ ଭୁଲିଯାଇଥିଲେ ନା କଲ୍ୟାଣୀର ଆତ୍ମୀୟ ଧାର୍‌ନେବା କଥା ଉଠାଇବାକୁ ଚାହୁଁ ନଥିଲେ । ଇତି ମଧ୍ୟରେ ପିଅନ ନଟବର ତା' ଗାଆଁକୁ ବଦଳି ହୋଇଯାଇଥିଲା । ତା'ର ଶେଷଥର ଦେଖାବେଳେ ମାମୁଁଙ୍କର ସହକାରୀ ଯନ୍ତ୍ରୀ ପଦବୀକୁ ପଦୋନ୍ନତି ଏବଂ ଭୁବନେଶ୍ୱର ଘର ସମ୍ପୂର୍ଣ୍ଣ ହେବା କଥା ଜଣାଇଥିଲା । ପୁଅ ପାଠପଢ଼ା ଡୋନେସନ୍ ପାଇଁ ଧାର ମାଗୁଛନ୍ତି, ଅଥଚ ଘର ସମ୍ପୂର୍ଣ୍ଣ କରି ଭଡ଼ା ଦିଆ ସରିଲାଣି । ବଡ଼ ବେଖାପ ଲାଗୁଥିଲା ତାଙ୍କର ସ୍ୱଭାବ । ଶରଦୀନ୍ଦୁଙ୍କ ସେ ସମ୍ବନ୍ଧୀୟ ନୀରବତା କଲ୍ୟାଣୀକୁ ସଂକୁଚିତ ଓ ଶଙ୍କାଗ୍ରସ୍ତ କରୁଥିଲା । ମାଆର ଚିକିତ୍ସା ପାଇଁ ସେ ସମସ୍ତଙ୍କୁ ହାତ ବଢ଼ାଉଛନ୍ତି, ଅଥଚ ଶ୍ରୀକାନ୍ତ ମାମୁଁଙ୍କ ଧାରନେବା କଥା ମୋଟେ ଉଠାଉ ନାହାନ୍ତି । ନିଜେ ମାଗି ପଠାଇବାଟା ଅସୌଜନ୍ୟ ମନେ ହେଲା । ବୋଉ ନିକଟକୁ ଖବର ପଠାଇଲା କଲ୍ୟାଣୀ । ବୋଉ ଅନ୍ତତଃ ତାଙ୍କୁ ଜଣାଉ ।

ପ୍ରାୟ ଗୋଟାଏ ମାସ ଧରି ଗାଆଁକୁ ଦୌଡ଼, ଅର୍ଥ ସଂଗ୍ରହ, ଶାଶୁଙ୍କ ଚିକିତ୍ସାର ଅନୁଧ୍ୟାନ ଏବଂ ଆରୋଗ୍ୟ ପରେ ଶରଦୀନ୍ଦୁ ପୁଣି ଯେତେବେଳେ ବଗିଚା, କାର୍ଯ୍ୟାଳୟ, ପିଲାଙ୍କ ପାଠପଢ଼ା ସମ୍ବନ୍ଧରେ ଆଗ୍ରହୀ ହେବା ଆରମ୍ଭ କଲେ, ବୋଉଠାରୁ ଖବର ଆସିଲା । ଖବରଟା ଧୀରା ମାଇଁଙ୍କ ଜୀବନ ଶୈଳୀର ଯେଉଁ ଦିଗଟି ଉନ୍ମୋଚନ କରୁଥିଲା ସେଇଟା ଖୁବ୍ ସମ୍ମାନଜନକ ମନେ ହେଲାନି କଲ୍ୟାଣୀର । ବୋଉ ଲେଖିଥିଲା – ଧୀରା ନିଜର ବଡ଼ଲୋକି ପ୍ରତିପାଦିତ କରିବା ପାଇଁ ନିଜକୁ ବିଜ୍ଞାପିତ କରିବାରେ ବ୍ୟସ୍ତ । ଏଥିପାଇଁ ଭୁବନେଶ୍ୱରରେ ଦ୍ୱିତଳ ପ୍ରାସାଦ ନିର୍ମାଣ କରୁଛି । ନୂଆ ନୂଆ ଶାଢ଼ୀ କିଣୁଛି । ବଡ଼ ବଡ଼ ଲୋକଙ୍କର ବିବାହାଦି କାର୍ଯ୍ୟରେ ଯୋଗଦେଇ ତା' ଅପେକ୍ଷା

ଅଧିକ ମର୍ଯ୍ୟାଦାସମ୍ପନ୍ନ ମହିଳାମାନଙ୍କ ସଙ୍ଗେ ମିଶିବାର ଚେଷ୍ଟା କରୁଛି । ଅଥଚ ନିଜ ବନ୍ଧୁମାନଙ୍କ କାର୍ଯ୍ୟ ନିର୍ବନ୍ଧରେ ମୋଟେ ଆସୁନି ବା କେବଳ ଯୋଗଦେଇ ଅନ୍ୟ ସ୍ତ୍ରୀ ଲୋକମାନଙ୍କଠାରୁ ଦୂରେଇ ରହୁଛି । ଏଥିପାଇଁ ଆବଶ୍ୟକ ହେଉଥିବା ଅର୍ଥ ଯୋଗାଡ଼ ପାଇଁ ଶ୍ରୀକାନ୍ତକୁ ବାଧ କରୁଛି । ନିଜ ମଧ୍ୟବିତ୍ତ ପରିବାରର ଛାପ ପରିହାର କରିବା ପାଇଁ କାର୍‌ରେ ଯିବାଆସିବା କରୁଛି । ସବୁଠୁ ବେଶୀ ଉଲ୍ଲେଖନୀୟ ହେଲା, ଗୋଟାଏ ବାହାନା କରି ବନ୍ଧୁବାନ୍ଧବମାନଙ୍କଠାରୁ ଧାର୍ ଆଣୁଛି । ଗୃହ ନିର୍ମାଣ, ପୁଅ ପଢ଼ାର ଡୋନେସନ ବା ପଞ୍ଚାୟତ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା- ଏସବୁ କାମ ପାଇଁ ଅର୍ଥ ଆବଶ୍ୟକ । ସମସ୍ତଙ୍କୁ ଏକାପ୍ରକାର ପ୍ରତିଶ୍ରୁତି- ମାର୍ଚ୍ଚ ମାସ ବା ପୂଜା । ଅର୍ଥାଗମନର ସମୟ । ସେଇ ସମୟରେ ଶୁଝି ଦେବି- ଶ୍ରୀକାନ୍ତ ପ୍ରତିଶ୍ରୁତି ଦିଏ । ସରକାରଙ୍କ ଆର୍ଥିକ ବର୍ଷ ଶେଷ ହୁଏ । ଶରତର ଦୁର୍ଗା ଆବାହନ ସ୍ମୃତିରୁ ମିଳେଇଯାଏ । ମିଳେଇଯାଏ ଶ୍ରୀକାନ୍ତ ମାମୁଁଙ୍କ ସ୍ମୃତିରୁ ଧାର କରଜ ଦେଇଥିବା ମଣିଷମାନଙ୍କର ମୁହଁ । ସବୁ ସେଇ ଧୀରାର ପରାମର୍ଶ ।

ବୋଉ ଜଣାଇଥିଲା- ଶ୍ରୀକାନ୍ତ ମାମୁଁଙ୍କ ସମ୍ପର୍କୀୟ ଭାଇ ଅମରେନ୍ଦ୍ର ମାମୁଁ । କିରାଣୀ ଚାକିରିରୁ ଅବସର ନେଇ ଭଡ଼ାଘରେ ରହୁଥିଲେ କଟକରେ । ବଡ଼ ଝିଅ ବାହାଘର ପାଇଁ ସଞ୍ଚିତ ଅର୍ଥ ଉପରେ ନଜର ପଡ଼ିଲା ଧୀରା ମାଇଁଙ୍କର । ପହଞ୍ଚିଗଲେ ଶ୍ରୀକାନ୍ତ ମାମୁଁ । ଖୁବ୍ ନମ୍ର ଭାବରେ କହିଲେ, "ଭାଇ ବ୍ୟାଙ୍କ୍‌ରେ ରଖି କେତେ ସୁଧ ପାଇବ ? ମୋର ଟଙ୍କା ମିଳିବ ମାର୍ଚ୍ଚ ଏପ୍ରିଲ୍ ମାସରେ । ଘର କାମଟା ଅଧା ପଡ଼ିଛି । ସମ୍ପୂର୍ଣ୍ଣ ହୋଇଗଲେ ଭଡ଼ା ଲାଗିଯିବ । ତମକୁ ସୁଧ ଦେବି ବ୍ୟାଙ୍କ୍ ଅପେକ୍ଷା ଏକ ପ୍ରତିଶତ ଅଧିକ ।" ତାଙ୍କ ଝିଅର ବାହାଘର ସ୍ଥିର ହୋଇ ନଥିଲା; ମାର୍ଚ୍ଚ ଏପ୍ରିଲ୍ ପୂର୍ବରୁ ହେବାର ସମ୍ଭାବନା ମଧ୍ୟ ନଥିଲା । ଅମରେନ୍ଦ୍ର ମାମୁଁଠାରୁ ଚାଳିଶ ହଜାର ଟଙ୍କାନେଇ ଦ୍ୱିତୀୟ ମହଲା ଛାତ ପକାଇବାରେ ଲାଗିଗଲେ ଧୀରା ମାଇଁ ଏବଂ ଶ୍ରୀକାନ୍ତ ମାମୁଁ । ମେ' ମାସ ଶେଷ ବେଳକୁ ଅମରେନ୍ଦ୍ର ମାମୁଁଙ୍କ ଝିଅ ବିବାହ ସ୍ଥିରୀକୃତ ହେଲା । ଖବର ପଠାଇଲେ ମଧ୍ୟ ଶ୍ରୀକାନ୍ତ ମାମୁଁଙ୍କର ଦର୍ଶନ ନାହିଁ । ବହୁବାର ଦୌଡ଼ି ବ୍ୟତିବ୍ୟସ୍ତ ଓ ହତାଶ ହୋଇପଡ଼ିଲେ ଅମର ମାମୁଁ । ତାଙ୍କ ପକ୍ଷେ ଚାଳିଶ ହଜାର ଟଙ୍କା ଭରଣା କରିବା ଅସମ୍ଭବ ବ୍ୟାପାର ଥିଲା । ଅନ୍ୟ ଭାଇମାନେ ଖବର ପାଇବା ପରେ ଶ୍ରୀକାନ୍ତ ମାମୁଁ ଉପରେ ଚାପ ପକାଇଲେ । ଶେଷରେ ବାହାଘର ଅଳ୍ପଦିନ ପୂର୍ବରୁ ଟଙ୍କାଦେଲେ ଶ୍ରୀକାନ୍ତ ମାମୁଁ ।

ଇଏ ହେଲା ଧୀରା ମାଇଁ ଏବଂ ଶ୍ରୀକାନ୍ତ ମାମୁଁଙ୍କ ଚରିତ୍ରର ଗୋଟିଏ ଦିଗ । ଯେଉଁ ଅନ୍ୟ ପ୍ରସଙ୍ଗ ବୋଉ ଜଣାଇଥିଲା, ତାକୁ ଶୁଣି ଏକ ପ୍ରକାର ବିସ୍ମୟାଭିଭୂତ

ହୋଇ ପଡ଼ିଲା କଲ୍ୟାଣୀ । ଅମରେନ୍ଦ୍ର ମାମୁଁଙ୍କ ଝିଅ ବାହାଘରକୁ ନିମନ୍ତ୍ରିତ ଅତିଥି ହୋଇ ଗଲାପରେ ଧୀରାମାଇଁ ଅନ୍ୟମାନଙ୍କଠାରୁ ଦୂରତ୍ୱ ରକ୍ଷାକରି ମୁହଁରେ ଏକ କୃତ୍ରିମ ଗାମ୍ଭୀର୍ଯ୍ୟର ବାତାବରଣ ସୃଷ୍ଟି କରିବାର ଚେଷ୍ଟା କଲେ । କନ୍ୟା ବିଦା ହେବାକୁ ଅପେକ୍ଷା ନକରି ଅନ୍ୟମାନଙ୍କ ପୂର୍ବରୁ ସକାଳୁ ସକାଳୁ ଭୁବନେଶ୍ୱର ଚାଲିଗଲେ । ସେଇ ପ୍ରସ୍ତାବକୁ କେହି ଗୁରୁତ୍ୱ ଦେଇନଥାନ୍ତେ ବା ଦେଇଥିଲେ ଶୀଘ୍ର ଭୁଲିଯାଇଥାନ୍ତେ । ଅମରେନ୍ଦ୍ର ମାମୁଁଙ୍କ ସ୍ତ୍ରୀ କିନ୍ତୁ ଲୁଚାଇ ପାରିଲେନି ଧୀରା ମାଇଁଙ୍କ ଲୋଭକୁ ।

ବିବାହ ପରେ ନିମନ୍ତ୍ରିତ ଆତ୍ମୀୟ ସ୍ତ୍ରୀଲୋକମାନଙ୍କୁ ଶାଢ଼ୀ ଉପହାର ଦେବା ବିଧି । ସୁମିତ୍ରା ମାଇଁ ଧୀରା ମାଇଁଙ୍କ ନିକଟକୁ ଦୁଇଟି ଶାଢ଼ୀ ପଠାଇଥିଲେ, ଗୋଟିଏ ନିଜେ ରଖି ଅନ୍ୟଟି ଝିଆରୀ କୁସୁମକୁ ଦେବା ପାଇଁ । ତିନିମାସ ପରେ କୁସୁମ ଖବର ପଠାଇଲା ସୁମା ମାଇଁଙ୍କ ନିକଟକୁ । "ଧୀରା କ'ଣ ଶାଢ଼ୀ ଦେଇନି ?" ନାସ୍ତିସୂଚକ ଉତ୍ତର ଶୁଣି ଖବର ପଠାଇଲେ ଧୀରା ମାଇଁଙ୍କ ନିକଟକୁ । ଧୀରା ମାଇଁଙ୍କର ସହଜ ଓ ଦ୍ୱିଧାହୀନ ସ୍ୱୀକାରୋକ୍ତି । "ମୋତେ ଦୁଇଟାଯାକ ଶାଢ଼ୀ ଭଲ ଲାଗିଲା । ତେଣୁ ରଖିଦେଲି ।" ସୁମା ମାଇଁ କ'ଣ କରିବେ ବୁଝି ପାରିଲେନି । ଯଦି ଦୁଇଟାଯାକ ରଖିଲୁ, ଖବର ପଠାଇବା ଉଚିତ ଥିଲା । କୁସୁମକୁ ଆଉ ଗୋଟେ ଦିଆଯାଇଥାନ୍ତା । ତା' ଛଡ଼ା ଗୋଟେ ଶାଢ଼ୀର ଦାମ୍ ବା କେତେ ? ହୁଏତ ପାଞ୍ଚ ସାତ ଶହ ହେବ । ଏତିକି ଟଙ୍କା ଶ୍ରୀକାନ୍ତର ନାହିଁ ? ବିବାହ ମର୍ଯ୍ୟାଦା ପାଇଁ ପଠାଇଥିବା ଶାଢ଼ୀ ଉପରେ ଏତେ ଲୋଭ !

ବୋଉ ନିକଟରୁ ଅନ୍ୟ ଖବର ମଧ୍ୟ ଆସିଲା- ଧୀରା ମାଇଁଙ୍କ ଦିଅର ବିରେନ୍ ମାମୁଁ । ଠିକାଦାରୀ କରୁଥିଲେ ଆଦ୍ୟ ଯୌବନରେ; ଗୋଟେ ଝିଅକୁ ଭଲ ପାଉଥିଲେ । ବାହାହୋଇ ପାରିଲେନି । ତାଙ୍କ ବାହାଘର କଥା ଭାଇମାନେ କେହି ବୁଝିଲେନି । ଚିର କୌମାର୍ଯ୍ୟ ବ୍ରତକୁ ଗ୍ରହଣ କରିନେଲେ । ଏକଦା ତାଙ୍କର ଠିକାଦାରୀ ଜୋର୍‌ରେ ଚାଲୁଥିଲା ରାଜ୍ୟର ବିଭିନ୍ନ ଜିଲ୍ଲାମାନଙ୍କରେ । ମଝିରେ ମଝିରେ କୁଆଡ଼େ ଚାଲିଯାଆନ୍ତି । ହଠାତ୍ ଆସି ପହଞ୍ଚିଯାନ୍ତି ଭାଇମାନଙ୍କ ପାଖରେ । ଭାଉଜମାନଙ୍କ ପାଇଁ ଶାଢ଼ୀ କିଣିଦିଅନ୍ତି । ପିଲାମାନଙ୍କ ପାଇଁ କିସମ କିସମର ପୋଷାକ । ଭୋଜି ଭ୍ରମଣ ହୁଏ । ଏବେ ବୟସ ହୋଇଗଲାଣି । ଠିକାଦାରୀ ପ୍ରାୟତଃ ଛାଡ଼ି ଦେଲେଣି । ତେବେ ଭ୍ରମଣ ପ୍ରକୃତି ଛାଡ଼ି ନାହାନ୍ତି । ତାଙ୍କ ଅବସ୍ଥିତିର ଖବର କାହା ପାଖରେ ନଥାଏ । ଏବେ କିନ୍ତୁ ଅକସ୍ମାତ୍ ଦିନେ ପହଞ୍ଚିଲେ ଧୀରା ମାଇଁ ଏବଂ ଶ୍ରୀକାନ୍ତ ମାମୁଁଙ୍କ ନିକଟରେ । ଦିଶୁଥିଲେ ଦୁର୍ବଳ ଏବଂ ଅବସନ୍ନ । ସେ ଖୁବ୍ ଅସୁସ୍ଥ ମନେ ହେଉଥିଲେ । ପିତକୋଷରେ ପଥର ଯୋଗୁଁ ତାଙ୍କ ପେଟ ଯନ୍ତ୍ରଣା ହେଉଥିଲା । ସେଥିଯୋଗୁଁ ସେ କିଛି ଖାଇପାରୁନଥିଲେ । ଡାକ୍ତରଙ୍କ ପରାମର୍ଶ ଅନୁସାରେ ତାଙ୍କର ଅସ୍ତ୍ରୋପଚାର ହେବା ସ୍ଥିର ହୋଇଥିଲା । ସେଥିପାଇଁ ସେ

କିଛି ଟଙ୍କା ଧୀରା ମାଇଁଙ୍କୁ ଦେଇଥିଲେ । ଆଉ କିଛି ନିଅଣ୍ଟ ପଡୁଥିବାରୁ ଟଙ୍କା ଯୋଗାଡ଼ ଉଦ୍ଦେଶ୍ୟରେ ପନ୍ଦରଦିନ ପାଇଁ କୁଆଡ଼େ ଯାଇଥିଲେ । ଅସ୍ତ୍ରୋପଚାର ଦିନ ସ୍ଥିର କରି ଟଙ୍କା ମାଗିଲେ ବିରେନ୍ ମାମୁଁ । ଟଙ୍କା କଥା ଶୁଣି ହସି ପକାଇଲେ ଧୀରା ମାଇଁ । "ଆରେ ଆରେ । ତୁମର ଏତେ ଶୀଘ୍ର ଟଙ୍କା ଦର୍କାର ପଡ଼ିବ ମୁଁ ଜାଣି ନଥିଲି । ଘର କାମ ଲାଗିଥିଲା, ଦର୍କାର ପଡ଼ିଲା । ଖର୍ଚ୍ଚ ହୋଇଯାଇଛି ।" ତେବେ କେବେ ଫେରାଇବେ ତା'ର ସୂଚନା କିଛି ନଥିଲା । ବିରେନ୍ ମାମୁଁଙ୍କ ପେଟର ଯନ୍ତ୍ରଣା ତୀବ୍ରତର ହେଉଥିଲା । ସେ କହିଥିଲେ, "ମୁଁ ତୁମକୁ କହିଥିଲି ଭାଉଜ ପନ୍ଦର ଦିନ ପରେ ମୋର ଅପରେସନ୍ ହେବ । ଅଥଚ... ।" ସେ ଆଉ କିଛି କହିନଥିଲେ । ଧୀରା ମାଇଁଙ୍କର କୌଣସି ଅନୁଶୋଚନା ନଥିଲା ବା ଟଙ୍କା ଯୋଗାଡ଼ କରି ଦେବାର ବ୍ୟଗ୍ରତା ନଥିଲା ।

ଏହା ପରର ଘଟଣା ଖୁବ୍ ସ୍ୱଚ୍ଛ । ବିରେନ୍ ମାମୁଁ ଅନ୍ୟ ଭାଇମାନଙ୍କ ସହାୟତାରେ ଅସ୍ତ୍ରୋପଚାର କରାଇଲେ । ଧୀରା ମାଇଁ ଏବଂ ଶ୍ରୀକାନ୍ତ ମାମୁଁ ବିରେନ୍ ମାମୁଁଙ୍କ ଶଯ୍ୟାଶାୟୀ ଅବସ୍ଥାରେ ଥରେ ଯାଇଥିଲେ ।

ଭାଇମାନେ ଶ୍ରୀକାନ୍ତ ମାମୁଁଙ୍କୁ ଥରେ ମନେପକାଇଦେଇଥିଲେ ଯେ ବିରେନ୍ ଟଙ୍କାକୁ ସେମାନେ ଏପରି ଖର୍ଚ୍ଚ କରିଦେବା ଉଚିତ୍ ନଥିଲା । ଧୀରା ମାଇଁ ଖବର ପାଇଥିଲେ ଏବଂ ନୀରବ ରହିଥିଲେ ।

ଏହାପରେ ଶ୍ରୀକାନ୍ତ ମାମୁଁ ଚାକିରିରୁ ଅବସର ନେଇ ସରକାରୀ ବାସଗୃହଟାକୁ ଜବରଦସ୍ତ ଅକ୍ତିଆରରେ ରଖିଥିଲେ । ନୂଆ ତୋଳାଇଥିବା କୋଠାଘରକୁ ଗୋଟେ ଘରୋଇ ଯାନ୍ତ୍ରିକ ମହାବିଦ୍ୟାଳୟର ଛାତ୍ରାବାସ ନିମନ୍ତେ ଚଢ଼ା ଦରରେ ଭଡ଼ା ଦେଇଥିଲେ । ଧୀରା ମାଇଁଙ୍କ ପ୍ରରୋଚନାରେ ଗାଁ ସରପଞ୍ଚ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରି ଅନେକ ଟଙ୍କା ଖର୍ଚ୍ଚ ସତ୍ତ୍ୱେ ପରାସ୍ତ ହେଲେ । ଏବେ ରାଜଧାନୀରେ ବୁଲି ବୁଲି ଚାକିରି ବା ବଦଳି ଅନ୍ୱେଷୀ ହତାଶିଆ ମଣିଷମାନଙ୍କ କାମ କରିଦେବାର ପ୍ରତିଶ୍ରୁତି ଦେଇ ଟଙ୍କା ଉପାର୍ଜନ କରୁଛନ୍ତି । ଅବଶ୍ୟ କେତେଜଣଙ୍କ କାମ ସିଏ କରିଦେଲେଣି, କଲ୍ୟାଣୀ ଜାଣେନା । କିନ୍ତୁ ଟଙ୍କା ଫେରି ପାଇବାର ଆଶା ସିଏ ଛାଡ଼ି ଦେଲାଣି । ଶରଦୀନ୍ଦୁଙ୍କ ପାଖରେ ବସିଥିବା ବେଳେ ଯଦି ଶ୍ରୀକାନ୍ତ ମାମୁଁଙ୍କ ଧାର ନେବା କଥା ମନେ ପଡ଼ିଯାଏ, ତେବେ ସିଏ ସ୍ୱଗତୋକ୍ତି କରେ, "ଏବେ କ'ଣ ତୁମର ଟଙ୍କାର ଅଭାବ ? ଅମର ମାମୁଁ, ବିରେନ୍ ମାମୁଁ ଆଉ ମୋ ଭଳି ଅସହାୟ ମଣିଷମାନଙ୍କର ଟଙ୍କା ଆତ୍ମସାତ୍ କରି ତୁମେ କି ଆନନ୍ଦ ପାଇଲ ଏବଂ ନିଜ ଛୋଟଲୋକି ପଣିଆକୁ ପଦାରେ ପକାଇଦେଲ । ଏଥିରେ ଧୀରା ମାଇଁଙ୍କ ଅବଦାନ ଅଛି କି ନାହିଁ ?"

□□

# ସନ୍ତକ

ପର୍ଶୁ ଟ୍ରକ୍‌ରୁ ଓହ୍ଲାଇ ହାଟ ଛକରେ ପହଞ୍ଚିବା ବେଳକୁ ଦୋକାନ ବଜାର ବନ୍ଦ ହୋଇଯାଇଥିଲା । ଶେଷ ଦୋକାନୀ ଭାବେ ସନ୍ନ୍ୟାସୀ ତା’ ଉଠା ଚୁଲୀକୁ ସଜାଡୁଥିଲା ମିଠା ଆଲମାରି ସାମ୍ନାରେ । ଅନ୍ଧାର ମାଡ଼ି ଆସୁଥିଲା ଚାରିଆଡୁ ଛକ ଉପରକୁ । ତାସ୍ ଖେଳର ଆସର ଜମୁଥିବା ବନମାଳୀ ପାନ କ୍ୟାବିନ୍ ସାମ୍ନାରେ କେହି ଦେଖାଯାଉ ନଥିଲେ । କୁକୁର ତିନି ଚାରିଟା ଲଗାଲଗି ହୋଇ ଶୋଇଥିଲେ ଦିନମଣି ବୁଢ଼ା ବାରଣ୍ଡାରେ । ପୋଷା ନୁହନ୍ତି । କୁଆଡ଼େ କୁଆଡ଼େ ବୁଲନ୍ତି – ରାତି ଆଠଟା ସୁଦ୍ଧା ଆସି ପହଞ୍ଚିଯାନ୍ତି ଦିନମଣି ସ୍ତ୍ରୀ ଶଶିମଣିଙ୍କ ହାତର ଫାଳେ ଚଉଠେ ରୁଟି ପାଇଁ । ତା’ପରେ ରାତିସାରା ସେଇଠି ପଡ଼ିଥାନ୍ତି । ବୁଢ଼ା ପରିସ୍ରା କରିଗଲେ ତା’ ପଛେ ପଛେ ଯାଆନ୍ତି । ବୁଢ଼ାର କାଶ ଉଠିଲେ କାନ ଡେରି ଶୁଣନ୍ତି, ଅପେକ୍ଷା କରନ୍ତି ବୁଢ଼ାର ଉଠିବାକୁ । ପ୍ରତିଯୋଗିତା କରନ୍ତି ତାକୁ ଜଗିବାକୁ । ନିଃସନ୍ତାନ ବୁଢ଼ା ଦିନମଣି କୋଉ ଗୋଟେ କମ୍ପାନୀର ଫୋରମ୍ୟାନ୍ ଥାଇ ଅବସର ନେଇଥିଲା ଏବଂ ଗାଆଁକୁ ଆସି ଧାଡ଼ିଏ ଲମ୍ବା ଘର କରି ଦେଇଥିଲା । ମଝିରେ ମଝିରେ ମଦ ଖାଉଥିଲା ଆଉ ଗୋଟେ ପୁରୁଣା କାଠ ଚୌକି ଉପରେ ବସି ଦାସିଆ ବାରିକକୁ ରାଜକୀୟ ଠାଣିରେ ଆଦେଶ ଦେଉଥିଲା । ମଦ ଖାଇବା ଛାଡ଼ି ଦେଇଛି ଏବେ । ଗୁଡ଼ାଏ ଦିନ ଜ୍ୱରରେ ପଡ଼ି ଦୁର୍ବଳ ହୋଇଯାଇଛି । ରକ୍ତ ନାହିଁ ବୋଲି ଡାକ୍ତର କହୁଛନ୍ତି । ଟଙ୍କା ଅଭାବରୁ ଚିକିତ୍ସା ହୋଇପାରୁନି । ତା’ଯତ୍ନ ନେବାକୁ କେହି ନାହିଁ । ପରଶୁର ମନ ଦୁଃଖ ହେଲା । ପୁଅ ଝିଅ କିଏ ଥିଲେ ଡାକ୍ତରଖାନାକୁ ନେବାର ବ୍ୟବସ୍ଥା କରାଯାଇ ପାରୁଥାନ୍ତା ଅନ୍ତତଃ ।

ସନ୍ନ୍ୟାସୀ ଡାକ ପକାଇଲା, “ପରଶୁ ଭାଇ ଗାଡ଼ି ନେଇଯା । ମୁଁ ଦୋକାନ ବନ୍ଦ କରିବି ।” ଗ୍ରାହକମାନଙ୍କୁ ଭାଇ ଡାକିବା ଏବଂ ପ୍ରଥମ ପ୍ରବେଶରେ ନମସ୍କାର ପକାଇବା ସନ୍ନ୍ୟାସୀର ଅଭ୍ୟାସ । ଅଭ୍ୟାସ ବା ଜନସମ୍ପର୍କ ବଢ଼ାଇବାର କଳା, ଯାହା ହେଉ ସନ୍ନ୍ୟାସୀ ଦିନ ତମାମ ବ୍ୟସ୍ତ ରହେ ଖୁବ୍ ଉଚ୍ଚମାନର ଜଳଖିଆ ପ୍ରସ୍ତୁତ ନ କରିବା ସତ୍ତ୍ୱେ । ଗୁଡ଼ାଏ ବାକି ପଡ଼ିଛି– ଆଦାୟ ହେବାର ସମ୍ଭାବନା କ୍ଷୀଣ । ଭଡ଼ାଘରେ ବସା ଆରମ୍ଭ କରିଥିବା ସନ୍ନ୍ୟାସୀ ସରକାରୀ ଜମିରେ ଘର ତିଆରି କରି ସ୍ଥାୟୀ ପଟ୍ଟା ପାଇଁ ଦରଖାସ୍ତ

କଲାଣି । କଳାଧଳା ପୋଟେବଲ୍ ଟି.ଭି., ଗ୍ରାଇଣ୍ଡର କିଣିଲାଣି । ପାଠପଢ଼ା ପ୍ରତି ଅନାଗ୍ରହ ପ୍ରକାଶ କରୁଥିବା ବଡ଼ପୁଅର ନାଁ କଲେଜରେ ଲେଖାଯାଇଛି । ସ୍ତ୍ରୀର ପସନ୍ଦ ଅନୁସାରେ ସାନପୁଅ ପାଖ ସହରରେ ଗୀତ ଶିଖୁଛି । ସନ୍ନ୍ୟାସୀ ସଂଗୀତ ବିଷୟରେ କିଛି ବୁଝେନା । ବଡ଼ ପୁଅ କି ପାଠ ପଢୁଛି ଜାଣେନା । ରାତି ଚାରିଟାରୁ ଉଠି ଚୁଲିରେ ଆଞ୍ଚ ଧରାଇବା, ତେଲ କରେଇରେ ବରା ପକୁଡ଼ି ଛାଣିବା, ପତରରେ ଗ୍ରାହକମାନଙ୍କ ହାତକୁ ବଢ଼ାଇବା, ପଇସା ରଖିବା, ମସିଆ ଖାତାରେ ବାକି ଲେଖିବା, ତେଲ ଚିକିଟା ଲୁଙ୍ଗି ଗାମୁଛାକୁ ଧୋଇ ଦିନ ବାରଟାରେ ବୁଡ଼ ପକାଇବା ଏବଂ ଉପର ବେଳା ତିନିଟାଠାରୁ ରାତି ନଅ ଦଶ ପର୍ଯ୍ୟନ୍ତ କଳା ଢଙ୍କା ବଲ୍ ତଳେ ତେଲ କଢ଼େଇ, ଜାଲିଚଟୁରେ ନିମଗ୍ନ ହୋଇଯିବା ମଧ୍ୟରେ ନିଜକୁ ଆବଦ୍ଧ ରଖି ଅନ୍ୟକଥା ଭୁଲିଯାଏ ସନ୍ନ୍ୟାସୀ ।

ସନ୍ନ୍ୟାସୀକୁ ପରଶୁ ଦେଖି ଆସିଛି ତା' ପିଲାଟି ବେଳୁ, ଯେତେବେଳେ ସିଏ ହାପ୍‌ପ୍ୟାଣ୍ଟ ପିନ୍ଧି ସ୍କୁଲକୁ ପଢ଼ିବାକୁ ଆସୁଥିଲା । ନିଜସ୍ୱ ସମ୍ପତ୍ତି ଅର୍ଜନ କରିଛି ସନ୍ନ୍ୟାସୀ । ପର୍ଶୁ ପଢ଼ାଛାଡ଼ି ଅଟୋରିକ୍ସା ଚଳାଇବା ଆରମ୍ଭ କରିଛି । ତା'ପରେ ଟ୍ରାକ୍ଟର । ଏବେ ଟ୍ରକ୍‌ର ଡ୍ରାଇଭର । ଟ୍ରକ୍ ନେଇ ଅନେକ ଦୂର ଯାଏ । ବାହାରେ ରହିଯାଏ ଦୁଇ ଚାରିଦିନ । ତେବେ ବାହାହେବା ପରଠାରୁ ଲାଇନ୍ ଟ୍ରକ୍ ଛାଡ଼ିଦେଇ ସ୍ଥାନୀୟ ଟ୍ରକ୍ ଚଳାଉଛି । ସକାଳେ ଯାଇ ରାତି ନଅ ଦଶଟା ସୁଦ୍ଧା ଫେରିଆସେ ।

ସନ୍ନ୍ୟାସୀ ଦୋକାନୀ କାନ୍ଥକୁ ଆଉଜାଇ ରଖାହୋଇଥିବା ସାଇକେଲ୍‌କୁ ବାହାର କରୁ କରୁ ଚାରିଆଡ଼କୁ ଚାହୁଁଥିଲା ପର୍ଶୁ । ସବୁଦିନ ରତିକାନ୍ତ ତା' ଷ୍ଟେସନାରୀ ଦୋକାନ ନିକଟରେ ଅପେକ୍ଷା କରିଥାଏ । ତା' ସାଙ୍ଗରେ ଆଉ ଜଣେ ଦୁଇଜଣ ମଧ୍ୟ ଥାଆନ୍ତି । ଆଜି କେହି ଦିଶୁ ନାହାନ୍ତି । ଶୀତ ଯୋଗୁଁ ଦୋକାନ ବନ୍ଦକରି ଚାଲିଗଲାଣି ନା ମୋଟେ ଆସିନି ?

ହାଟ ଛକରୁ ତାଙ୍କ ଗାଁ ଚାରି କିଲୋମିଟର ଦୂର । ମଝିରେ ବିଲମାଳ । ବୁଦୁବୁଦିକିଆ ଜଙ୍ଗଲ, ପଡ଼ିଆ, ମଶାଣୀ, କାଜୁ ବଗିଚା । ମଶାଣୀର ଅଳ୍ପଦୂରରେ ନୀଳକଣ୍ଠେଶ୍ୱର ମହାଦେବଙ୍କ ମନ୍ଦିର । ଲୋକମାନଙ୍କ ଚଳପ୍ରଚଳ ଥାଏ । ଗହୀର ବିଲରେ ଧାନ, ରବି, ପନିପରିବା ଚାଷ ହୁଏ । ଚାଷୀମାନେ ଚାଳିଆ କରି ଜଗିଥାଆନ୍ତି । କିଛି ନହେଲେ ଅନେକ ରାତିଯାଏଁ ଫସଲର ଜଗାରଖା କରୁଥାଆନ୍ତି । ଲକ୍ଷ୍ମୀଙ୍କର ବିହାର ସ୍ଥଳୀ । ଡର ଲାଗେନା । ମାତ୍ର ସେଇ ବୁଦୁବୁଦିକିଆ ଜଙ୍ଗଲ ଭିତର ଦେଇ ଯାଇଥିବା ରାସ୍ତା ଖଣ୍ଡକ ମାଡ଼ି ମାଡ଼ି ପଡ଼େ । ଆଗେ ଆଗେ ଲାଗୁ ନଥିଲା । ପ୍ରାୟ ପାଞ୍ଚବର୍ଷ ତଳେ ଖରାଦିନ ଦ୍ୱିପ୍ରହରେ ଏଇ ନିଛାଟିଆ ରାସ୍ତାରେ ଯାଉଥିବା ଜଣେ ହଳଦୀ ବେପାରୀକୁ ପେଶାଦାର ଗୁଣ୍ଡାମାନେ ମରଣାନ୍ତକ ଆକ୍ରମଣ କରିଥିଲେ । ମୁମୂର୍ଷୁ

ଅବସ୍ଥାରେ ପଡ଼ିଥିବା ଲୋକଟାକୁ ଡାକ୍ତରଖାନାକୁ ଅଣାଯାଇଥିଲା । ସେଠି ପହଞ୍ଚିବାର ଅଳ୍ପ ସମୟ ପରେ ତା'ର ମୃତ୍ୟୁ ଘୋଷଣା କରିଥିଲେ ଡାକ୍ତରମାନେ । ଆତତାୟୀ, ଷଡ଼ଯନ୍ତ୍ରକାରୀ ସମସ୍ତେ ଧରାପଡ଼ିଥିଲେ । ବିଚାର ପରେ କେଇଜଣ କାରାଦଣ୍ଡ ଭୋଗୁଛନ୍ତି । କିଛି ଲୋକ ଖଲାସ ହୋଇଛନ୍ତି । ପାରିବାରିକ ବିଦ୍ୱେଷ, ସ୍ଥାବର ସମ୍ପତ୍ତିର ଅଧିକାର ତଥା ମାଲିକାନା ସାବ୍ୟସ୍ତ କାରଣରୁ ଗଣ୍ଡଗୋଳର ସୂତ୍ରପାତ । ଏକାଧିକବାର ସାମ୍ନାସାମ୍ନି, ଆକ୍ରମଣ ପ୍ରତିଆକ୍ରମଣ ପରର ବିୟୋଗାନ୍ତକ ପରିଣତି । ପର୍ଶୁର ସେପରି ଗଣ୍ଡଗୋଳ କାହାରି ସାଙ୍ଗରେ ନଥିଲା । ତଥାପି ତାକୁ ଡର ଲାଗୁଥିଲା । କିନ୍ତୁ ଘରକୁ ଫେରିଯିବା ଅତ୍ୟନ୍ତ ଜରୁରୀ । ସ୍ତ୍ରୀ ଜାନକୀ ତାକୁ ଅପେକ୍ଷା କରୁଥିବ ।

ମନରେ ସାହସ ସଞ୍ଚୟ କରି ଗହୀର, ଜଙ୍ଗଲ, ମଶାଣୀ ଅତିକ୍ରମ କରି ଘରେ ପହଞ୍ଚିବା ବେଳକୁ ରାତି ଦଶଟା ପାର ହୋଇଗଲାଣି । ଗାଁ ଦାଣ୍ଡଟା ଶୂନ୍‌ଶାନ୍ । ଅଲେଖ ବିଶ୍ୱାଳଙ୍କ ଦୁଆରେ ପଢ଼ାଯାଉଥିବା ମହାଭାରତ ପୋଥିର ପୃଷ୍ଠାଗୁଡ଼ିକ ବାନ୍ଧିବାର ଉଦ୍‌ଯୋଗ କରୁଥିଲେ ପିତେଇ ବନାମ ପୀତବାସ ମହାପାତ୍ର । ଗୋଟିଏ ପଟ ଭାଙ୍ଗିଯାଇଥିବା ଚଷମା ଫ୍ରେମ୍‌ର ଦଉଡ଼ିଟିକୁ ସାବଧାନରେ ଖୋଲି ଖୋଳରେ ପୂରାଇ ସାରିଥିଲେ । ଶ୍ରୋତାମାନେ କିଏ କୁଆଡ଼େ ଚାଲିଗଲେଣି । ପ୍ରେତ ଭଳି ଦେଖାଯାଉଥିବା ଜଣେ ମଣିଷର ଛାଇ ଏପଟ ସେପଟ ହେଉଛି । ଦୂରରୁ ବାରି ହେଉନି । କ୍ଲବ୍ ଘରେ ନାଟକ ଅଭ୍ୟାସ କରୁଥିବା ପିଲାଙ୍କର ସଂଳାପ ଶୁଣାଯାଉନି । ନିର୍ଦ୍ଦେଶକ ରାଧୁ ମାଷ୍ଟ୍ରେ ଚାଲିଯିବା ପରେ ଶୋଇବାକୁ ଅପେକ୍ଷା କରିଥିବା ପିଲାମାନେ ବିଛଣା ବିଛେଇ ସାରିବେଣି । ପିଲାଟାଏ ସାଏଁକିନା ଚାଲିଗଲା । ପର୍ଶୁ ଆଶ୍ୱସ୍ତ ହେଲା । ତା'ପଛରେ ଆସିବା ପାଇଁ ଲୋକ ଥିଲେ ।

ଘରେ ପଶିବା ବେଳକୁ ସବୁ ଆଲୁଅ ଲିଭି ସାରିଲାଣି କେବଳ ତା' କୋଠରୀକି ଛାଡ଼ି । ଦୁଇଜଣ ସ୍ତ୍ରୀ ଲୋକଙ୍କ କଥାବାର୍ତ୍ତା ଶୁଣାଯାଉଛି; ଜଣେ ଜାନକୀ, ଆଉ ଜଣେ ବୋଉ । ଦର ଆଉଜା କବାଟ ଠେଲିଦେବା ପରେ ବୋଉ ପାଟି କଲା, "ଏତେ ରାତିଯାଏ କୁଆଡ଼େ ଥାଉ ?" ପର୍ଶୁ କିଛି କହିଲାନି । ବୋଉର ବୟସ ହୋଇଗଲାଣି । ଶୀଘ୍ର ଶୋଇ ପଡ଼ିବାକୁ ଚାହେଁ । ପର୍ଶୁ ନ ଫେରିବା ପର୍ଯ୍ୟନ୍ତ ଜାନକୀ ପାଖରେ ବସିଥାଏ । "ଭୁଆସୁଣୀ ବୋହୁଟା ଏକୁଟିଆ କିପରି ରହିବ ।" ଅଥଚ ସେଇ ଏକା ଖଞ୍ଜାରେ ସାନଭାଇ ତା' ସ୍ତ୍ରୀ ଗୋଟେ ପୁଅକୁ ନେଇ ରୋଷେଇ ଘର ପାଖରେ ଥାଏ । ବାପା ବୋଉ ଦାଣ୍ଡ ଘର ପାଖରେ ଶୁଅନ୍ତି ।

ପର୍ଶୁର ଖାଇବାକୁ ଅପେକ୍ଷା ନକରି ବୋଉ ଚାଲିଗଲା । ଜାନକୀ କିଛି ପଚାରିବାକୁ ଚାହୁଁଥିଲା । ତା ଓଠ ସ୍ଫୁରଣରୁ ଅନ୍ତତଃ ସେଇଆ ଅନୁମାନ କରୁଥିଲା ପର୍ଶୁ । କିନ୍ତୁ

ବିଛଣାକୁ ଯିବା ପୂର୍ବରୁ କିଛି ପଚାରିଲାନି । ଦିନସାରା କାମ କରିବା ପରେ ପର୍ଶୁ କ୍ଳାନ୍ତ ହୋଇପଡ଼ିଥିଲା ଏବଂ ତା'ର ଆଖି ମାଡ଼ି ପଡୁଥିଲା । ଗାଡ଼ି ଚଳାଇବା କଷ୍ଟକର ପର୍ଯ୍ୟାୟଭୁକ୍ତ ବୋଲି ତା'ର ମନେହୁଏ । ହାତ ଗୋଡ଼, ଆଖି, ନାକ, କାନ ସର୍ବୋପରି ମସ୍ତିଷ୍କ ଏକସଙ୍ଗେ କାମ ନକଲେ ଦୁର୍ଘଟଣା ଘଟିବା ସମ୍ଭାବନା । ପୁରୁଣା ଗାଡ଼ି ସାଙ୍ଗକୁ ଅସମତଳ ରାସ୍ତା । ହାତ ଗୋଡ଼ ଦରଜ ହୋଇଯାଏ । ଦେହ ମୁହଁରୁ ଝାଳ ନିଗିଡ଼ି ପଡ଼େ । ତା' ସାଙ୍ଗକୁ କୋଉଠି କିଛି ଯାନ୍ତ୍ରିକ ତ୍ରୁଟି ପରିଲକ୍ଷିତ ହେଲେ ହତାଶା ମଧ୍ୟ ସବାର ହୁଏ । ଜାନକୀକୁ ଚମକାଇ ଦେବାଭଳି ଖବର ତା' ପାଖରେ କିଛି ନଥିଲା । ତେଣୁ ସେ ଶୋଇବାକୁ ଚେଷ୍ଟା କରୁଥିଲା । ଜାନକୀ ଶୋଉ ଶୋଉ ପଚାରିଲା, "ସେଇ ରିପୋର୍ଟ କଥା କ'ଣ ହେଲା ?" ମୁଦି ହୋଇ ଆସୁଥିବା ଆଖିପତା ଚଞ୍ଚଳ ହୋଇଗଲା ପର୍ଶୁର । ଆରେ ସତେ ତ ! ନିଦାନ ବିଶେଷଜ୍ଞ ଡାକ୍ତର ପ୍ରଧାନଙ୍କ ନିକଟରୁ ରିପୋର୍ଟଗୁଡ଼ା ଆଣିବା କଥା । କିନ୍ତୁ ସମୟ ଆଜି ହେଲା କେତେବେଳେ ? ସକାଳୁ ସକାଳୁ ଟିପ୍‌ସ୍ ନେଇ ବାତ୍ୟା କ୍ଷତିଗ୍ରସ୍ତ ଅଞ୍ଚଳକୁ ଯାଇଥିଲା । ଗୋଟେ ଅପନ୍ତରା ଅଞ୍ଚଳ । ରାସ୍ତା ଭଲ ଭାବେ ମରାମତି ହୋଇନି । ଜାଗାଟା ନିରୂପଣ କରୁକରୁ ଘଣ୍ଟାଏ ଦେଢ଼ଘଣ୍ଟା ଗଲା । କୃପଣ ଠିକାଦାରଟା ମଜୁରିଆମାନଙ୍କୁ ଟଙ୍କା କୋଡ଼ିଏ ତିରିଶଟା ଦେଲାନି । ତେଣୁ ମାଲ୍ ଉତାରିବା ବେଳକୁ ସେମାନଙ୍କୁ ପ୍ରବଳ ଭୋକ ହେଲା । ଜଳଖିଆ ଖାଇବାକୁ ଗଲେ ଯେ ଆସିଲେ ଘଣ୍ଟାଏ ପରେ । ମାଲ୍ ଉତରା ହେବା ବେଳକୁ ଆଉ ଘଣ୍ଟାଏ । ଫେରୁ ଫେରୁ ସନ୍ଧ୍ୟା । ଗାଡ଼ି ରଖି ଡାକ୍ତର ପ୍ରଧାନଙ୍କ କ୍ଲିନିକ୍‌କୁ ଯାଇଥିଲେ ହୋଇଥାନ୍ତା । କିନ୍ତୁ ସେତେବେଳକୁ ରିପୋର୍ଟ ମିଳିଥାନ୍ତା କି ନା କିଏ ଜାଣେ । ଅସଲ ସମସ୍ୟାଟି ହେଲା ଏଇ ପରୀକ୍ଷଣ ଏବଂ ରିପୋର୍ଟ ସଂଗ୍ରହ କଥାଟିକୁ ଭୁଲି ଯାଇଥିଲା ପର୍ଶୁ । କିନ୍ତୁ ଭୁଲି ଯାଇଥିବା କଥା ଶୁଣିଲେ ଜାନକୀ ମନଦୁଃଖ କରିବ । ପର୍ଶୁ କହିଲା ଫେରୁ ଫେରୁ ରାତି ସାତଟା ହୋଇଯାଇଥିଲା । ଏତେବେଳକୁ ଡାକ୍ତରବାବୁଙ୍କ କ୍ଲିନିକ୍ ବନ୍ଦ ହୋଇଯାଇଥାଏ । କ୍ଲିନିକ୍ କେତେବେଳେ ଖୋଲେ ଏବଂ ବନ୍ଦ ହୁଏ ଏକଥା ତାକୁ ଜଣା ନ ଥିଲା । ନିପଟ ମିଛଟାକୁ ନିରାଟ ସତ୍ୟ ବୋଲି ସରଳ ଭାବେ ଗ୍ରହଣ କରିନେଲା ଜାନକୀ । "ହଉ କାଲି ନେଇ ଆସିବ ।"

ଆଶ୍ୱସ୍ତ ହେଲା ପର୍ଶୁ । କେତେ ସରଳ ଝିଅଟା । ସବୁ କଥାକୁ ବିଶ୍ୱାସ କରିଯାଉଛି । ଟିକିଏ ଗେଲ କରିବା ପାଇଁ ତା' ପାଖକୁ ଲାଗିଗଲା । ଜାନକୀ ପ୍ରତିବାଦ କଲାନି । ବାହାହେବା ଦିନଠାରୁ କେବେ ବି କରିନି । ଦେହକୁ ଲାଗି ନ ଶୋଇଲେ ସେମାନଙ୍କୁ ନିଦ ଲାଗେନା । ଛୋଟ ପିଲାପରି ଜାନକୀ କୋଳରେ ଶୋଇଥିବ ସକାଳ ପର୍ଯ୍ୟନ୍ତ । ରାତିରେ ନିଦ ଭାଙ୍ଗିଗଲେ ନିଦ୍ରିତ ଅବସ୍ଥାରେ ଘୁଞ୍ଚି ଯାଇଥିବା ଜାନକୀକୁ ନିଦରୁ ଉଠାଏ ଏବଂ ପୁଣି ଲଗାଲଗି ହୋଇ ସେମାନେ ଶୁଅନ୍ତି ।

ଦିନଯାକ ପର୍ଶୁ ବାହାରକୁ ଚାଲିଯାଏ । ଏକା ଏକା ଲାଗେ ଜାନକୀକୁ ଶାଶୁ ଶଶୁର, ଦିଅର ଯା' ଥିଲା ସତ୍ତ୍ୱେ । ରାତିରେ ସେଇ କଥା କହେ ଜାନକୀ । "ତୁମର ସନ୍ତକଟିଏ ଯଦି ଥାଆନ୍ତା ପାଖେ ପାଖେ ମୋତେ ଜମା ଏକୁଟିଆ ଲାଗନ୍ତାନି ।"

"ହଁ, ଛାଡ଼ିଯିବି ଯେ ଆଉ ବର୍ଷେ ଦୁଇ ବର୍ଷ ଯାଉ । ଏତେ ଶୀଘ୍ର ମା' ହୋଇଗଲେ ଶରୀର ଦୁର୍ବଳ ହୋଇଯିବ ।" ପ୍ରଥମେ ପ୍ରଥମେ ଲାଜେଇ ଯାଉଥିଲା ଏକଥା ଶୁଣି ଜାନକୀ । ଏବେ ବାହାଘର ଚାରିବର୍ଷ ପୂର୍ଣ୍ଣ ହୋଇଗଲାଣି । ଏକା ସାଙ୍ଗେ ଦୁଇ ଭାଇ ବିବାହ କରିଥିଲେ । ଦିଅର ପରମର ପୁଅକୁ ଦୁଇ ବର୍ଷ ହେଲାଣି । ଜନ୍ମ ନିରୋଧ ବ୍ୟବସ୍ଥା ଗ୍ରହଣ ନ କରିଥିଲେ ଦ୍ୱିତୀୟ ସନ୍ତାନ ହୁଅନ୍ତାଣି । ଅଥଚ ଜାନକୀର କୋଳ ଶୂନ୍ୟ । ଗଭୀର ଅନ୍ତର୍ଦ୍ୱନ୍ଦ୍ୱ ମଧ୍ୟରେ ନିଷ୍ପେସିତ ହୋଇ ଯାଉଥିବା ବେଳେ ସାନ୍ତ୍ୱନା ଦେଉଥିଲେ ଶାଶୁ, "ଏମିତି କେତେ ଦିନ ହୋଇଗଲା ଯେ ବ୍ୟସ୍ତ ହୋଇପଡୁଛୁ । ଆମ ଗାଁ ସପନା ମା'ର ସାତ ବର୍ଷ ପରେ ଝିଅ ହୋଇ ତା'ପରେ ଆଉ ଦୁଇଟା ପୁଅ ।" ଜାନକୀ ସବୁ ଶୁଣେ- ପର୍ଶୁକୁ କହେ । ଶୋଇବା ସମୟରେ ଆଲୋଚନା କରନ୍ତି ସେମାନେ । ପର୍ଶୁ କହେ ମୋର ଦୋଷ ଅଛି । ଜାନକୀ ପ୍ରତିବାଦ କରେ । ପୁଅ ପିଲାମାନଙ୍କର ଦୋଷ କ'ଣ ? ଏମିତି ବିଚାର କଲେ କାହାର କୌଣସି ଦୋଷ ନଥିଲା । ଜାନକୀର ନିୟମିତ ଋତୁସ୍ରାବ ହେଉଥିଲା । ପର୍ଶୁର ସ୍ୱାସ୍ଥ୍ୟ ଭଲ ଥିଲା । ସେମାନେ ଏକତ୍ର ରହୁଥିଲେ ।

ପରମର ପୁଅ ଚାଲିବା ଆରମ୍ଭ କରିଥିଲା । ଜାନକୀର ଅଣ୍ଟା ଚାରିପଟେ ମେଦ ଜମା ହେଉଥିଲା । ମନ ଭିତରେ ପରସ୍ତ ପରସ୍ତ ସନ୍ଦେହ । ପର୍ଶୁ ପରାମର୍ଶ ଦେଲା ଡାକ୍ତରଙ୍କୁ ଦେଖାଇବା । ଜାନକୀ ସମ୍ମତି ପ୍ରକାଶ କଲା । ଗାଁ ପାଖ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତରଙ୍କ ସଙ୍ଗେ ଜଣାଶୁଣା ଥିଲା ପର୍ଶୁର । ତାଙ୍କୁ ଏପରି ଗୋପନୀୟ ସମସ୍ୟାଟା ଜଣାଇବାକୁ ସଂକୋଚ କରୁଥିଲା । ସିଏ ଜଣେ ମଉଜିଆ ଲୋକ । ଜଣାଶୁଣା ଲୋକଙ୍କ ସାଙ୍ଗେ ଥଟ୍ଟା ମଜା କରନ୍ତି । ତେଣୁ ପର୍ଶୁକଥା ଶୁଣି ହସିପାରନ୍ତି ବା ବର୍ଦ୍ଧିଷ୍ଣୁ ଜନସଂଖ୍ୟା ବେଳେ ଛୁଆର କି ଆବଶ୍ୟକତା ପଡ଼ିଲା କହି ପାରନ୍ତି । ସାଙ୍ଗମାନଙ୍କୁ ପଚାରିଲେ ବି ହୁଅନ୍ତା । ଯେତେ ଜଣ ବାହା ହୋଇଥିଲେ ସମସ୍ତଙ୍କର ପିଲା ହେଲେଣି । ଅନେକ ଚିନ୍ତା କରିବା ପରେ କାହାକୁ କିଛି ନ ପଚାରି ଦିନେ ଜିଲ୍ଲା ମୁଖ୍ୟ ଚିକିତ୍ସାଳୟକୁ ଗଲା । ବହିର୍ବିଭାଗରେ ଚାରିଜଣ ଡାକ୍ତର । ଯାହାଙ୍କ ପାଖରେ ସବୁଠାରୁ କମ୍ ରୋଗୀ ଥିଲେ ତାଙ୍କ ନିକଟରେ ଛିଡ଼ା ହେଲା ଏବଂ ସବୁ ରୋଗୀ ବିଦା ହେବା ପର୍ଯ୍ୟନ୍ତ ଅପେକ୍ଷା କଲା । ଡାକ୍ତର କଲମ ଥୋଇ ହାଇ ମାରିଲେ । କ୍ଲାନ୍ତି ନା ଅବସାଦ ହାଇର କାରଣ

ବୁଝିପାରିଲାନି ପର୍ଶୁ । ସେ ତଥାପି ସେଠାରେ ଠିଆ ହୋଇଥିଲା ଏବଂ କିଛି କହୁ ନଥିଲା ।

"କ'ଣ ଦରକାର ?"- ଗତାନୁଗତିକ ଭାବରେ ପଚାରି ଦେଲେ ଡାକ୍ତର ।

ମୋ ସ୍ତ୍ରୀର ପିଲା ହେଉନି । କେମିତି ଏକ କୁଣ୍ଠିତ ସ୍ୱରରେ ଉଚ୍ଚାରଣ କଲା ପର୍ଶୁ ।

ଆଉ କୌଣସି ପ୍ରଶ୍ନ ପଚାରି ଅଭ୍ୟନ୍ତରକୁ ପ୍ରବେଶ କରିବା ନିମନ୍ତେ ଆଗ୍ରହ ନ ଥିଲା ତାଙ୍କର । ପାଞ୍ଚ ନମ୍ବର କୋଠରୀ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ ଦେଲେ ସିଏ, "ଡାକ୍ତର ଭୂୟାଁଙ୍କ ସଙ୍ଗେ ଦେଖା କରନ୍ତୁ ।"

ସେଠି ସ୍ତ୍ରୀଲୋକ ଦୁଇଜଣ ଠିଆ ହୋଇଥିଲେ । ମଧ୍ୟବୟସ୍କ ମହିଳା । ସେମାନଙ୍କଠାରୁ ଯଥେଷ୍ଟ ଦୂରତ୍ୱ ରକ୍ଷାକରି ଠିଆହେଲା ପର୍ଶୁ । ବ୍ୟବସ୍ଥାପତ୍ର ଧରି ସେମାନେ ନିଷ୍କ୍ରାନ୍ତ ହେବା ପରେ ଭିତରକୁ ପଶିଲା ଏବଂ ବର୍ହିବିଭାଗରେ କହିଥିବା କଥାର ପୁନରାବୃତ୍ତି କଲା ।

ଖୁବ୍ ଗମ୍ଭୀର ଦେଖାଗଲେ ଡାକ୍ତର । ସ୍ତ୍ରୀ ଆସିଛନ୍ତି କି ନାହିଁ, ତାଙ୍କ ଋତୁସ୍ରାବର ନିୟମିତତା ଏବଂ ଏକତ୍ର ସହାବସ୍ଥାନ ସମ୍ବନ୍ଧରେ ପ୍ରଶ୍ନ କଲେ । ପର୍ଶୁ ଯେଉଁ ଉତ୍ତର ଦେଲା ସେଥିରେ ସନ୍ତାନ ନ ହେବାର କୌଣସି ପାରିପାର୍ଶ୍ୱିକ ଅସୁବିଧା ନ ଥିବାର ମତ ଦେଲେ ସିଏ । ତେବେ ଯଦି ସ୍ତ୍ରୀ ବା ପୁରୁଷ ଦୁଇ ଜଣଙ୍କ ମଧ୍ୟରୁ କାହାର ଅନ୍ତର୍ନିହିତ ତ୍ରୁଟି, ଯେପରିକି ପୁରୁଷ ଶୁକ୍ରାଣୁର ଦୁର୍ବଳତା ଅଥବା ଡିମ୍ବାଣୁ ସହ ମିଶିବାର ପ୍ରତିବନ୍ଧକ ଥାଏ ତେବେ ସନ୍ତାନ ସୃଷ୍ଟି ହେବାର ସମ୍ଭାବନା କ୍ଷୀଣ । ପ୍ରଥମେ ପର୍ଶୁର ଶୁକ୍ର ପରୀକ୍ଷା କରାଇବା ପାଇଁ ଉପଦେଶ ଦେଲେ ଏବଂ ଡାକ୍ତର ପ୍ରଧାନଙ୍କ କ୍ଲିନିକ୍‌ର ଠିକଣା ଦେଲେ ।

ବ୍ୟବସ୍ଥାପତ୍ରଟି ଧରି ଜାନକୀ ନିକଟକୁ ଆସିଲା ପର୍ଶୁ । ସେ ଭାବିଥିଲା ଜାନକୀକୁ କିଛି ଜଣାଇବନି । ରାତିରେ ଶୋଇଥିବାବେଳେ କଥା ହୋସ୍‌ରେ ଡାକ୍ତରଙ୍କ ଶୁକ୍ର ପରୀକ୍ଷା କରାଇବା ଉପଦେଶଟି ପ୍ରକାଶ କରିଦେଲା ।

"ନା, ଶୁକ୍ର ପରୀକ୍ଷା କରିବ କ'ଣ ?" ପ୍ରତିବାଦ କଲା ଜାନକୀ ।

"ପରୀକ୍ଷା କରିଦେଲେ କ୍ଷତି କ'ଣ ? ଅନ୍ତତଃ ମୋର ଦୋଷ ଅଛି କି ନାହିଁ ଜଣାପଡ଼ିବ", ଯୁକ୍ତି ଦର୍ଶାଇଲା ପର୍ଶୁ । ଜାନକୀ ପ୍ରତିବାଦ କରିବାର କୌଣସି କାରଣ ନ ଥିଲା । ସେ ପର୍ଶୁ କଥାକୁ ସର୍ବଦା ସମ୍ମାନ ଓ ଅଗ୍ରାଧିକାର ଦେଇ ଆସିଛି । ଦୁଇଦିନ ତଳେ ଟ୍ରକ୍ ଗ୍ୟାରେଜ୍‌କୁ ଯାଇଥିବାରୁ ପର୍ଶୁର କୌଣସି କାମ ନ ଥିଲା । ମାଲିକକୁ କହି ସିଏ ଡାକ୍ତର ପ୍ରଧାନଙ୍କ କ୍ଲିନିକ୍‌କୁ ଯାଇଥିଲା ଏବଂ ଜାନକୀକୁ ଜଣାଇଥିଲା ।

ଏମିତିରେ ଜାନକୀ କୌଣସି ମୁଣ୍ଡ ଖେଳାଇବା କଥା ନୁହେଁ । ଶୁକ୍ର ପରୀକ୍ଷାଟା କି ଜିନିଷ ଏବଂ ସେଥିରୁ କିପରି ଛୁଆ ନହେବା କଥା ଜଣାପଡ଼ିବ, ଏ ବିଷୟରେ ତା'ର ଧାରଣା ନଥିଲା । ଟଙ୍କା ଏବଂ ସମୟ ଖର୍ଚ୍ଚ କରି ପରୀକ୍ଷା କରାଯାଇଛି । ତେଣୁ ପରୀକ୍ଷାର ଫଳାଫଳ କ'ଣ ହେଲା ପଚାରିଦେଲା ଏବଂ ପର୍ଶୁର କାଲି ଆଣିବି ସ୍ୱୀକାରୋକ୍ତିରେ ସନ୍ତୁଷ୍ଟ ହୋଇଗଲା ।

ଗୋଟାଏ ଉତ୍ତେଜନାରେ ଶୁକ୍ର ପରୀକ୍ଷା ନିମନ୍ତେ ଦେଇଦେବା ପରେ ପର୍ଶୁ ମନରେ ଭୟ ହେଉଥିଲା । କାଳେ ତା'ର କୌଣସି ଦୋଷ ବାହାରିବ । କଥା ପ୍ରଘଟ ହେବ । ସାଙ୍ଗମାନେ ଥଟ୍ଟା କରିବେ । ପରବର୍ତ୍ତୀ ସମୟରେ ସେ ମନକୁ ବୁଝାଉଥିଲା ନା ସେ ତ ସୁସ୍ଥ ସବଳ ଅଛି । ଦୋଷ ବାହାରିବ କାହିଁକି ? ଏପରି ଅନ୍ତର୍ଦ୍ୱନ୍ଦ୍ୱ ମଧ୍ୟରେ ସେ ନିଜକୁ ସାନ୍ତ୍ୱନା ଦେଉଥିଲା । ଦୋଷ ଥିଲେ ବାହାରିବ ଏବଂ ତାକୁ ଜାଣି ନିଜକୁ ପ୍ରସ୍ତୁତ କରିବ ।

ଶୁକ୍ର ପରୀକ୍ଷା ଫଳାଫଳ ଆଣିବାକୁ ପର୍ଶୁ ଯେଉଁଦିନ ଗଲା, ସେଦିନ ସନ୍ଧ୍ୟା ହୋଇଆସୁଥିଲା ଏବଂ ମାଲିକ ନିକଟରେ ଟ୍ରକ୍ ପହଞ୍ଚାଇବା ନିମନ୍ତେ ଯଥେଷ୍ଟ ସମୟ ନଥିଲା । ଡାକ୍ତର ପ୍ରଧାନ ତାଙ୍କ କ୍ଲିନିକ୍‌କୁ ଆସି ନ ଥିଲେ । ଯେଉଁ ପିଲାଟି ନମୁନା ସଂଗ୍ରହ କରେ ସିଏ ଫଳାଫଳ ଲେଖା ଉପରେ ଆଖି ବୁଲାଇ ଆଣି ପର୍ଶୁ ହାତକୁ ବଢ଼ାଇ ଦେଲା ।

"ରିପୋର୍ଟ କିପରି ଅଛି ?" ଚିରାଚରିତ ଢଙ୍ଗରେ ପଚାରିଦେଲା ପର୍ଶୁ ।

"ଡାକ୍ତରଙ୍କୁ ପଚାରିବେ," ସଂକ୍ଷିପ୍ତ ଉତ୍ତର ଦେଇ ପିଲାଟି କାଗଜକୁ ଆଉଥରେ ଚାହିଁଲା ଆଉ ଚୁପ୍ ରହିଲା ।

"ଡାକ୍ତରବାବୁ କେତେବେଳେ ଆସିବେ ।"

ପିଲାଟି ଅସହଯୋଗୀ ନ ହେଲେ ମଧ୍ୟ ଅଜ୍ଞ ମନେ ହେଉଥିଲା ।

"ଆସିବେ କି ନା କହି ପାରିବିନି । ପରୀକ୍ଷା କରି ରିପୋର୍ଟ ଲେଖିଦେଲା ପରେ ତ ତାଙ୍କ କାମ ଶେଷ । କେବେ କେବେ ଆସନ୍ତି ଉପରଓଳା । ସକାଳ ଏଗାରରୁ ଆସି ସମସ୍ତ ନମୁନା ପରୀକ୍ଷା ସରିବା ପର୍ଯ୍ୟନ୍ତ ଥାନ୍ତି ।" ପିଲାଟି କହିଲା ।

ପର୍ଶୁ ହାତରେ ସମୟ ନ ଥିଲା । ଡାକ୍ତରଙ୍କ ଆସିବାରେ କୌଣସି ନିଶ୍ଚିତତା ନ ଥିଲା । ଗାଡ଼ିର ଯାନ୍ତ୍ରିକ ତ୍ରୁଟିଯୋଗୁଁ ମାଲିକ ଶୀଘ୍ର ଫେରାଇ ନେବାପାଇଁ ତାଗିଦ୍ କରିଛି । ଦିନେ ଦୁଇଦିନ ମଧ୍ୟରେ ଗ୍ୟାରେଜ୍‌କୁ ଯିବ । ରିପୋର୍ଟକୁ ଯତ୍ନରେ ଭାଙ୍ଗି ସିଏ ପକେଟ୍‌ରେ ରଖିଲା ଏବଂ ଘରକୁ ଫେରିଗଲା ।

ଗ୍ୟାରେଜ୍‌ରେ ଜମାଦେବା ପରେ ମାଲିକ ଗାଡ଼ି ନିକଟକୁ ଯାଇ ମରାମତି କାମ

ତଦାରଖ କରୁଥିଲା । ପର୍ଣ୍ଣ ଯିବାର ବିଶେଷ ପ୍ରୟୋଜନ ନଥିଲା । ଘରେ ବସି ରହିବାକୁ ତାକୁ ଭଲ ଲାଗୁ ନ ଥିଲା, ପକେଟ୍‌ରେ ଥିବା ଶୁକ୍ର ପରୀକ୍ଷା ରିପୋର୍ଟ ଗୋଟେ ତୀକ୍ଷ୍ଣ କଣ୍ଟା ଭଳି ତା' ଛାତିକୁ ଫୋଡ଼ି ଚାଲିଥିଲା ଏବଂ ସେ ତାକୁ ନୀରବରେ ସହ୍ୟ କରୁଥିଲା ।

ଶୁକ୍ର ପରୀକ୍ଷା ରିପୋର୍ଟ ଡାକ୍ତର ଭୂୟାଁଙ୍କ ହାତକୁ ବଢ଼ାଇଲା ବେଳେ ତା' ହାତ ଥରୁଥିବା ମନେକରୁଥିଲା । ସ୍ତ୍ରୀଲୋକ ଦୁଇ ଚାରି ଜଣ ଅପେକ୍ଷା କରୁଥିବାରୁ ଡାକ୍ତରବାବୁ ବ୍ୟଗ୍ର ଥିଲେ । ରିପୋର୍ଟ ଉପରେ ଆଖି ବୁଲାଇ ଆଣି କଲମରେ ଦୁଇ ଚାରି ଜାଗାରେ ଚିହ୍ନ ଦେଲେ । ତା'ପରେ ପର୍ଣ୍ଣ ମୁହଁକୁ ଚାହିଁଲେ । ତାଙ୍କ ଉଦାର ଦୃଷ୍ଟି ପର୍ଣ୍ଣ ମୁହଁରୁ ସମସ୍ତ ରକ୍ତ ଶୋଷି ନେଇଯିବ ଯେପରି । ପାଟି ଶୁଖିଗଲା ପରି ମନେହେଲା ।

"ପିଲାଦିନେ କେବେ ଗାଲୁଆ ହୋଇଥିଲା କି ?" ପ୍ରଶ୍ନ କଲେ ଡାକ୍ତର ଭୂୟାଁ ।

ପର୍ଣ୍ଣର ମନେ ନ ଥିଲା । ନିରୀହ ଭାବରେ କହିଲା- "ଜାଣିନି ।"

"ଗରମ ବ୍ୟଲର ପାଖେ କାମ କରୁଛ କି ?"

"ନା ଟ୍ରକ୍ ଚଲାଉଛି ।"

ଶୁକ୍ରାଣୁ ତ ମୋଟେ ନାହାନ୍ତି । ସହାନୁଭୂତିପୂର୍ଣ୍ଣ ଦୃଷ୍ଟିରେ ସେ ଚାହିଁଥିଲେ ପର୍ଣ୍ଣକୁ । କିଛି ତ୍ରୁଟି ଅଛି, ଆଶଙ୍କା କଲା ପର୍ଣ୍ଣ । ସେ କିନ୍ତୁ ପଚାରି ପାରିଲାନି "ଶୁକ୍ରାଣୁର ଉପସ୍ଥିତି ଗର୍ଭଧାରଣରେ କିପରି ସାହାଯ୍ୟ କରେ ?" ପ୍ରଶ୍ନଟି ତା' ମନରେ ଉବୁଟୁବୁ ହେଉଥିଲା । ପଛରେ ରୋଗୀମାନେ ଆସି ଛିଡ଼ା ହେଲେଣି । କାମ ଶେଷ କରି ଫେରିଯିବାକୁ ତତ୍ପର । ପର୍ଣ୍ଣର ଅନେକ ସନ୍ଦେହ । ସେ କିଛି ପଚାରୁ ନ ଥିଲା । ଘୁଞ୍ଚୁ ବି ନଥିଲା । ଡାକ୍ତର ଭୂୟାଁ ତାକୁ କହିଲେ ଭିଡ଼ ଅଛି, ପରେ ଆସ କିମ୍ବା ସବୁ ରୋଗୀ ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କର । ତୁମ ସମସ୍ୟା ଆଲୋଚନା କରିବା ।

ରିପୋର୍ଟ ଉଠାଇ ନେଇ ପର୍ଣ୍ଣ ଘୁଞ୍ଚିଗଲା ଏବଂ ବାରଣ୍ଡାରେ ଛିଡ଼ା ହେଲା । ସ୍ତ୍ରୀଲୋକମାନେ ଆସୁଥିଲେ । ସେମାନେ ଶୀଘ୍ର କାର୍ଯ୍ୟ ଶେଷ କରି ଯିବେ ଏବଂ ଫାଙ୍କା ମିଳିବ ମନେକରିପାରୁନଥିଲା ପର୍ଣ୍ଣ । ବହିର୍ବିଭାଗର ରୋଗୀସଂଖ୍ୟା କମୁଥିଲା । ଡାକ୍ତର ଭୂୟାଁଙ୍କ ରୋଗୀ ସଂଖ୍ୟା ବଢୁଥିଲା । ଆଉ ଫାଙ୍କା ମିଳିବନି । କିଏ ଜଣେ ରୋଗୀର ଆତ୍ମୀୟ ଆସି କହିଲା ସାର୍ ଜଣେ ପ୍ରସୂତୀ ଆସିଛି ଅନେକ ବାଟରୁ । କଷ୍ଟ ପାଉଛି । ରୋଗୀମାନଙ୍କୁ ଛାଡ଼ିଦେଇ ପ୍ରସୂତୀ ଗୃହ ଆଡ଼କୁ ଚାଲିଲେ ଡାକ୍ତର ଭୂୟାଁ । ତାଙ୍କ ପଛେ ପଛେ ରୋଗିଣୀମାନେ । ଅନେକ ସମୟ ଅତିକ୍ରାନ୍ତ ହେବାପରେ ମଧ ଡାକ୍ତର ଭୂୟାଁ ବାହାରୁ ନ ଥିଲେ । ପର୍ଣ୍ଣର ବିଶେଷ କାମ ନ ଥିଲା ଘରେ । ତେବେ ଅପେକ୍ଷା କରି କରି ଚିଟା ହୋଇପଡ଼ିଥିଲା । ବହିର୍ବିଭାଗ ଫାଙ୍କା । ସାଇକେଲ୍ ମୋଟରସାଇକେଲ୍ ଗୁଡ଼ା ଚାଲିଗଲାଣି । ପରେ କେବେ ଆସି ପରାମର୍ଶ ବା ଆଲୋଚନା କଲେ ଚଳିବ ।

ଘରକୁ ଫେରି ଜାନକୀ ନିକଟରେ ଶୁକ୍ରାଣୁ ନ ଥିବା କଥା ଜଣାଇ ଦେବାକୁ ଚାହିଁଥିଲା ପର୍ଶୁ । କଥାଟା ପରିଷ୍କାର ହୋଇଯିବ । ନା ଡାକ୍ତର ଭୂୟାଁ ତ କହୁଛନ୍ତି ପରେ ଗଲେ ଆଲୋଚନା କରିବେ । ସନ୍ତାନ ନହେବା କଥା କହି ନାହାନ୍ତି ସିଏ ।

ଯଦି ଶୁକ୍ରାଣୁର ଅନୁପସ୍ଥିତି ସନ୍ତାନ ଉତ୍ପାଦନ ସହ ସିଧାସଳଖ ସମ୍ପର୍କିତ, ତା'ହେଲେ ପରବର୍ତ୍ତୀ ପଦକ୍ଷେପ କ'ଣ ନେବ ? ବିବାହ ପରେ ସବୁଝିଅ ସନ୍ତାନର ମା'ହେବା ଚାହାନ୍ତି, ଜାନକୀ ଚାହୁଁଛି । ସମୟାନୁକ୍ରମେ ଜଣାପଡ଼ିବ ସେ ମାଆ ହୋଇ ପାରିବନି । ତା' ପୁଣି ନିଜ ଦୋଷରୁ ନୁହେଁ । ମାଟି ପାଣି ପବନ ସମୟ ଅନୁକୂଳ ପରିସ୍ଥିତି ସତ୍ତ୍ୱେ ମଞ୍ଜିଟିଏ ପଡ଼ିପାରୁନି । ଅଙ୍କୁରୋଦମ୍ ହେବା ଅସମ୍ଭବ।

ପର୍ଶୁ କିଛି ଭାବିପାରୁନଥିଲା । ଶୁକ୍ରାଣୁର ଭୂମିକା ଓ ତା'ର ଉପସ୍ଥିତି ସମ୍ବନ୍ଧରେ ସ୍ଥିର ନିଶ୍ଚିତ ହେବାକୁ ଚାହୁଁଥିଲା ସିଏ । ଡାକ୍ତର ଭୂୟାଁ ତା'ର ବିଶେଷ ଜଣାଶୁଣା ନୁହନ୍ତି । ନିକଟବର୍ତ୍ତୀ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତର ସହାୟକ ହେବେ ବୋଲି ତା'ର ଧାରଣା ହେଲା ।

ଟ୍ରକ୍ ଫେରି ନ ଥିଲା । ପର୍ଶୁ କେବେ ଗ୍ୟାରେଜ୍ ଯାଇ ମରାମତିର ଅଗ୍ରଗତି ସମ୍ବନ୍ଧରେ ବୁଝୁଥିଲା ତ କେବେ ହାଟ ଛକ ସନ୍ନ୍ୟାସୀ ଦୋକାନ ସାମ୍ନାରେ ବସୁଥିଲା । ସେଇଠି ତା'ର ସ୍ୱାସ୍ଥ୍ୟକେନ୍ଦ୍ର ଫାର୍ମାସିଷ୍ଟଙ୍କ ସହ ଦେଖାହୁଏ । ପ୍ରାୟ ଛ' ମାସ ତଳେ ଯୋଗ ଦେଇଥିବା ଫାର୍ମାସିଷ୍ଟ ଗପୁଡ଼ି ପ୍ରକୃତିର । ଗପ ଆରମ୍ଭ ହେଲେ ସରେନା । "ଆଜି ପାଞ୍ଚଜଣ ରୋଗୀ ଡାକ୍ତରଙ୍କ ନିକଟକୁ ନ ଯାଇ ମୋ ପାଖକୁ ଆସିଲେ । ବିଗତ ସ୍ଥାନରେ ଡାକ୍ତର ରହୁ ନଥାନ୍ତି । ମୁଁ ଚଳାଇଥାଏ ଡାକ୍ତରଖାନା । କାହାରିକୁ ତ ମୁଁ ବାହାରକୁ ପଠାଏନା । ଯଦି ନିହାତି ଦରକାର ପଡ଼େ ମୋତେ ନ ପଚାରି କେହି ଯାଆନ୍ତି ନାହିଁ । କେତେ ଦୁରାରୋଗ୍ୟ ରୋଗୀ ମୁଁ ଭଲ ନ କରିଛି ? କ'ଣ ମୁଁ ଠିକ୍ କହୁଛି ନା ?"– ପାଖରେ ଠିଆ ହୋଇଥିବା ୱାର୍ଡ଼ ଆଟେଣ୍ଡାଣ୍ଟ ଆଡ଼କୁ ଚାହିଁ ପଚାରନ୍ତି ଫାର୍ମାସିଷ୍ଟ । ଟୋକା କଥାରେ ପୋଖତ ବିମ୍ଭା ହସେ । "ହଁ ଆଜ୍ଞା ସତକଥା । ସେଦିନ ଖାଲି ଯାହା ନାଡ଼ି ଦେଖିବାରେ ଏବଂ ସ୍ତ୍ରୀ ଲୋକଟିକୁ କାଥେଟର ଦେବାରେ ଭୁଲ୍ ହୋଇଗଲା ।" ଆତ୍ମପ୍ରୌଢ଼ତା ନା ଅଜ୍ଞତା, ବୁଝିପାରେନା ପର୍ଶୁ ।

ଦିନେ ପକେଟ୍‌ରେ ଧରିଥିବା ଶୁକ୍ର ପରୀକ୍ଷା ରିପୋର୍ଟକୁ ସିଏ ଫାର୍ମାସିଷ୍ଟଙ୍କୁ ଦେଖାଇଲା ଏବଂ ପଚାରିଲା, "କ'ଣ ବାହାରିଛି ଆଜ୍ଞା ?" କାଗଜଟିକୁ ତଳୁ ଉପର ଦୁଇଥର ଦେଖିବା ପରେ କାଗଜଟିକୁ ଫେରାଇଦେଲେ ସିଏ । ତାଙ୍କ ମୁହଁ ବଡ଼ କରୁଣ ଦେଖାଗଲା । ନିଜ ଅଜ୍ଞତାକୁ ସ୍ୱୀକାର କରିବା ନିମନ୍ତେ କହିଲେ, "ମୁଁ ବୁଝିପାରୁନି ଏଇ ରିପୋର୍ଟରୁ କିଛି । କାଲି ଡାକ୍ତରଖାନାକୁ ଆସ । ସାର୍‌ଙ୍କୁ ପଚାରିବା ।" ଫାର୍ମାସିଷ୍ଟ

ଚାଲିଗଲେ । ୱାର୍ଡ଼ ଆଟେଣ୍ଡାଣ୍ଡ ବିମ୍ବା କାଗଜଟି ନେଇ ଧରିଲା । ସେ କିଛି ପଢ଼ିବା ବା ବୁଝିବା ଭଳି ମନେହେଲାନି ।

"ହଁ, କାଲି ଆସ, ସାର୍‌ଙ୍କୁ ପଚାରିବା ।" ସେ କହିଲା ଏବଂ ଚା' ପିଆରେ ମନ ଦେଲା ।

ପରଦିନ ସାହସ ସଞ୍ଚୟ କରି ଡାକ୍ତରଖାନାକୁ ଗଲା ପର୍ଶୁ । ପରିଚିତ ଡାକ୍ତରଙ୍କ ନିକଟରେ ସମସ୍ୟାଟିକୁ ଉତ୍ଥାପନ କରିବାକୁ ଡର ଲାଗୁଥିଲା । ଶୀତଦିନର ସକାଳ । ଡାକ୍ତର ବା ଫାର୍ମାସିଷ୍ଟ ଦିଶୁ ନଥିଲେ କିମ୍ବା ବାହାରେ ଠିଆ ହୋଇ ନ ଥିଲେ । ବିମ୍ବା ବାହାରେ ଠିଆ ହୋଇ ଖରା ପୁଉଁଥିଲା ଏବଂ ପ୍ରତୀକ୍ଷମାଣ ଦୁଇ ତିନି ଜଣ ରୋଗୀ ସହାୟକଙ୍କ ସଙ୍ଗେ ଗପ ଜମାଇଥିଲା । ତାକୁ ଟିକିଏ ଦୂରକୁ ଡାକିନେଲା ପର୍ଶୁ, "ବିମ୍ବାଭାଇ, ଏଇ ରିପୋର୍ଟଟା ନେଇ ଟିକିଏ ଡାକ୍ତରବାବୁଙ୍କୁ ଦେଖାଇ ଦିଅ ତ । ଆଉ ପଚାରିବ କିଛି ଦୋଷ ଅଛି କି ?"

"ତମେ ଚାଲୁନା । ସାର୍‌ଙ୍କ ସାଙ୍ଗେ ତମର ତ ଭଲ ଜଣାଶୁଣା ଅଛି ।"

"ନାଇଁ ତମେ ନିଅ ।" ପର୍ଶୁ ଅପେକ୍ଷା କଲା ।

ବିମ୍ବାଧର ଭିତରକୁ ଯାଇ କିଛି ସମୟ ପରେ ଫେରି ଆସିଲା ଏବଂ ପର୍ଶୁକୁ ଡାକିଲା, "ସାର୍ ଡାକୁଛନ୍ତି ।" ଇଚ୍ଛା ନଥିଲେ ମଧ୍ୟ ଅଗତ୍ୟା ଗଲା ପର୍ଶୁ । ବିମ୍ବାଧର ବାହାରେ ରହିଗଲା ଏବଂ ତା'ର ଚିରାଚରିତ ଗପରେ ମାତିଗଲା ।

କିଛି ଅପରାଧ କଲାଭଳି କରୁଣ ଭଙ୍ଗୀରେ ଠିଆହେଲା ପର୍ଶୁ । ଡାକ୍ତରବାବୁ ସବୁଦିନ ଭଳି ଖୁସି ମିଜାସ୍‌ରେ ନଥିଲେ । ଟେବୁଲ୍ ଉପରେ ପେପରୱେଟ୍ ତଳେ ଥୁଆ ହୋଇଥିଲା ରିପୋର୍ଟଟି ।

"କ'ଣ ଅସୁବିଧା ହୋଇଛି ତୁମର ?"

"ସାର୍ ପିଲାଛୁଆ ହେଉନାହାନ୍ତି । ବାହାଘର ପାଞ୍ଚ ବର୍ଷ ହେଲାଣି ।"

"ଏଇ ପରୀକ୍ଷା କରିବାକୁ କିଏ କହିଥିଲା ?"

"ଆପଣ ନ ଥିଲେ ତ । ଜିଲ୍ଲା ହସ୍ପିଟାଲ ଯାଇଥିଲି । ପ୍ରସୂତୀ ବିଶେଷଜ୍ଞ ଡାକ୍ତର ଭୂୟାଁ କହିଥିଲେ ।"

"ତାଙ୍କୁ ଦେଖାଇଥିଲ ରିପୋର୍ଟ ?"

"ହଁ ।"

"କ'ଣ କହିଲେ ?"

କହିଲେ "ଶୁକ୍ରାଣୁ ନାହାନ୍ତି । ପରେ ଆସ ଆଲୋଚନା କରିବା । ସେ ଖୁବ୍ ବ୍ୟସ୍ତ ଥିଲେ ସେଦିନ ।"

"ସତକଥା, ମୋଟେ ଶୁକ୍ରାଣୁ ନାହାନ୍ତି । ଯଦି ରିପୋର୍ଟଟି ଠିକ୍ ଥାଏ ।"

"ସାର୍ ପିଲା ହେବ କି ନାହିଁ ?" ବଡ଼ ଆକୁଳ ଏବଂ ଚିନ୍ତିତ ଭାବେ ପଚାରିଲା ପର୍ଶୁ ।

ଆତଙ୍କିତ ଓ ସନ୍ଦେହାଚ୍ଛନ୍ନ ମୁହଁଟିକୁ ଚାହିଁ ଦୟାର୍ଦ୍ର ହୋଇପଡ଼ିଲେ ଡାକ୍ତର । ପୂର୍ବରୁ ସେ ଅନେକ ଥର ପର୍ଶୁକୁ ଥଟ୍ଟା କରିଛନ୍ତି । ନିରାଟ ସତକଥାଟି କହିଲେ ସେ ସେଇ ପୁରୁଣା ରୀତିରେ ଥଟ୍ଟା ଭାବିନେବ ନା ଦୁଃଖରେ ଭାଙ୍ଗିପଡ଼ିବ ? ଅଳ୍ପ ଟିକିଏ ମିଛ କହିଲେ ଜଣେ ମଣିଷ ଯଦି ଆଶାର ଆଲୋକ ନେଇ ବଞ୍ଚିପାରିବ ତାହା ତଥାକଥିତ ପାପ ମଧ୍ୟରେ ଗଣ୍ୟ ହେବନାହିଁ । ତେଣୁ ମନକୁ ଦୃଢ଼ କରି କହିଲେ, ଏପରି ରିପୋର୍ଟ ଥିଲେ ସାଧାରଣତଃ ପିଲା ହେବାର ସମ୍ଭାବନା କମ୍ । ତେବେ ବେଳେବେଳେ ବ୍ୟତିକ୍ରମ ମଧ୍ୟ ହୁଏ । ତା'ଛଡ଼ା ଏଇ ରିପୋର୍ଟକୁ ମୁଁ ଠିକ୍ ବୋଲି ଭାବୁନି । ତେଣୁ କିଛି ଦିନ ଛାଡ଼ି ତୁମେ ଆଉଥରେ ଶୁକ୍ର ପରୀକ୍ଷା କର ।

ପର୍ଶୁ ବାହାରକୁ ଆସିଲା । ତା'ର ଭାରାକ୍ରାନ୍ତ ହୃଦୟ ଖୁବ୍ ଉଲ୍ଲସିତ ହେଲାନି ବା ସିଏ ଭାଙ୍ଗିପଡ଼ିବାର ମନେହେଲାନି । ଏହାପରେ ସେ ଟ୍ରକ୍ ଚଳାଇବାକୁ ଗଲା ।

ଭଣଜାର ସ୍ୱନକ୍ଷତ୍ର, ମାଉସୀ ପୁଅ ଭାଇର ବାହାଘରରେ ଯୋଗଦେଇ ଅନେକ କାମ କଲା । ଜାନକୀ ବଡ଼ ଭଉଣୀର ଅପରେସନ୍‌ରେ କିଛି ଟଙ୍କା ଦେଲା । ପିଲାମାନଙ୍କର ଅସୁବିଧା ନ ହେବା ନିମନ୍ତେ ଜାନକୀକୁ ଛାଡ଼ି ମଧ୍ୟ ଆସିଲା । ସେଠି ସିଏ ରହିଥିଲେ ଚଳିଥାନ୍ତା । କିନ୍ତୁ ଦୁଇ ସପ୍ତାହ ପୂର୍ଣ୍ଣ ନ ହେଉଣୁ ପର୍ଶୁ ପାଖକୁ ଖବର ପଠାଇଲା ଜାନକୀ ଏବଂ ଫେରିଆସିବାକୁ ଜିଦ୍ କଲା । ଘରେ ପହଞ୍ଚିବା ପରେ ଏକୁଟିଆ ବେଳେ ଅନ୍ୟମନସ୍କ ରହୁଥିଲା ଏବଂ ରାତିରେ ପର୍ଶୁକୁ ଖୁବ୍ ଆଦର କରୁଥିଲା । ସତେ ଯେପରି ପୂର୍ଣ୍ଣ ଅବୟବା ମା' ନିକଟରେ ପର୍ଶୁ ଗୋଟେ ଶିଶୁ ପାଲଟି ଯାଇଛି ।

ଗୋଟେ ମାସ ନ ପୁରୁଣୁ ଜାନକୀ ତା'ର ଋତୁସ୍ରାବ ବନ୍ଦ ହୋଇଯିବାର ଅନୁଭବ କଲା ଏବଂ ସାଙ୍ଗେ ସାଙ୍ଗେ କାହାରିକୁ କିଛି ନ କହି ଅଉ କିଛିଦିନ ଅପେକ୍ଷା କଲା । ସପ୍ତାହେ ଦୁଇ ସପ୍ତାହ ଗଲା । ତଥାପି ହେଉନି । ସକାଳୁ ତାକୁ ବାନ୍ତି ଲାଗୁଥିଲା ଏବଂ ସେଇ ସମୟରେ ସେ ନିଜକୁ ଅନ୍ୟମାନଙ୍କଠାରୁ ଦୂରେଇ ରଖୁଥିଲା । କିନ୍ତୁ କେତେ ଦିନ ? ଦିନେ କ୍ଲାନ୍ତ ନିଦ୍ରିତ ପର୍ଶୁକୁ ଉଠାଇ ଋତୁସ୍ରାବ ବନ୍ଦ ହୋଇଯିବା କଥା କହିଲା ଜାନକୀ । ଆନନ୍ଦ ଆତିଶଯ୍ୟରେ ଆଖିରୁ ନିଦ ଛାଡ଼ିଗଲା ପର୍ଶୁର । ଜାନକୀକୁ ପାଖକୁ ଟାଣିନେଇ ଅସ୍ପଷ୍ଟ ସ୍ୱରରେ କହିଲା, "ଶଃ, କି ଭୁଲ୍ ରିପୋର୍ଟ ଦେଇଛନ୍ତି । ଲେଖିଛନ୍ତି କ'ଣ ନା ଶୁକ୍ରାଣୁ ମୋଟେ ନାହିଁ । ଶୁକ୍ରାଣୁ ନାହିଁ ତ ଗର୍ଭ ହେଲା କେମିତି ?"

"କୋଉ ରିପୋର୍ଟ ?" ଜାନକୀ ପଚାରିଲା ।

"ମୁଁ ତୁମକୁ କହି ନଥିଲି । ଶୁକ୍ର ପରୀକ୍ଷା କରିବା ପାଇଁ ଦେଇଥିଲି । ସେଇ

ରିପୋର୍ଟରେ ଲେଖିଥିଲେ ନିଦାନ ବିଶେଷଜ୍ଞ । ଶୁକ୍ରାଣୁ ନାହିଁ ତ ତମର ଗର୍ଭ ହେଲା କେମିତି ?" ଉତ୍ତେଜିତ ଅବସ୍ଥାରେ କହିଗଲା ପର୍ଶୁ ।

ତା'ପରଦିନ ସନ୍ଧ୍ୟା ବେଳକୁ ଶାଶୁ, ଯା', ନଣନ୍ଦ, ଶଶୁର ସମସ୍ତେ ଜାଣିଗଲେ ଯେ ଜାନକୀ ସନ୍ତାନସମ୍ଭବା । ଘରେ ଗୋଟେ ଆନନ୍ଦର ଲହରୀ ଖେଳିଗଲା । ପଡ଼ୋଶୀ ସ୍ତ୍ରୀଲୋକମାନେ ସତ୍ୟାସତ୍ୟ ପଚାରିଲେ । ଶାଶୁ ସେମାନଙ୍କ ସାମ୍ନା କରୁଥିଲେ । ଜାନକୀ ମନରେ ଗୋଟିଏ ପ୍ରଶ୍ନ ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା, ଶୁକ୍ରାଣୁ ନାହିଁ ତ ଗର୍ଭ ହେଲା କେମିତି ? ତା'ମନର ସନ୍ଦେହ ଦୂରୀଭୂତ ହୋଇ ପାରୁନଥିଲା । ଯଦି ଥିଲା, ଏତେଦିନ ପାଖରେ ରହି ହେଉ ନ ଥିଲା କେମିତି ? ଅନ୍ୟମାନେ କ'ଣ ଭାବନ୍ତୁ ନ ଭାବନ୍ତୁ ଜାନକୀ ନିଜକୁ ବୁଝାଇ ପାରୁ ନଥିଲା । ଯଦି ସେ ସନ୍ତାନ ଧାରଣ କରିବ, ତେବେ ତାହା ସ୍ୱାମୀ ପର୍ଶୁର ନିର୍ଭେଜାଲ ସନ୍ତକ ବହନ କରିବା ଆବଶ୍ୟକ । ଏକଥା ସେ କାହାକୁ କହିପାରୁନଥିଲା ।

ଦିନ ଅତିକ୍ରାନ୍ତ ହୋଇଯାଉଥିଲା, ଏହା ସହିତ ଜାନକୀର ବିମର୍ଷତା ମଧ୍ୟ । ତା' ଗର୍ଭାବସ୍ଥା ସମ୍ବନ୍ଧୀୟ ଆଲୋଚନା ଶୁଣିଲେ ଚମକି ପଡୁଥିଲା । ସେ ମନେ ମନେ ଭାବୁଥିଲା ଗର୍ଭନଷ୍ଟ ହୋଇ ଯାଆନ୍ତା ହେଲେ । ରାତିରେ ଅନେକ ସମୟ ଯାଏଁ ତାକୁ ନିଦ ହେଉ ନ ଥିଲା । ଶାନ୍ତ ମନରେ ଶୋଇଯାଇଥିବା ପର୍ଶୁ ଉପରେ ତା'ର ରାଗ ହେଉଥିଲା । ତାକୁ ନ ଉଠାଇ ଏକା ଏକା ବାରି ଆଡ଼କୁ ଯାଉଥିଲା । ଭଲରେ ସିଏ ଖାଇପାରୁ ନ ଥିଲା । ଦୁର୍ବଳ ଅନୁଭବ କରୁଥିଲା ।

ରାତିରେ ଦିନେ ଏକୁଟିଆ ଉଠିଥିବା ବେଳେ ଅନ୍ଧାରରେ ଖୁଣ୍ଟି ମୁହଁମାଡ଼ି ପଡ଼ିଗଲା ଜାନକୀ । ଆଘାତ ଗୁରୁତର ନ ଥିଲା । ଝାଡ଼ିଝୁଡ଼ି ହୋଇ ଉଠି ଆସିବା ପରେ ସେ ମନେପକାଇଲା ଯେ ତା'ର ଅନ୍ୟମନସ୍କତା ମଧ୍ୟ ଦେଖାଦେଇଛି । ପଡ଼ିଯାଇଥିବା କଥା ସେ କାହାକୁ କହିଲାନି । ଦୁଇଦିନ ପରେ ତା'ର ରକ୍ତସ୍ରାବ ଆରମ୍ଭ ହେଲା । ଗୁରୁତର ନ ହେଲେ ମଧ୍ୟ ତାକୁ ବାରମ୍ବାର ପ୍ୟାଡ୍ ବଦଳାଇବାକୁ ପଡୁଥିଲା । ପେଟରେ ସାମାନ୍ୟ ଯନ୍ତ୍ରଣା ହେଉଥିଲା । ଏଥର ଲୁଚାଇବା ତା'ପକ୍ଷେ ସମ୍ଭବପର ହେଲାନି । ପ୍ରଥମେ ପର୍ଶୁ, ତା'ପରେ ତା ଶାଶୁ ଶଶୁରଙ୍କ କାନକୁ କଥାଟି ଗଲା । ବ୍ୟସ୍ତ ହୋଇପଡ଼ିଲେ ସମସ୍ତେ । ଯାହା ଟଙ୍କା ଲାଗିବ ଲାଗୁ ଗର୍ଭ ନଷ୍ଟ ନ ହେଉ । ଡାକ୍ତରଙ୍କୁ ଅନୁରୋଧ ଜଣାଉଥିଲା ପର୍ଶୁ । ଜାନକୀ ନିର୍ବିକାର । ନଷ୍ଟ ହୋଇଗଲେ ତା'ର ଶୋଚନା କରିବାର କିଛି ନାହିଁ । କିନ୍ତୁ ସେ ମୁହଁ ଖୋଲି କହିପାରୁ ନଥିଲା ।

"ଥ୍ରେଟେନ୍ଡ୍ ଆବୋର୍ସନ୍ । ରହିପାରେ, ଔଷଧ ନିଅ ।" ବୁଝାଇ ଦେଲେ ଡାକ୍ତର ।

ଗାଡ଼ି ଚଳାଇବାକୁ ଯାଉ ନଥିଲା ପର୍ଣ୍ଣ୍ଣୁ । ଦୁଇ ଦିନ ପରେ ଜୋର୍‌ରେ ପେଟ ବ୍ୟଥା ସାଙ୍ଗକୁ ଅଧିକ ରକ୍ତସ୍ରାବ ହେତୁ ଡାକ୍ତରଖାନାକୁ ଆଣିବା ଅତ୍ୟାବଶ୍ୟକ ଥିଲା । ଏଥର ଡାକ୍ତରଙ୍କ ଲକ୍ଷ୍ୟ ସ୍ଥିର । ଅସମ୍ପୂର୍ଣ୍ଣ ଗର୍ଭପାତ । ସମ୍ପୂର୍ଣ୍ଣ ଭ୍ରୂଣାଂଶ ବାହାର କରିବା ପାଇଁ ମତାମତ ଦେଲେ ।

ଭ୍ରୂଣ ନିଷ୍କାସନ ପରେ ଜାନକୀକୁ ଖୁବ୍ ଉଶ୍ୱାସ ଲାଗୁଥିଲା । ତେବେ ପର୍ଣ୍ଣୁ ଆଖିରେ ଲୁହ ଭରି ଯାଇଥିଲା । ଜାନକୀ ମନରେ ଗୋଟିଏ ପ୍ରଶ୍ନ ଝଙ୍କୃତ ହେଉଥିଲା– ଶୁକ୍ରାଣୁ ଯଦି ସନ୍ତାନ ଧାରଣ ସଙ୍ଗେ ସମ୍ବନ୍ଧିତ ତେବେ ଏତେ ଦିନ ଯାଏ ମା' ହେଉ ନ ଥିଲା କାହିଁକି ? ଏବେ କିପରି ହେଲା ?



# ମାଆ

କମଳିନୀ ଶେଯରେ ଥାଇ ଅନୁମାନ କରି ପାରୁଥିଲେ ଯେ ସକାଳ ହୋଇଗଲାଣି । ଜଳାକବାଟି ଦେଇ ଆକାଶ ପରିଷ୍କାର ହୋଇ ଆସୁଥିବା ସେ ଦେଖିପାରୁଥିଲେ । ମହନି ବେହେରାର ମୃଦଙ୍ଗ, ବାସୁଦେବ ମନ୍ଦିରର କ୍ୟାସେଟ୍ ଭକ୍ତି ସଙ୍ଗୀତ, ଧଡ଼ିଆ ନାଏକର ପଦିପଦିକିଆ ପୁରୁଣା ସିନେମା ଗୀତ, ବୁଧିଆ ମାଆ ଗଉଡୁଣୀର ଗାଈମାନଙ୍କ ନାଆଁ ଧରି ଡାକିବାର କୁହାଟ କେଡ଼େ ମଧୁର ଶୁଣାଯାଉଛି କାନକୁ ।

କାଲି ରାତିସାରା ଅନିଦ୍ରା । ଗୋଡ଼ରେ ବାହାରିଥିବା ବଥଟାର ଯନ୍ତ୍ରଣାରେ ନିଦ ହେଲାନି । ରାତିରେ ଖାଇ ଶୋଇବା ପର୍ଯ୍ୟନ୍ତ ସାଧାରଣ ମନେ ହେଉଥିଲା । ସେ ଭାବୁଥିଲେ ଶୋଇ ପଡ଼ିଲେ କମିଯିବ ।

ତୀବ୍ରତର ହେଉଥିଲା ଯନ୍ତ୍ରଣା । ଏବେ ତିନିକିଲୋମିଟର ଦୂର ଡାକ୍ତରଖାନାକୁ ଯାଇ ଡାକ୍ତରଙ୍କୁ ଦେଖାଇବା ଆଉ ଔଷଧ କିଣି ଖାଇବା ଅସମ୍ଭବ ବ୍ୟାପାର । ସନ୍ଧ୍ୟାବେଳେ କଷ୍ଟ ଟିକେ କମ୍ ଥିଲା । ସେତିକିବେଳେ ଡାକ୍ତରଙ୍କ ସହ ପରାମର୍ଶ କରିବାକୁ ତାଙ୍କର ଇଚ୍ଛା ହେଉଥିଲା । ସାଙ୍ଗରେ କେହି ନଥିଲେ । ଏକା ଚାଲି ଚାଲି ଯିବା ତାଙ୍କ ପକ୍ଷେ ସମ୍ଭବପର ମଧ ନଥିଲା । ଭାରତୀୟ ରେଳସେବାର ଖଲାସୀ ଚାକିରିରୁ ଅବସର ନେଇଥିବା ସ୍ୱାମୀ ଉଚ୍ଚ ରକ୍ତଚାପ ଏବଂ ଦୁର୍ବଳତା ଯୋଗୁଁ ବାହାରକୁ ଯାଉନଥିଲେ । ପୁଅ ନୀରଦ ବାହାରକୁ ଯାଇଥିଲା । ଅନେକ ଦିନରୁ ଫିଙ୍ଗା ଫୋପଡ଼ା କଥାରେ କାମ ଚଳାଉଥିବା ବୋହୂ କେତେଦିନ ତଳେ ଗାଳିଗୁଲଜ କରିବା ପରେ କଥା କହିବା ବନ୍ଦ କରିଦେଇଥିଲା । ସ୍ୱାମୀଙ୍କ ଚାକିରି ଥିବାବେଳେ ବଡ଼ ଝିଅକୁ ସେ ବାହା ଦେଇଥିଲେ ଥିଲାବାଲା ଘରେ । ସେମାନଙ୍କର ବାଟିଏ ଜମି ଥିଲା । ଝିଅ ଶଶୁର ଖଣିନେଇ ସେଥିରୁ ଗ୍ରାନାଇଟ୍ ପଥର କଟାଉଥିଲେ । ଚାରିଭାଇ ମଧ୍ୟରୁ ଜଣେ ବାପାକୁ ସାହାଯ୍ୟ କରୁଥିଲେ । ଦୁଇଜଣ ଗୋଟେ ଟ୍ରକ୍ ଲିଜ୍‌ରେ ଆଣି ପଥର ବୋହିବା କାମରେ ଲାଗିଥିଲେ । ବାହାଘର ବେଳେ ଜଣା ପଡୁନଥିଲା । ଜ୍ୱାଇଁଟା ନିର୍ବୁଦ୍ଧିଆ ଓ ଟିକିଏ ବୋକା ନିଶ୍ଚୟ । ତା'ନହେଲେ

ସବୁ ଭାଇ ବ୍ୟବସାୟ କରି ନିତିଦିନିଆ ପଇସା ଦେଖୁଥିବା ବେଳେ କ୍ୱାଇଁଟା କାହିଁକି ଜମି ଦେଖାଶୁଣା କରୁଥାଆନ୍ତା ! ଝିଅ ଶସ୍ତା ଶାଢ଼ୀ ପିନ୍ଧୁଚି । ନିଜ ପୁଅଝିଅଙ୍କର ପ୍ୟାଣ୍ଟ ସାର୍ଟ କିଣିବା ବେଳେ ବାପାଙ୍କୁ ଜଣାଇବାକୁ ପଡୁଚି । ହେଲେ ଝିଅ କିଛି ଅଭିଯୋଗ ନେଇ ଦିନେ ବାପଘରକୁ ଆସିନି । ନୀରଦ ସେଥିପାଇଁ ଖୁସି ।

ଯେତେ ଯାହା ଅଭିଯୋଗ କେବଳ ସାନ ଭଉଣୀ ବିରୋଧରେ, ଯିଏ ତିନିବର୍ଷ ତଳେ ଗାଆଁର ଗୋଟେ ଟୋକାକୁ ବାହା ହେବାକୁ ଜିଦ୍ କଲା ଓ ନୀରଦର ସମସ୍ତ ପ୍ରତିରୋଧ ସତ୍ତ୍ୱେ ବାହା ହେଲା । କମଳିନୀ ବୁଝି ପାରନ୍ତିନି କି ବୁଝାଇ ପାରନ୍ତିନି ଯେ ନୀରଦ କାହିଁକି ପ୍ରତିବାଦ କଲା, ପିଲାଟା ସେପରି ଅଯୋଗ୍ୟ ବା ଅସମର୍ଥ ନୁହେଁ । ଯୌଥ ପରିବାର । ତା'ବାପା ଭାରତୀୟ ଡାକସେବାରୁ ଅବସର ନେବାପରେ ଜମିବାଡ଼ି ଦେଖାଶୁଣା କରୁଛନ୍ତି । ବଡ଼ଭାଇର ଗୋଟେ ଅଟୋ ରିକ୍ସା ଅଛି । ଆଉ କ୍ୱାଇଁ ଅଜୟ ଗାଆଁରେ ଗୋଟେ ଡାଲି ଚାଉଳ ଦୋକାନ ଦେଇଛି । ସେମାନେ ଗାଆଁର ସମ୍ପନ୍ନ ପରିବାର । ପେନ୍‌ସନ୍ ଆଉ ଫସଲବିକା ଟଙ୍କା କରଜ ଦେଉଛନ୍ତି । ସେମାନେ ଯୌତୁକ ନେଇନାହାନ୍ତି । ଉମା ଦେଖିବାକୁ ଭଲ । ଗାଁ ପାଖ ସ୍କୁଲରେ ମାଟ୍ରିକ୍ ଯାଏ ପଢ଼ିଥିଲା । ବଡ଼ ଝିଅ ରମାଠାରୁ ତିନିବର୍ଷ ସାନ ।

ବ୍ୟସ୍ତ ହୋଇ ପଡୁଥିଲେ କମଳିନୀ । ଉମା ପାଇଁ ବର ଖୋଜିବ କିଏ ? ବଡ଼ଯା' ଦିନେ ଆସି ଚୁପ୍ ଚୁପ୍ କହିଲେ, ଉମା ଅଜୟ ସାଙ୍ଗରେ ଗପ କରୁଛି ଘଣ୍ଟା ଘଣ୍ଟା ଧରି । କମଳିନୀ ବିବ୍ରତ ହେଲେ । ଯେଉଁ ଝିଅକୁ ବାହା କରିବା ପାଇଁ ସମ୍ବଳ ନାହିଁ, ତାକୁ ସେ କ'ଣ ଶୃଙ୍ଖଳା ବା ସାମାଜିକ ନିୟମ ଶିକ୍ଷା ଦେବେ ? ନୀରଦକୁ ଜଣାଇବା ଉଚିତ୍ ହେବ କି ନା ବୁଝି ପାରୁନଥିଲେ । ପକ୍ଷାଘାତ ଯୋଗୁଁ ସର୍ବଦା ଦାଣ୍ଡଘରେ ଶୋଇ କୁନ୍ଥାଉଥିବା ଓ ଅନ୍ୟର ସହାୟତାକୁ ଅପେକ୍ଷା କରୁଥିବା ସ୍ୱାମୀଙ୍କୁ ଏସବୁ ନ ଜଣାଇବା ଭଲ । ତାଙ୍କର ରକ୍ତଚାପ ବଢ଼ିଯିବ । ଝିଅର ଦୁର୍ନାମ ହୋଇଯିବା ଭୟରେ କମଳିନୀ ଯେଉଁ ଗୋପନୀୟ ଖବରଟି ପାଇଲେ ସେଥିରେ ସିଏ ଉଲ୍ଲସିତ ହୋଇପଡ଼ିଲେ । ଅଜୟର ବାପା ବୈଷ୍ଣବ ଭାଇ ଆସି କହିଲେ ମୋ ପୁଅ ଅଜୟକୁ ମୁଁ ବାହାଦେବି । ତମ ଝିଅକୁ ତୁମେ ଯେଉଁଠି ତ ହେଲେ ଦେବ । ପିଲାମାନେ ଯଦି ତାଙ୍କର ଚାହୁଁଛନ୍ତି କରିଦେଲେ ଗଲା । ଏତେ ଲୁଚାଛପା କିଆଁ ?

ନୀରଦ ଅମଙ୍ଗ ହେଲା । ଗାଆଁରେ ଭଉଣୀ ବାହାହେଲେ ସମ୍ମାନ ରହିବ ? ସିଏ କିନ୍ତୁ କୌଣସି ଭଲ ପ୍ରସ୍ତାବ ଆଣିପାରୁନଥିଲା । ତା ପ୍ରତିବାଦକୁ ଗୁରୁତ୍ୱ ଦେବାର ମାନସିକତା ନଥିଲା କମଳିନୀଙ୍କର । ଜାତକ ଯୌତୁକର ପ୍ରଶ୍ନ ଉଠି ନଥିଲା । କେତେ ଧୁମ୍‌ଧାମ୍‌ରେ ବାହାଘର କଲେ ବୈଷ୍ଣବ ପ୍ରଧାନ । କମଳିନୀଙ୍କର କିଛି ଖର୍ଚ୍ଚ

ହୋଇନଥିଲା । ଉମା ବାହାହୋଇ ଚାଲିଗଲା । ତା'ର ଦୁଇବର୍ଷର ପୁଅଟିଏ ହେଲାଣି । ବାପଘରକୁ ବୁଲି ଆସୁଥିବା ଉମା ବା ତା' ପୁଅପ୍ରତି ସ୍ନେହ ଶ୍ରଦ୍ଧା ଦେଖାଏନା ନୀରଦ, ବରଂ ବିରକ୍ତି ପ୍ରକାଶ କରେ । ତା' ଶାଶୁ ଶଶୁର ବୁଝି ପାରିଲେଣି । ଛାଡ଼ିବାକୁ ରାଜି ହୁଅନ୍ତିନି । ଉମାର ମନ ବୁଝେନା । ବାପା ବୋଉକୁ ଦେଖିବା ପାଇଁ ଚାଲିଆସେ । ସେ ଜାଣେ, ଭାଇର ଅବରୁଦ୍ଧ କ୍ରୋଧ ଓ ପ୍ରଚ୍ଛନ୍ନ ବିରକ୍ତି ବାପଘରେ ଦୁଇଦିନ ରହିବାକୁ ସୁଯୋଗ ଦେବନି ।

ପାଞ୍ଚଦିନ ତଳେ ଆସିଥିଲା ମନକୁ ମନ । ତା' ଶାଶୁଘର ଦୁଇବଖରା ଚାଳଘର ଭାଙ୍ଗି ଛାତଘର କରୁଥିଲେ । ଭଙ୍ଗା କାନ୍ଥର ମାଟି ଟେଳା ଅଗଣା ସାରା ଜମା ହୋଇଥିଲା । ସେଥିରେ ଉଠପଡ଼ ହେବାକୁ ପଡୁଥିଲା ତାକୁ । ଦୁଇ ବର୍ଷର ପିଲାଟା ବୁଲି ବୁଲି ଗୋଡ଼ି ମାଟି ପାଟିରେ ପୂରାଉଥିଲା । ବାଡ଼ି ମୁଣ୍ଡରେ ସେ ସବୁକୁ ଜମା କରିବାକୁ ମୂଲିଆ ଦୁଇଟା ଲାଗିଥିଲେ । ତଥାପି ସଫା ହେବାକୁ କିଛିଦିନ ଲାଗିବ । ଘରର ସାନବୋହୂ ହୋଇଥିବାରୁ ତାକୁ ରୋଷେଇକାମ ସମ୍ଭାଳିବାକୁ ହେଉଥିଲା । ପୁଅର ଦୁଷ୍ଟାମୀରେ ତଥା ଗୃହ କାମରେ ଅତିଷ୍ଠ ଉମା କିଛିଦିନ ମୁକ୍ତି ଚାହୁଁଥିଲା, ଆଉ କେବଳ ସେଇଥିପାଇଁ ସେ ଆସିଥିଲା ବାପଘରକୁ ।

କମଳିନୀ ଖୁସି ହୋଇଯାଇଥିଲେ । ସ୍ୱାମୀଙ୍କୁ ଟେକା ଉଠା କରିବାରୁ ତାଙ୍କୁ ଅବ୍ୟାହତି ମିଳିବ । ନାତିଟା ସାଙ୍ଗରେ ଟିକିଏ ଖେଳିବେ । ଝିଅ ସାଙ୍ଗରେ ସୁଖ ଦୁଃଖ ହେବେ । ଗରଗର ହେଉଥିବା ବୋହୂଟା କାର୍ଯ୍ୟ ତାଡ଼ନାରୁ କିଛି ଅବ୍ୟାହତି ପାଇବ । ପାଞ୍ଚବର୍ଷ ହେଲା ଆସିଥିବା ବୋହୂଟାର କିଛି ପିଲାପିଲି ହୋଇନାହାନ୍ତି । ସେଥିପାଇଁ ବୋଧହୁଏ ସେ ବିମର୍ଷ । ଭଗବାନ କାହିଁକି ତା' କୋଳରେ ପିଲାଟିଏ ଦେଉନାହାନ୍ତି ? ପୁଅ ବୋହୂଙ୍କ ମଧ୍ୟରେ କଥା କଟାକଟି ହୁଏ । ଦୁହେଁ ପରସ୍ପରକୁ ଦୋଷ ଦିଅନ୍ତି । ବୋହୂଟା ବଦ୍‌ରାଗୀ । କୌଣସି ଦେବଦେବୀ ନିକଟରେ ପୂଜା ଅର୍ଚ୍ଚନା କରେନି । ଥରେ ଦୁଇଥର ଡାକ୍ତରଖାନାକୁ ଯାଇଥିଲା । ସେଠି ସେମାନେ ସହରକୁ ଯାଇ ବଡ଼ ଡାକ୍ତରଙ୍କ ସଙ୍ଗେ ପରାମର୍ଶ କରିବା ପାଇଁ ଉପଦେଶ ଦେଇଥିବା ଜାଣନ୍ତି କମଳିନୀ । ତେବେ ନୀରଦ ଓ ବୋହୂ ଆଉ ସହରକୁ ଯାଇ ନାହାନ୍ତି । ବୋହୂଟା ଝଟାପଟା ଲଗାଉଥିଲେ ବି କମଳିନୀ ଭାବନ୍ତି, ତା'ର ପିଲାଟିଏ ହେଉ । ଝିଅ ପିଲାଟେ ହେବ, ଅଥଚ ପିଲାପିଲି ନଥିବ, ସମୟ କଟିବ କେମିତି ?

ରାତି କେତେବେଳକୁ ଫେରିଲା ନୀରଦ । ଉମା ତା' ପୁଅକୁ ଧରି ଶୋଇ ପଡ଼ିଥିଲା ।

ମୋଟେ ନିଦ ହେଉନଥିବା ଅଭିଯୋଗ କରୁଥିବା ଶ୍ରୀଧରଙ୍କ ଚଳତ୍‌ଶକ୍ତି ରହିତ

ବାଁ ଗୋଡ଼ ଆଉ ହାତରେ ଗୋଟେ ଆୟୁର୍ବେଦୀୟ ତୈଳ ମାଲିସ୍ କରୁଥିଲେ କମଳିନୀ । ଦାଣ୍ଡଘର ଅତିକ୍ରମ କରି ଗଲେ ମଧ ମାଆଙ୍କୁ କିଛି କହିଲାନି ନୀରଦ । ସିଧାସିଧା ଚାଲିଗଲା ତା' କୋଠରୀକୁ । ବୋହୂ ଶୋଇପଡ଼ିଥିଲା ବୋଧହୁଏ । ତେବେ ତାକୁ ନିଦରୁ ଉଠାଇ ଖାଇବା ଶେଷ କରିବାର ଅଧଘଣ୍ଟାଏ ପରେ ଅଗଣାକୁ ଆସିଲା ଓ ଉମା ଶୋଇଥିବା କମଳିନୀଙ୍କ ବଖରା ଆଡ଼କୁ ଚାହିଁଲା । ସବୁଦିନ ଭଉଣୀ ଉପରେ ଚିଡୁଥିବା ଆଉ ତା'ର ଆଗମନକୁ ବରଦାସ୍ତ କରିପାରୁନଥିବା ନୀରଦ ବୋଧହୁଏ ସାନ ଭଣଜାଟାକୁ ଦେଖିବାର ପ୍ରୟାସ କରୁଥିଲା । କୌଣସି ଅଭାବରୁ ନ୍ୟୂନବୋଧରେ ଅସହାୟ ମନେକରୁଥିଲା ନିଜକୁ । ଦାଣ୍ଡଘରୁ କମଳିନୀ ଦେଖିପାରୁଥିଲେ ତା'ର ଇତଃସ୍ତତ ପଦଚାରଣ ।

ଏକମାତ୍ର ପୁଅକୁ ପାଠ ପଢ଼ାଇବାର ସମସ୍ତ ଚେଷ୍ଟା ବ୍ୟର୍ଥ ହେବାପରେ ତା'ଠାରୁ ସମସ୍ତ ଆଶା ଛାଡ଼ି ଦେଇଥିଲେ ସିଏ । ଅତି କଷ୍ଟରେ ଅଷ୍ଟମ ଶ୍ରେଣୀଯାଏଁ ପଢ଼ି ଗୁଡ଼ାଏ ଟଙ୍କା ଅର୍ଜନ କରିବା ଓ ସୁଖରେ ଜୀବନ ବିତାଇବା ଥିଲା ନୀରଦର ସ୍ୱପ୍ନ । କୁହାବୋଲାକରି ଗୋଟିଏ ସମବାୟ ସୂତାକଳରେ ପାଇଥିବା ଚାକିରି ଲବ୍ଧ ଅର୍ଥରେ ଅୟସ କରୁଥିଲା ସିଏ । କମଳିନୀ କିଛି କହୁନଥିଲେ । ମାଆଙ୍କୁ ମାନୁ ନଥିଲା ନୀରଦ । ବାପାକୁ ସମ୍ମାନ ଦେଇ ସମ୍ଭ୍ରମର ସହିତ କଥାବାର୍ତ୍ତା କରିବା ଶିଖି ନଥିଲା ।

ବଦଭ୍ୟାସ ନା ବଦମାସୀ ? ବାରମ୍ବାର କ୍ଷତି ଓ ଉତ୍ପାଦନର ଅବନତି ଯୋଗୁଁ ସୂତାକଳଟି ବନ୍ଦ ହୋଇଯାଇଥିଲା । ଶ୍ରୀଧର ଅବସର ନେଇ ସାରିଥିଲେ । ସାନଭଉଣୀ ବାହା ହୋଇନଥିଲା । ସନ୍ତାନ ଉତ୍ପାଦନ ନିମନ୍ତେ ଅକ୍ଷମ ବୋଲି ସ୍ତ୍ରୀ ଆକ୍ଷେପ କରୁଥିଲା । ଅସ୍ଥାୟୀ ଚାକିରିର ଅସ୍ତିତ୍ୱ ଚାଲିଗଲାପରେ ଛଅମାସ ଯାଏଁ ଘରେ ବସି ଅନେକ ଗୁଡ଼ିଏ ଅର୍ଥାଗମ ପନ୍ଥାର ଯୋଜନା ପ୍ରସ୍ତୁତ କଲା ନୀରଦ । କଲିକତା ଓ ଦିଲ୍ଲୀରୁ ରେଡ଼ିମେଡ୍ ପୋଷାକ ଆଣି ଖୁଚୁରା ବେପାରୀଙ୍କୁ ଯୋଗାଇବ, କିମ୍ବା ଟ୍ରେକର ପକାଇ ଯାତ୍ରୀ ପରିବହନ କରିବ, ନହେଲେ କୁକୁଡ଼ା ଫାର୍ମ ଆରମ୍ଭ କରି ଅଣ୍ଡା ମାଂସ ବିକିବ । କାନକୁ ଭଲ ଶୁଣାଯିବା ସହ କମଳିନୀଙ୍କ ସମର୍ଥନ ଥିଲେ ମଧ ଆବଶ୍ୟକୀୟ ମୂଳଧନ ପ୍ରଧାନ ପ୍ରତିବନ୍ଧକ ଥିଲା । ତେଣୁ ଅଳ୍ପ ମୂଳଧନ ବିନିଯୋଗ କରି ସେ ଯେଉଁ ଜାଳେଣି କାଠର ବ୍ୟବସାୟ ଆରମ୍ଭ କଲା, ପ୍ରଥମେ ପ୍ରଥମେ ତାହା ଉତ୍ସାହଜନକ ମନେହେଲା । ସପ୍ତାହକେ ଗୋଟେ ଦୁଇ ଟ୍ରକ କାଠ ଆସି ବିକ୍ରି ହେଉଥିଲା । ଅଧିକ ଉତ୍ସାହରେ ବ୍ୟବସାୟକୁ ପ୍ରସାରିତ କରିବା ଯୋଜନାରେ ନିମଗ୍ନ ଥିବା ନୀରଦ କାହିଁକି କେଜାଣି ଉତ୍ସାହହୀନ ହୋଇପଡ଼ିଲା । ଗୋଦାମର ଚାଳିଆ ତଳେ ଟଙ୍ଗା ଯାଇଥିବା କଣ୍ଟାପଲା ଉଠିଗଲା ଧୀରେ ଧୀରେ । ବାକି ଆଦାୟର ଅସାମର୍ଥ୍ୟ ଓ ମୂଳଧନର ବେପରବାୟ

ଖର୍ଚ୍ଚ ବ୍ୟବସାୟଟିକୁ ଧ୍ୱଂସ କରିଦେଲା । ସ୍ୱାମୀଙ୍କ ସଞ୍ଚୟର ଶେଷ ସମ୍ବଳ କମଳିନୀ ଦେଇଥିଲେ ପୁଅକୁ । ଅଥଚ ନୀରଦ ଯାହା ଆଦାୟ କଲା ସେଥିରେ ସାଙ୍ଗ ମେଳରେ ହୋଟେଲ୍‌ରେ ଖାଇ ଦେଉଥିଲା । କିଛି ନ ମିଳିଲେ ଘରକୁ ଫେରିଆସି ମାଆ, ଭଉଣୀ ଓ ସ୍ତ୍ରୀ ସଙ୍ଗେ ଝଗଡ଼ା କରୁଥିଲା ।

ବେହିସାବୀ ଓ ବଦଖର୍ଚ୍ଚୀ ପୁଅଟା କୌଣସି ବ୍ୟବସାୟରେ ଯେ ସଫଳ ହୋଇ ପାରିବନି ଏହା ବୁଝୁଥିଲେ କମଳିନୀ । କାଠ ବ୍ୟବସାୟରେ ଅସଫଳ ହୋଇ ଢେର ଗୁଡ଼ାଏ ଦିନ ଘରେ ବସିବା ପରେ ଏଇ କିଛିଦିନ ହେଲା ଗୋଟେ ଠିକାଦାର ନିକଟରେ ସୁପରଭାଇଜର କାମ କରୁଛି ବୋଲି କହୁଥିଲା । ସକାଳେ ଘରେ କ'ଣ ଗଣ୍ଡେ ଖାଇଦେଇ ବାହାରି ଯାଉଥିଲା ଓ ଅନେକ ରାତିରେ ଫେରୁଥିଲା ।

ଉମା ତା' ପୁଅକୁ ଆଣି ଆସିବାର ପରଦିନ ଖୁବ୍ ସକାଳୁ ଉଠିଲେ ମଧ୍ୟ କୁଆଡ଼େ ନ ଯାଇ ଘରେ ବସିରହିଲା ନୀରଦ । ସେ ଖୁବ୍ ଅପ୍ରସନ୍ନ ମନେ ହେଉଥିଲା ଓ ମନକୁ ମନ ଗପୁଥିଲା । କମଳିନୀ କିଛି ପଚାରିବାକୁ ସାହସ କଲେନି । ଏମିତିରେ ତ ତାଙ୍କର ପ୍ରତି କଥାରେ ସେ ତ୍ରୁଟି ଦର୍ଶାଉଥିଲା ଓ ତା' ପାଇଁ ବାପା କିଛି କରିନାହାନ୍ତି ବୋଲି ଅଭିଯୋଗ ବାଢୁଥିଲା । ଉମା ସୌଜନ୍ୟ ଦୃଷ୍ଟିରୁ ମୁଣ୍ଡିଆ ମାରିବା ପରେ କହିଲା, "କ'ଣ କରୁଛୁ ଭାଇ, ଆଜି କ'ଣ ଯିବୁନିକି ?"

-"କ'ଣ କରିବି ? ବାପା ବୋଉ ତ କିଛି କରିବାକୁ ଦେଉନାହାନ୍ତି । କାଠ ବ୍ୟବସାୟରେ ସିନା କ୍ଷତି ହେଲା । ଆଉ କିଛି ଟଙ୍କା ଦେଇଥିଲେ ପାନ ଦୋକାନଟାଏ ଦେଇଥାନ୍ତି । କହିଲା କ'ଣ ନା ଟଙ୍କା ନାହିଁ । ଅପା ଆସୁଛି, ତା'ପାଇଁ ଟଙ୍କା ଖର୍ଚ୍ଚ ହେଉନି ? ତୁ ଆସିବୁ, ତୋ ପାଇଁ ଟଙ୍କା ଖର୍ଚ୍ଚ ହେବନି ? ତୋ ପୁଅ ଏକୋଇଶାକୁ ଟଙ୍କା ଖର୍ଚ୍ଚ ହେଇନି ?"

ପ୍ରତିବାଦ କଲା ଉମା, "ଆମ ପାଇଁ କି ଟଙ୍କା ଖର୍ଚ୍ଚ ହୋଇଚି ? ବୋଉ ତ କହୁଥିଲା ଯାହା ସଞ୍ଚୟ ଥିଲା ସବୁ ତୋ କାଠ ବ୍ୟବସାୟ ପାଇଁ ଦେଇଥିଲା । ଲାଭ ଦୂରେ ଥାଉ ମୂଳଜମା ବୁଡ଼େଇଦେଲୁ । ଏବେ ଆଉ କୋଉଠୁ ଟଙ୍କା ଆସିବ ? ତୁ ପରା କୋଉ ଠିକାଦାର ପାଖରେ ସୁପରଭାଇଜର କାମ କରୁଛୁ !"

ଏଥର ରୀତିମତ ରାଗିଗଲା ନୀରଦ । କହିଲା ପାଟିକରି, "ମୋ ପାଇଁ କେବଳ ଟଙ୍କା ଖର୍ଚ୍ଚ ହୋଇଛି । ତୁମମାନଙ୍କ ପାଇଁ ହୋଇନି ?"

ପରିସ୍ଥିତି ବିସ୍ଫୋରକ ଅବସ୍ଥାରେ ପହଞ୍ଚିବାକୁ ଯାଉଛି ବୋଲି ଅନୁଭବ କରି ହସ୍ତକ୍ଷେପ କଲେ କମଳିନୀ । କହିଲେ, "ପିଲାଟା କ'ଣ କହିଲା ଯେ ତା' ଉପରେ ରାଗୁଛୁ ? ତୋର ଭଲ ପାଇଁ ତ କହୁଚି । କାଠ ବ୍ୟବସାୟରେ ଲାଭ କରିଥିଲେ ତାକୁ

ଦେଇଥାନ୍ତୁ କି ? ତା ଛଡ଼ା ଭାଇ ହିସାବରେ ତୁ କ'ଣ ତାକୁ ବିଭା କରାଇନଥାନ୍ତୁ ? ତା ବାହାଘରରେ ଆମର କ'ଣ ଖର୍ଚ୍ଚ ହୋଇଛି ? ସବୁ ତ ତା'ଶଶୁରଘର ବହନ କଲେ ।"

ନୀରଦର ରାଗ ଉମା ଆଡୁ ଅପସରି ମାଆଡ଼କୁ ମୁହାଁଇଲା । କମଳିନୀ ଚୁପ୍ ହୋଇଗଲେ । ଗୁଣୁଗୁଣୁ ହୋଇ ସ୍ୱାମୀଙ୍କ ନିକଟକୁ ଫେରି ଆସିଲେ । ସେଇଦିନଠାରୁ ନୀରଦ କଥା କହୁନି । ଗରଗର ହେଉଚି । ମାଆର ଗୋଡ଼ରେ ବଥ ବାହାରି ଯନ୍ତ୍ରଣା ହେଉ ବା ବାପାର ପକ୍ଷାଘାତ ରୋଗ ହେଉ, ଏଥିପାଇଁ ଜମା ନଜର ନାହିଁ ତା'ର ।

ନୀରଦ ସକାଳୁ ଉଠି କୁଆଡ଼େ ଚାଲିଗଲାଣି । ଗୋଡ଼ଟା ଜୋର୍‌ରେ ବିନ୍ଧୁଛି । ବୋହୂ ଘରକାମରେ ଲାଗିଚି । ସ୍ୱାମୀ ଦାଣ୍ଡଘରେ ତାଙ୍କୁ ଅପେକ୍ଷା କରୁଛନ୍ତି ନିତ୍ୟକର୍ମ ଶେଷ କରିବା ପାଇଁ ।

-"ମୋ ଗୋଡ଼ଟା ବିନ୍ଧୁଚି । ଡାକ୍ତରଖାନାକୁ ଯିବା ଦରକାର," ବୋହୂ ଶୁଣିପାରିଲା ଭଳି ସ୍ୱରରେ କହୁଥିଲେ କମଳିନୀ ।

ବୋହୂ ମନରେ ପରିବର୍ତ୍ତନ ହୋଇଛି ବୋଧହୁଏ । ପାଣି ଢାଳେ ଲେଖାଏଁ ଶାଶୁ ଶଶୁରଙ୍କ ନିକଟରେ ରଖିଦେଇ ଦାନ୍ତ କାଠି ଦୁଇଟା ପକାଇଦେଲା ସେଥିରେ । ପଡ଼ିଶା ଘର ଜଣେ ଦିଅରକୁ ଡାକି କହିଲା, "ରଞ୍ଜୁ, ବୋଉଙ୍କ ଗୋଡ଼ରେ ବଥ ବାହାରି କଷ୍ଟ ହେଉଚି । ଟିକିଏ ନେଇ ଯାଆନ୍ତନି !"

ଖୁସି ହୋଇଗଲେ କମଳିନୀ । ସବୁବେଳେ ଖିଟିଖିଟି ହେଉଥିବା ବୋହୂଟା ଉପରେ ତାଙ୍କର ଧାରଣା ସହସା ବଦଳିଗଲା ।

କଲେଜ ପଢୁଆ ପୁତୁରାଟି ତାଙ୍କୁ ସାଇକେଲରେ ବସାଇ ନେଇଗଲା ପାଖ ଡାକ୍ତରଙ୍କ ନିକଟକୁ । ଆଗରୁ ବହୁବାର ଯାଇଛନ୍ତି । ଡାକ୍ତରବାବୁ ବି ବହୁତଦିନ ହେଲା ରହିଥିବାରୁ ପାଖଆଖର ଲୋକଙ୍କ ସଙ୍ଗେ ଜଣାଶୁଣା ହୋଇଯାଇଥିଲେ । ଛୁଟିଦିନ ହୋଇଥିବାରୁ ଘରେ ଥିଲେ ସିଏ । ବଥଟିକୁ ଦେଖି କିଛି ଔଷଧ ଲେଖିସାରିବା ପରେ ଡାକ୍ତରବାବୁ ପଚାରିଲେ, "ତମ ପୁଅ ନାହିଁକି ?"

– "ନାହିଁ କାହିଁକି ! ସକାଳୁ ଉଠି କୁଆଡ଼େ ଚାଲିଗଲା । ସାନ ଭଉଣୀ ସାଙ୍ଗେ ଝଗଡ଼ା କରି ତିନିଦିନ ହେଲା ମୋ ସାଙ୍ଗେ କଥା କହୁନି । ଆମେ କ'ଣ କରିଥାନ୍ତୁ ଯେ ? ସବୁ ପଇସା ବରବାଦ୍ କରି ଦେଇଚି । ଆଉ କୋଉଠି ଅଛି ଯେ ଆମେ ଦବୁ ?"

ସବୁ ଶୁଣୁଥିଲେ ଡାକ୍ତରବାବୁ । କିଛି କହୁନଥିଲେ । କମଳିନୀ ବୁଝିପାରିଲେ ସିଏ ବୋଧହୁଏ କିଛି ଭୁଲ୍‌କରିପକାଇଛନ୍ତି । ତେଣୁ ନିଜକୁ ସଂଶୋଧନ କରିବା ପାଇଁ

କହିଲେ, "ପୁଅର ସୂତାକଳ ଚାକିରି ନାହିଁ । କାଠ ବ୍ୟବସାୟ ଆରମ୍ଭ ପରେ କ୍ଷତି ହେଲା । ବୋହୂର ପିଲାଝିଲା ହେଇନାହାନ୍ତି । ତେଣୁ ମନକଷ୍ଟ ।" କମଳିନୀଙ୍କ ଆଖି ଛଳ ଛଳ ହୋଇଗଲା । "ଏବେ ପୁଅ କୋଉ ଜଣେ କଣ୍ଟ୍ରାକ୍ଟର ପାଖରେ ସୁପରଭାଇଜର କାମ କରୁଛି । ଖରାପ ଲୋକଟେ । ଡେରିରେ ଗଲେ ପାଟି କରୁଚି । ମଜୁରୀ କାଟି ଦଉଚି । ତାଙ୍କର ପକ୍ଷାଘାତ- ଉଠି ପାରୁନାହାନ୍ତି । ମୋତେ ସେବା କରିବାକୁ ପଡୁଚି । ଏଇ ପୁତୁରାଟି ସାଙ୍ଗରେ ଆସିଲା ।"

ଗୋଡ଼ ବଥ ଉପରେ ଲଗାଇଥିବା ଶୁଖିଲା ଲେପକୁ ଛଡ଼ାଉଥିବା ବେଳେ ତାଙ୍କୁ କଷ୍ଟ ହେଉଥିଲା । ଟିକିଏ ରହି ସିଏ ପୁଣି ଆରମ୍ଭ କଲେ, "ତମେ ଡାକ୍ତରବାବୁ ଦେଖନ୍ତନି । ବୋହୂଟା କାହାକୁ ଦେଖାଇଥିଲା । ତା'ର ପିଲା ଛୁଆ ହେଉନି ।"

ଡାକ୍ତରବାବୁ ହଁ ଭରିଲେ । କେବେ ଆସିବାକୁ ପ୍ରସ୍ତାବ ଦେଲେ ।

ଔଷଧ ଦେଖାଇ ଫେରିଯାଉଥିବାବେଳେ କମଳିନୀ ପୁଣି କହିଲେ, "ତମେ ଡାକ୍ତରବାବୁ ପୁଅକୁ ତ ଜାଣିଚ । ତାକୁ ଟିକିଏ ବୁଝାଇଦେବ । କୋଉଠି ଥାକିଯାଇ କିଛି ରୋଜଗାର ନକଲେ ଚଳିବ କିପରି ?"

ଛୋଟେଇ ଛୋଟେଇ କମଳିନୀ ପୁତୁରା ସାଇକେଲ୍ ପାଖକୁ ଗଲେ । କ୍ୟାରିୟରରେ ବସିବା ପରେ ପିଲାଟି ଆସ୍ତେ ଚଳାଇଲା ।

ସେମାନଙ୍କ ମୂର୍ତ୍ତି ଅପସାରିତ ହୋଇଯାଉଥିଲା ଦୂରକୁ ଦୂରକୁ ।

ଡାକ୍ତର ଦେଖିଲେ ଗୋଟିଏ ମାଆର ମୂର୍ତ୍ତି ଲୁଚି ଯାଉଚି ।



# ବନ୍ଧୁ ପରି ଜଣେ

ଆସର ଆୟୋଜନ ନିଷ୍ପତ୍ତି ପରେ ଶେଖରଙ୍କୁ ନିମନ୍ତ୍ରଣ କରେ ଗୌରମୋହନ । ନିୟମିତ ନ ହେଲେ ମଧ୍ୟ ମାସ ମଧ୍ୟରେ ଚାରି ପାଞ୍ଚଥର ଏକତ୍ରିତ ହୁଅନ୍ତି ସମଭାବାପନ୍ନ ବନ୍ଧୁଗଣ, ଯଦିଓ ଶେଖର ଏକ ବ୍ୟତିକ୍ରମ । ସେ ଶାକାହାରି । ଛୋଟ କାଟର ଗୋଟେ ଭୋଜି। କ୍ୟାସେଟ୍ ପ୍ଲେୟାର ଦ୍ୱାରା କ୍ଷୀଣ ସ୍ୱରରେ ଲଘୁ ସଂଗୀତ । ମଦ ପିଉ ପିଉ ଅବାନ୍ତର ଆଲୋଚନା ଆଉ ଅଣାୟତ ହେବା ପରେ ପ୍ରଳାପ ମାଧ୍ୟମରେ ସତ୍ୟ ସଂଳାପର ଉଦ୍‌ଗୀରଣ ।

ଶେଖର ଏପରି ବନ୍ଧୁ ମିଳନର ପକ୍ଷପାତି ନୁହେଁ । କିନ୍ତୁ ଗୌରର ଅନୁରୋଧ ଏଡ଼ିପାରେନା । ସତ କହିବାକୁ ଗଲେ ଏକ ଉପାନ୍ତ ଅଞ୍ଚଳରେ ଅବସ୍ଥାପିତ ଶେଖର ବର୍ଷାଧିକ କାଳ ବନ୍ଧୁହୀନ ଜୀବନ ବିତାଇବା ପରେ ଦିନେ ଖବର ପାଇଲା, ଜଣେ ଗୌର ତାଙ୍କ କାର୍ଯ୍ୟାଳୟରେ ଯୋଗ ଦେଇଛି । ନାମ ଶୁଣି ଶେଖରର ମନେ ହୋଇଥିଲା ଏ ହୁଏତ ସେଇ ଗୌର ଯାହା ସହିତ କଲିକତାରେ ସେ ଗୋଟିଏ ବର୍ଷ ବିତାଇଥିଲା; ଯିଏ ଚାଲିଲାବେଳେ ମୁଣ୍ଡକୁ ଗୋଟିଏ ପଟକୁ ଢଳାଇ ଚାଲେ । କଥା କହିବା ବେଳେ ମଝିରେ ମଝିରେ ଅଟକି ଯାଏ । ଆଉ କଲିକତାର ଗୋଟେ ଝିଅକୁ ସିଏ ଫସେଇ ବାହାହେବା ଯୋଜନାରେ ଥିଲା । ପ୍ରକୃତରେ ଝିଅଟି ଗୌରକୁ ପିଛା କରୁଥିଲା ନା ଗୌରର ଥୋପ ଗିଳି ତାକୁ ପିଛା କରିବାକୁ ବାଧ ହୋଇଥିଲା, ଏ ଖବର ରଖିବାରେ ଶେଖରର ଉତ୍ସୁକତା ନଥିଲା- ଯଦିଓ ସେମାନେ ପାଖାପାଖି କୋଠରୀରେ ରହୁଥିଲେ । ଏ କାର୍ଯ୍ୟପାଇଁ ଗୌର ବନ୍ଧୁ ମହଲରେ ପ୍ରସିଦ୍ଧ ଲାଭ କରିଥିଲା ଓ ତାକୁ ସମସ୍ତେ ଈର୍ଷା କରୁଥିଲେ । ତା' ପରର ଘଟଣା ମୋଟାମୋଟି ଅସ୍ୱଚ୍ଛ । ଶେଖରର କିଛିଦିନ ଗୋଟେ କୋଇଲା ଖଣିରେ ଯୋଗଦାନ ଏବଂ ସେଠାକାର ଶ୍ରମିକ ସମସ୍ୟାରେ ଅତିଷ୍ଠ ହୋଇ ଓଡ଼ିଶା ସରକାରଙ୍କ ଅଧୀନକୁ ସ୍ଥାନାନ୍ତର ନିଷ୍ପତ୍ତି । ଗୌର କୁଆଡ଼େ ଗଲା, ସେ ଝିଅକୁ ବାହାହେଲା କି ନାହିଁ, କୋଉଠି ଅବସ୍ଥାପିତ ହେଲା, ସେ କଥା ସମ୍ପୂର୍ଣ୍ଣ ଭୁଲି ଯାଇଥିଲା । ତେବେ ଅନେକ ବର୍ଷ ପରେ ଖବର ମିଳିଲା ଗୌର ସେଇ ଝିଅକୁ ବାହାହୋଇ ଓଡ଼ିଶା ଫେରି ଆସିଛି ।

ଆଗନ୍ତୁକ କଲିକତାର ଗୌର କି ନା ଜାଣିବାକୁ ଗୋଟେ ସପ୍ତାହ ବିତିଗଲା । କାର୍ଯ୍ୟାଳୟରେ ଯୋଗଦେଇ ସେ ତା ପୁରୁଣା କାର୍ଯ୍ୟସ୍ଥଳୀକୁ ଚାଲି ଯାଇଥିଲା । ଦିନେ ଟେବୁଲ ନିକଟରେ ବସି ବାହାରକୁ ଚାହିଁଥିବା ସମୟରେ ବାରଣ୍ଡାରେ ଢଳି ଢଳି ଚାଲୁଥିବା ଯେଉଁ ମଣିଷଟି ନଜରରେ ପଡ଼ିଲା, ସିଏ ଗୌର ହିଁ ଥିଲା । ଶେଖର ପାଟିରୁ ବାହାରି ପଡ଼ିଲା 'ଏ ଗୌର...।' ଗୌର ବୁଲି ପଡ଼ିଲା । ତା ମୁହଁରେ ଆଶ୍ଚର୍ଯ୍ୟର ମୁଦ୍ରା । ଅଜଣା ସହରରେ ତା' ନାମଧରି ଡାକୁଥିବା ବ୍ୟକ୍ତି ! ଶବ୍ଦ ଆସୁଥିବା ଦିଗରେ ଶେଖର ହିଁ ଥିଲା । ପାଖକୁ ଆସି ସନ୍ଦିହାନ ଦୃଷ୍ଟିରେ କିଛି ସମୟ ଚାହିଁବା ପରେ ପକେଟରୁ ଚଷମା କାଢ଼ିଲା ।

ସମୟ ଶେଖରର ମୁହଁ ଓ ମଥାର ଗଠନକୁ ବଦଳାଇ ଦେଇଥିଲା । ତେଣୁ ଗୌର ନିରେଖି ଚାହିଁବାରେ କିଛି ଅସ୍ୱାଭାବିକତା ନଥିଲା । ଅସ୍ୱାଭାବିକତା ଥିଲା, ତା'ର ଚିହ୍ନି ନ ପାରିବାର ଶୂନ୍ୟ ଚାହାଣୀ ।

ଶେଖର ଏଇ ଅବସ୍ଥାକୁ ବେଶି ସମୟ ଲାଗିରହିବାକୁ ଦେଲାନି ।

"ଚିହ୍ନି ପାରୁନୁ ନା ? ମୁଁ ଶେଖର । କଲିକତାରେ ଏକାଠି ମେସ୍‌ରେ ରହୁଥିଲେ ।"

ଏଥର ଗୌରର କ୍ଷମା ମାଗିବା ଭଙ୍ଗୀରେ ସ୍ୱୀକାରୋକ୍ତି, 'ଚିହ୍ନି ପାରିଲିନି ଭାଇ । ଖରାପ ଭାବିବୁନି ।' ସେ ବୋଧହୁଏ ଗାଧୋଇ ନଥିଲା । ପୋଷାକ ଲୋଚାକୋଚା । ମୁଣ୍ଡବାଳ ଅବିନ୍ୟସ୍ତ ଭାବରେ ଉଡୁଥିଲେ । ଆଖିରୁ ନିଦ ଛାଡ଼ି ନଥିଲା ।

କାର୍ଯ୍ୟାଳୟରେ ଉପସ୍ଥାନ କମ୍ ଥିଲା । ହୁଏତ ଆଉ କିଛି ସମୟ ପରେ ଆସି ପାରନ୍ତି । ଶେଖର ତା' ଚୌକି ଛାଡ଼ି ବାହାରକୁ ଗଲା ଗୌର ସାଙ୍ଗରେ । ସେମାନେ ସାଙ୍ଗ ହୋଇ ଚା' ପିଇଲେ । କଲିକତାର କିଛି ବିଶିଷ୍ଟ ମୁହୂର୍ତ୍ତମାନଙ୍କର ରୋମନ୍ଥନ କଲେ । ପରେ ଦେଖାହେବାର ପ୍ରତିଶ୍ରୁତି ସହ ପରସ୍ପରଠାରୁ ବିଦାୟ ନେଲେ- ଗୌର କାର୍ଯ୍ୟାଳୟ ମୁଖ୍ୟଙ୍କୁ ଗୃହରେ ଦେଖା କରିବା ପାଇଁ ଆଉ ଶେଖର ତା ଟେବୁଲ ନିକଟକୁ ।

ଗୌରର ତିନି ଚାରିଦିନ ପର୍ଯ୍ୟନ୍ତ ଦେଖାମିଳେନି ଯଦିଓ ସେମାନେ ସେଇ ଏକା ଅଫିସ୍‌ରେ କାମ କରିବା କଥା । ତା' ବିଷୟରେ ଅନ୍ୟମାନଙ୍କୁ ପଚାରିବାକୁ ସଙ୍କୋଚ ଲାଗେ । ବନ୍ଧୁ ହିସାବରେ ସେ ଅନ୍ୟମାନଙ୍କଠାରୁ ବେଶି ଜାଣିବା କଥା । ଯେବେ ଦେଖାହୁଏ ସ୍ୱଳ୍ପ ସମୟ ପାଇଁ ତା'ର ଦୂରେଇ ଯିବାର ବ୍ୟଗ୍ରତା ବାରି ହୋଇ ପଡୁଥାଏ ହାବଭାବରୁ... 'ବୁଝିଲୁ ଶେଖର, ମୋ ଡେପୁଟେସନ୍‌କୁ ସ୍ୱୀକାର କରିବାକୁ ମୁଖ୍ୟ ପ୍ରସ୍ତୁତ ନୁହନ୍ତି । ତାଙ୍କୁ ବୁଝେଇବାକୁ ଦୌଡ଼ିବା ଆବଶ୍ୟକ ପଡୁଛି । ସିଏ ରାଜି ହୋଇଛନ୍ତି । ଏଇ ଭିତରେ ଠିକ୍‌ଠାକ୍ ହୋଇଯିବ ।'

ଆଶ୍ଚର୍ଯ୍ୟ ହୁଏ ଶେଖର । ବନ୍ଧୁ ହିସାବରେ ଗୌରର ସମସ୍ୟା ସମାଧାନ କରିବାରେ ସେ ସହାୟକ ହୋଇପାରନ୍ତା । କାର୍ଯ୍ୟାଳୟର ପୁରୁଣା କର୍ମଚାରୀ ହିସାବରେ ମୁଖ୍ୟଙ୍କ ସହ ତାର ସୌହାର୍ଦ୍ଦ୍ୟ ଅଛି । ଅନୁରୋଧ କଲେ ଗୌରର ଅବସ୍ଥାନ ନିୟମିତ କରିବାକୁ ଅରାଜି ହୁଅନ୍ତେନି । କିନ୍ତୁ ଗୌର ଏସବୁ ଆବଶ୍ୟକ କରୁନି । ନିଜେ ନିଜେ ମୁଖ୍ୟଙ୍କୁ ଭେଟୁଛି । କାର୍ଯ୍ୟାଳୟର ଦୁଇ ଚାରିଜଣ ଅବାଞ୍ଛିତ କର୍ମଚାରୀଙ୍କ ସଙ୍ଗେ ବନ୍ଧୁତ୍ୱ ଜମାଇ ସାରିଲାଣି । ସେମାନେ ତା'ର ଉପଦେଷ୍ଟା । ମଦ ପିଇ କାର୍ଯ୍ୟାଳୟ ପରିସରରେ ଅଶୋଭନୀୟ ଆଚରଣ ପ୍ରଦର୍ଶନ କରିବାର ଦୃଷ୍ଟାନ୍ତ ସେମାନଙ୍କର ଅଛି । ସମଗୋତ୍ରୀ ପକ୍ଷୀମାନେ ଏକତ୍ର ଡେଣା ଝାଡନ୍ତି ।

ଗୌର ପାଇଁ ମନଦୁଃଖ ହୁଏ ଶେଖରର । କାର୍ଯ୍ୟାଳୟର ତୃତୀୟ ଏବଂ ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ମଧ୍ୟରେ ତା' ବିଷୟରେ ଆଲୋଚନା । ଅନେକ ପ୍ରରୋଚନା ପରେ ତା' ଡେପୁଟେସନ୍‌କୁ ବୈଧୀକରଣ କରିଛନ୍ତି ମୁଖ୍ୟ । ଅର୍ଥ ବିନିମୟ ହୋଇଛି ନା ନାହିଁ କେହି କହିପାରୁ ନାହାନ୍ତି । ଭଡ଼ାଘର ଖୋଜୁଥିଲା । ସ୍ୱଳ୍ପ ଦିନ ମଧ୍ୟରେ ଅନେକ ବନ୍ଧୁ ଅର୍ଜନ କଲାଣି । ଶେଖରକୁ ମଧ୍ୟ କହିଥିଲା । ନିଜ ମଧ୍ୟରେ ସଙ୍କୁଚିତ ହୋଇ ରହିଥିବା ଶେଖର ଦୁଇ ଚାରିଜଣଙ୍କୁ ଅନୁରୋଧ କରିଥିଲା । କିଛି ବ୍ୟବସ୍ଥା ହେବା ପୂର୍ବରୁ ତା' ପାଖରେ ରହିଯିବାର ପ୍ରସ୍ତାବ ମଧ୍ୟ ଦେଇଥିଲା । କିନ୍ତୁ ଗୌର ତା' ବ୍ୟବସ୍ଥା କରି ନେଇଥିଲା । ଲାବୋରେଟୋରୀ ଟେକ୍‌ନିସିଆନ୍ ଗୋକୁଳଠାରୁ ଜଣା ପଡ଼ିଲା ଯେ ସେ ବସ୍ତି ଅଞ୍ଚଳରେ ଛୋଟ ଘରଟେ ନେଇଛି । ସେଠି କିଛି ଶ୍ରମିକ ଶ୍ରେଣୀର ଲୋକ ରହୁଛନ୍ତି ସେମାନଙ୍କ ପରିବାର ନେଇ । ସେ ଘରର ଗୋଟିଏ ଦରଜା ଥିଲା । କ୍ଷୁଦ୍ର ଝରକା ଯୋଗୁଁ ପର୍ଯ୍ୟାପ୍ତ ଆଲୋକ ପଡୁନଥିଲା ।

ଘରଟା ଗୋକୁଳର ପସନ୍ଦ ନୁହେଁ, ଏକଥା ତା' ମୁଖଭଙ୍ଗୀରୁ ବୁଝା ପଡୁଥିଲା ।

ଠିକ୍ ଚାରିଦିନ ପରେ ଗୌର ଅକସ୍ମାତ୍ ପହଞ୍ଚି କହିଲା, "ବୁଝିଲୁ ଶେଖର ଘରଟା ନେଲି ଯେ ଦିନ ବେଳେ ଆଲୁଅ ଜାଳିବାକୁ ପଡୁଛି । ପଡ଼ୋଶୀ ରେଡିମେଡ୍ ଦୋକାନୀର ସ୍ତ୍ରୀ କି ମାଷ୍ଟ୍ରାଣୀ ହୋଇଛି, ମୋ ଉପସ୍ଥିତିକୁ ଜମା ସହ୍ୟ କରିପାରୁନି । ଘରଟା ଖାଲିଥିଲେ ଗୋଟାକର ପଇସା ଦେଇ ଦୁଇଟା ଯାକ ଭୋଗ କରିଥାନ୍ତା । ମଟର ମେକାନିକ୍ ସ୍ତ୍ରୀ ଆଗରେ ପାଣ୍ଡିତ୍ୟ ଦେଖାଇଥାନ୍ତା । ସ୍ୱାମୀ ଉପରେ ହାକିମୀ ଜାହିର କରିଥାନ୍ତା । ଦୟନୀୟ ମଣିଷଟି ଥରେ ଦୁଇଥର ମୋ ସଙ୍ଗେ ଆଳାପ କରିଥିଲା । ରାହାବାଳି ଏପରି ଚିତ୍କାର କଲା ଯେ ବିଚରା ବାଧ୍ୟ ହୋଇ ମୋ ସଙ୍ଗେ କଥାବାର୍ତ୍ତା ବନ୍ଦ କରି ଦେଇଛି ।"

"ସେଠାରେ ରହିବାକୁ ଚାହୁଁନୁ ତ । ବେଶ୍ ଅନ୍ୟ ବ୍ୟବସ୍ଥା ହେବା ପର୍ଯ୍ୟନ୍ତ

ମୋ ପାଖରେ ଆସି ରହ ।” ଶେଖର ଆଶ୍ୱାସନା ଦେଲା ।

“ଅନ୍ୟ ଘର ନଜରରେ ପଡ଼ିଲେ କହିବୁ । ସ୍ୱାଧୀନ ଭାବେ ଚଳାଚଳ କରିବା ନିମନ୍ତେ ସୁବିଧା ଥିବା ଦର୍କାର ।” ବାସ୍ତବରେ ଗୌର ଖୁବ୍ ସ୍ୱାଧୀନଚେତା ଥିଲା । କାର୍ଯ୍ୟାଳୟରେ ତା’ର ଅନେକ କାମ ବାକି ଥିଲା । ସିଏ କିଛି କରୁନଥିଲା । ସନ୍ଧ୍ୟାବେଳଟା ଘୁରି ଘୁରି ଦଶଟା ସମୟରେ ଘରକୁ ଫେରୁଥିଲା । ରୋଷେଇର ସମସ୍ତ ସରଞ୍ଜାମ ଥିବା ସତ୍ତ୍ୱେ ହୋଟେଲରେ ଖାଉଥିଲା । ସାଙ୍ଗମାନେ ଜୁଟିଲେ ପାନଶାଳାକୁ ମୁହାଁଉଥିଲା । ଅପରିଷ୍କାର ଚଟାଣ ଉପରେ ବିନା ଦ୍ୱିଧାରେ ଶୋଇ ପଡୁଥିଲା । ଅଫିସର ସ୍ତରୀୟ ହୋଇ ବ୍ୟକ୍ତି ବିଶେଷ ନିର୍ବିଶେଷରେ ସମସ୍ତଙ୍କ ସାଙ୍ଗେ ମିଶୁଥିଲା । ମଦ ପିଇବାଟାକୁ ଇତର ବା ସମ୍ଭ୍ରାନ୍ତ କାର୍ଯ୍ୟ ଭାବେ ବିବେଚନା କରୁନଥିଲା । ଖୁବ୍ ସ୍ୱଚ୍ଛନ୍ଦ ଭାବେ ସମସ୍ତଙ୍କ ନିକଟରେ ପ୍ରକାଶ କରୁଥିଲା । ବିରୋଧାଭାସ ସତ୍ତ୍ୱେ ଅନେକ ଦିନ ପର୍ଯ୍ୟନ୍ତ ସେଇ ଅନ୍ଧାରୁଆ ଘରେ ରହିଲା । ସତେ ଯେପରି ସେଇ ମୁଖରା ପଡ଼ୋଶୀଙ୍କୁ ସାମ୍ନା କରିବାକୁ ସେ ବଦ୍ଧ ପରିକର ।

ଦିନେ ଶେଖର ନିକଟକୁ ଆସି କହିଲା, “ସେଇ ଘରଟା ଛାଡ଼ି ଦେଇଛି ଏବଂ କାର୍ଯ୍ୟାଳୟ ସନ୍ନିକଟ ଗୋଟେ ଘରେ ଆସ୍ଥାନ ଜମେଇଛି । ଗୃହ ପ୍ରବେଶ ଉପଲକ୍ଷେ ଗୋଟେ ବନ୍ଧୁ ମିଳନର ଆୟୋଜନ କରୁଛି । ତୁ ମୁଖ୍ୟ ଅତିଥି ଭାବେ ଫିତା କାଟି ଉଦ୍‌ଘାଟନ କରିବୁ ।” ତା’ର ଖାପଛଡ଼ା ଓ ଅତିମାତ୍ରାରେ ସତର୍କ କଥାବାର୍ତ୍ତାରୁ ବୁଝା ପଡୁଥିଲା ଘଣ୍ଟେ ଦୁଇଘଣ୍ଟା ଆଗରୁ ପିଇଦେଇଛି । ଶେଖର ପ୍ରତିବାଦ କଲେ ଶୁଣିବନି ।

“ହଁ” କଲା ଶେଖର । ତେବେ କେତେବେଳେ ଯିବାକୁ ହେବ ସେ ଖବର ରଖିବାକୁ ଭୁଲି ଯାଇଥିଲା ।

ଦୁଇଦିନ ପର୍ଯ୍ୟନ୍ତ କାର୍ଯ୍ୟାଳୟରେ ଗୌରର ଦେଖାନାହିଁ । ତା’ କାର୍ଯ୍ୟଧାରା ସହିତ ପରିଚିତ ମଣିଷମାନଙ୍କ ନିକଟରେ ଏହାର କୌଣସି ବୈଚିତ୍ର୍ୟ ନଥିଲା । ଅସନ୍ତୁଷ୍ଟ କର୍ତ୍ତୃପକ୍ଷଙ୍କୁ ତା ଅନୁପସ୍ଥିତି ସମ୍ବନ୍ଧୀୟ ସଫେଇ ଅନାବଶ୍ୟକ ମନେହୁଏ । ତା’ ଟେବୁଲ୍ ଉପରେ ସ୍ତୁପୀକୃତ ଫାଇଲକୁ କେହି ଖୋଜନ୍ତିନି । ଅତି ଆବଶ୍ୟକ ପଡ଼ିଲେ ଆଉ ଜଣକୁ ତା’ କାର୍ଯ୍ୟ କରିବାକୁ କୁହାଯାଏ । ଚତୁର୍ଥ ଶ୍ରେଣୀ କର୍ମଚାରୀ ମାନେ କୁହାକୁହି ହୁଅନ୍ତି, “ସାର୍ କୁଆଡ଼େ ଯାଇଛନ୍ତି । ତା’ ଟୋପାଏ ମିଳୁନି ।”

ଶେଖରକୁ ଆଶ୍ଚର୍ଯ୍ୟ ଲାଗେ । କର୍ତ୍ତବ୍ୟନିଷ୍ଠ କର୍ମଚାରୀମାନଙ୍କ ବିରୁଦ୍ଧରେ ଅଭିଯୋଗ; ପିଅନ ଚପରାଶୀଙ୍କ ନାସିକା କୁଞ୍ଚନ, ବ୍ୟଙ୍ଗ ଟିପ୍‌ପଣୀ । ଅଥଚ ଗୌର ! ଲୋକଟାର ସମ୍ମୋହନ ଶକ୍ତି ନିଶ୍ଚୟ ଅଛି । ତା’ଛଡ଼ା ଶେଖର ପ୍ରତି ଦରଦ । କାର୍ଯ୍ୟାଳୟରେ ଗଣ୍ଡଗୋଳ ସୃଷ୍ଟିକାରୀମାନଙ୍କୁ ସତର୍କ କରିଦେଇଛି, “ଶେଖର ସଙ୍ଗେ

କେହି ଲାଗିବନି । ସେ ମଦ ପିଉନି । ସନ୍ନ୍ୟାସୀଟେ । ନଟଖଟ ପ୍ରକୃତି ନାହିଁ । ତାକତ ଅଛି ତ ମୋ ସାଙ୍ଗେ ଲାଗ ।"

ତୃତୀୟ ଦିନ ମଧ୍ୟାହ୍ନ ଭୋଜନ ପରେ ଗୌର ଆବିର୍ଭାବ ହେଲା ଶେଖର ସମ୍ମୁଖରେ । କୌଣସି ଉପକ୍ରମଣିକା ନଦେଇ ସିଧା ଆରମ୍ଭ କଲା, "ତୋତେ କହିଥିଲି ଗୃହ ଉଦ୍‌ଘାଟନ ହେବ । ଘରଟାକୁ ସଜାଡ଼ିବାକୁ ତ ପଡ଼ିବ । କିଛି ସାମଗ୍ରୀ ଯୋଗାଡ଼ରେ ବ୍ୟସ୍ତ ଥିଲି । ଆଜି ସନ୍ଧ୍ୟାବେଳଟା ମୋ ପାଇଁ ଖାଲି ରଖିଥିବୁ । ମୁଁ ସନ୍ଧ୍ୟାବେଳେ ଯାଇ ତୋ ବସାରୁ ନେଇ ଆସିବି । ଆଉ ହଁ, ମୋତେ କିଏ ଖୋଜୁଥିଲା କି ? ବିଶେଷ କରି ବୁଢ଼ୀ ।" ବୁଢ଼ୀ ଭାବେ ଗୌର ଯାହାକୁ ଇଙ୍ଗିତ କରୁଥିଲା ବାସ୍ତବରେ ସିଏ କାର୍ଯ୍ୟାଳୟ ମୁଖ୍ୟା । ଖୁବ୍ ମାର୍ଜିତ, ସ୍ନେହଶୀଳା ଭଦ୍ରମହିଳା । କାହାରି ବ୍ୟକ୍ତିଗତ ଜୀବନ ପରିଧି ମଧ୍ୟରେ ହସ୍ତକ୍ଷେପ ନକରି ବିନାଦ୍ୱନ୍ଦ୍ୱରେ କାର୍ଯ୍ୟ ସଂପନ୍ନ ତାଙ୍କ କାର୍ଯ୍ୟଧାରାର ବିଶେଷତ୍ୱ । ଅଳ୍ପଦିନ ହେଲା କାର୍ଯ୍ୟଭାର ଗ୍ରହଣ କରି କର୍ମଚାରୀମାନଙ୍କର ଶ୍ରଦ୍ଧାଭାଜନ ହେବା ନିମନ୍ତେ ଚେଷ୍ଟା ତାଙ୍କର ଅବ୍ୟାହତ ।

ଗୌରର ଆକ୍ଷେପ ଭଲ ଲାଗିଲାନି ଶେଖରକୁ । କୌଣସି ଉପଦେଶ ବା ପରାମର୍ଶ ସିଏ ଗ୍ରହଣ କରେନି । ଯିବାବେଳେ ପୁଣି କହିଲା, "ମନେ ରଖିଥିବୁ ସାତଟା ବେଳେ ଯାଇ ପହଞ୍ଚିବି ।"

ସନ୍ଧ୍ୟାବେଳେ ତା' ଆସିବାରେ କୌଣସି ନିଶ୍ଚିତତା ନଥିଲା । ତଥାପି ଶେଖର ଅପେକ୍ଷା କରିଥିଲା । ଯିଏ ଆସିଲା, ସିଏ କାର୍ଯ୍ୟାଳୟର ଅନ୍ୟ ଜଣେ କର୍ମଚାରୀ । "ଗୌର ସାର୍ ମୋତେ ପଠାଇଛନ୍ତି ଆପଣଙ୍କୁ ନେଇ ଯିବା ପାଇଁ," ସ୍ୱରକୁ ଯଥା ସମ୍ଭବ ନିମ୍ନକରି ଜଣାଇଲା କିରାଣୀ ଆଶୁତୋଷ- ପକେଟରୁ ପଇସା ଖର୍ଚ୍ଚ ନକରି ମଦ ପିଇବାରେ ଅଗ୍ରଧାବକ । ସେଇ ହିସାବରେ ଗୌରର ବୋଲହାକ କରିବାରେ କୁଣ୍ଠା ପ୍ରକାଶ କରେନି । ଟିକିଏ ଦୂରରେ ରହି କଥାଭାଷା କରୁଥିଲା । ତା' ବ୍ୟବହାରରେ କିଛି ଅସ୍ୱାଭାବିକତା ନଥିଲା । ତଥାପି ଶେଖରର ମନେହେଲା ସେ କିଛି ଲୁଚାଇବାକୁ ଚେଷ୍ଟା କରୁଛି ।

ଘର ଭିତରେ ଶେଖର । ବାହାରେ ଆଶୁତୋଷ । ଭିତରକୁ ଡାକିବା ସତ୍ତ୍ୱେ ସିଏ ଗଲାନି । ନାଇଁ ସାର୍, "ମୁଁ ଏଇଠି ଅଛି । ଆପଣ ପ୍ରସ୍ତୁତ ହୁଅନ୍ତୁ," କହି କଥାକୁ ଏଡ଼େଇ ଗଲା ।

ଯୋଗ ଦେବା ନ ଦେବାର ଅର୍ନ୍ତଦ୍ୱନ୍ଦ୍ୱ ମଧ୍ୟରେ ଶେଖର ସିଦ୍ଧାନ୍ତ କଲା, ଥରେ ଯାଇ ଦେଖି ଆସିଲେ କୌଣସି ପୁରାଣ ଅଶୁଦ୍ଧ ହେବାର ସମ୍ଭାବନା ନାହିଁ ।

ପହଞ୍ଚିବା ସମୟକୁ ଗୌର ଆଉ ଦୁଇ ଜଣଙ୍କ ସାଙ୍ଗେ ମିଶି ଟେଲିଭିଜନରୁ

ସିନେମା ଦେଖୁଥିଲା । ପିଲା ଦୁଇଜଣ ତଳେ ବସି ପରିବା କାଟୁଥିଲେ । ରୋଷେଇ ଘରଆଡୁ ଷ୍ଟୋଭର ସଁ ସଁ ଶୁଭୁଥିଲା ।

ଚିହ୍ନେଇ ଦେଲା ଗୌର- ମହାନ୍ତବାବୁ । ବିଶିକେଶନ ମହାନ୍ତ । ଘାଟି ଉପରେ ଥିବା ଫାଣ୍ଡିର ସହକାରୀ ସବ୍‌ଇନ୍‌ସ୍ପେକ୍ଟର । କେନ୍ଦୁଝର ଜିଲ୍ଲାର ମୂଳ ବାସିନ୍ଦା । ରାୟଗଡ଼ାରେ ସ୍ଥାୟୀ ଭାବେ ରହିଗଲେଣି । ଆଉ ଜଣକ ଜାନିବାବୁ । ଉଦ୍ୟାନ ବିଭାଗର କ୍ଷେତ୍ରରକ୍ଷକ । ଫୁଲବାଣୀ ଲୋକ । ଗଜପତିର ଜ୍ୱାଇଁ । ସେମାନେ ଶେଖରକୁ ସମ୍ମାନ ଜଣାଇଲେ ।

ତା'ପରେ ଗୌର ଡାକ ପକାଇଲା, "ଆରେ ମୁନା ମାଂସକଷା ଶେଷ ହେଲା ? ଭାତ ହେଲାଣି ନା ନାହିଁ ? ଆଉ ଗଲୁ ହୋଟେଲରୁ ଗୋଟେ ପ୍ଲେଟ ଛେନା ତରକାରି, ବିନ୍ ଭଜା ନେଇ ଆସିବୁ । ସେଇଥିରେ ଶେଖରର ଚଳିଯିବ ।"

ମୁନା ନାମକ ଯେଉଁ ପଚିଶ ଛବିଶ ବର୍ଷର ଯୁବକ ଜଣକ ବାହାରିଲା- ସିଏ ଗୋଟେ ବୀମା କମ୍ପାନୀର ଏଜେଣ୍ଟ । ଶେଖରକୁ ବୀମାଭୁକ୍ତ କରିବା ପାଇଁ ଅନେକ ଚେଷ୍ଟା କରିଛି । ଗୌରର ଜଣେ ସ୍ତାବକ । ଅନ୍ୟ ପିଲା ଦୁଇଜଣ ଘରୋଇ କମ୍ପ୍ୟୁଟର ଅନୁଷ୍ଠାନର ଶିକ୍ଷାର୍ଥୀ ।

ସମସ୍ତେ ଗୌରର ବନ୍ଧୁ ।

କେତେ ଶୀଘ୍ର ତା' ବନ୍ଧୁତ୍ୱର ପରିବେଶ ପରିବ୍ୟାପ୍ତ ହୋଇଗଲା !

ପ୍ରାୟ ଘଣ୍ଟାଏ ପରେ ମୁନା ଗୋଟାଏ ପୁଡ଼ିଆ ଧରି ଫେରିଲା । ସେତେବେଳକୁ ମହାନ୍ତବାବୁ ଆଉ ଜାନିବାବୁ ବ୍ୟସ୍ତ ହୋଇ ପଡ଼ିଲେଣି । ଗୌର ବିରକ୍ତି ପ୍ରକାଶ କଲାଣି ।

କମ୍ପ୍ୟୁଟର ଶିଖୁଥିବା ପିଲାଟି ଉପରେ ଭାର ଦେଇ ଶେଖର ଛଡ଼ା ଉପରକୁ ଉଠିଗଲେ ଅନ୍ୟମାନେ ।

ମୁନା ତଳ ଉପର ହେଉଥାଏ । ଶେଖରକୁ ମୁହଁ ଦେଖାଉଥାଏ । ଅବହେଳିତ, ଅନାକାଂକ୍ଷିତ ପରିବେଶ । ପଳାଇଗଲେ ନିସ୍ତାର ମିଳନ୍ତା । କିନ୍ତୁ ଯିବ କିପରି ? ଗୌର ନିକଟକୁ ଖବର ପଠାଇଲେ ଉତ୍ତର ମିଳୁନି । ଉପରକୁ ଉଠି ତାକୁ ସାମ୍ନା କରିବାକୁ ଲଜ୍ଜ୍ୟାକର ବୋଧ ହେଉଛି ।

ପ୍ରାୟ ରାତି ଏଗାରଟା ସମୟକୁ ମହାନ୍ତବାବୁ ତଳକୁ ଓହ୍ଲାଇଲେ । ଚାଲନ୍ତୁ, ଆପଣଙ୍କୁ ମୁଁ ଛାଡ଼ିଦେଇ ଆସେ । ମୋତେ ଦାୟିତ୍ୱ ଦିଆ ହୋଇଛି ।

ଶେଖର କିଛି କହିଲାନି । ଚୁପ୍‌ଚାପ୍ ମହାନ୍ତବାବୁଙ୍କ ମଟରସାଇକେଲ୍ ପଛରେ ବ୍‌ସିଲା ।

ଏମିତି ଚାଲେ । ଶେଖର ନିମନ୍ତ୍ରିତ ହୁଏ । ମନା କରି ହୁଏନା । କେବେ

ଅର୍ଦ୍ଧଭୁକ୍ତ ତ କେବେ ସ୍ୱାଦିଷ୍ଟ ଭୋଜନର ମାତ୍ରାଧିକ୍ୟ ଯୋଗୁଁ ଅଣାୟତ ଅବସ୍ଥା ।

ଶେଖରର ଡାକରା ମିଳିଲେ ଯେ କୌଣସି ସମୟ ଏବଂ ଅବସ୍ଥାରେ ବାହାରି ଆସେ ଗୌର । ଟ୍ରେନ୍‌ରେ ଉଠାଇ ଦେବା ବା କୌଣସି ଗଣ୍ଡଗୋଳର ସମ୍ମୁଖୀନ ହେବା ସବୁ କାମରେ ସହଯୋଗ ନିମନ୍ତେ ଆନ୍ତରିକତା ।

କାର୍ଯ୍ୟାଳୟ ମଧ୍ୟରେ ଗୋଟିଏ ଗୁଞ୍ଜରଣ ଶୁଣାଗଲା । ଗୌର ନିକଟକୁ ପଚିଶ ତିରିଶ ବର୍ଷ ବୟସର ସ୍ତ୍ରୀ ଲୋକଟିଏ ଆସୁଛି । ସାଙ୍ଗରେ ଛୋଟ ପୁଅଟିଏ । ଚାରି ପାଞ୍ଚଦିନ ରହୁଛି । କେହି କେହି କହିଲେ, ଗୌର ବାବୁଙ୍କ ସ୍ତ୍ରୀ ଏବଂ ପୁଅ । ପିଲାଟି ଗୌରକୁ ବାପା ଡାକୁଥିବାର ସେମାନେ ନିଜେ ଦେଖିଛନ୍ତି ଏବଂ ଶୁଣିଛନ୍ତି ।

ବିଶ୍ୱାସ କରିପାରେନା ଶେଖର । ତା' ଜାଣତରେ ଗୌର ସ୍ତ୍ରୀ ତା' ଫାର୍ମ୍‌ର ଦେଖାଶୁଣା କରୁଛି । ପୁଅ ଦ୍ୱାଦଶ ଶ୍ରେଣୀରେ ଗୋଟାଏ ଆବାସିକ ବିଦ୍ୟାଳୟରେ ପଢୁଛି ।

ଗୌରକୁ ପଚାରିବା ନିମନ୍ତେ ସଙ୍କୋଚ ଲାଗୁଥିବା ଶେଖରକୁ । ତେବେ ଦିନେ ସିଏ ସାହସ ସଞ୍ଚୟ କଲା । ଖୁସିବାସିଆ ମୁହୂର୍ତ୍ତରେ ପଚାରିଲା, "ମୁଁ ଶୁଣୁଛି...।"

ସନ୍ଦେହ ମୁଦ୍ରାରେ ଉପରକୁ ଚାହିଁଲା ଗୌର । "କ'ଣ ?"....

"ତୋ ପାଖକୁ ଗୋଟେ ଝିଅ ଆସୁଛି ଏବଂ ତୁ ତା' ପିଲାର ବାପ ।"

ନିଷିଦ୍ଧ ଇଲାକାରେ ଆଘାତ ଲାଗିଲା ପରି ସଙ୍କୁଚିତ ହୋଇ ପଡ଼ିଲା ସିଏ । ତେବେ ସାହସ ସଞ୍ଚୟ ନିମନ୍ତେ ବେଶି ସମୟ ଲାଗିଲାନି । "ନା ବେ । ମୁଁ ଆଗରୁ ଯେଉଁଠି ଥିଲି, ସେଠାକାର ସମନ୍ୱିତ ଶିଶୁ କଲ୍ୟାଣ ଯୋଜନାର ପରିଦର୍ଶିକା । ଏଠି କ'ଣ କାମ ପଡ଼େ । ତେଣୁ ମୋ ପାଖରେ ଆସି ରହନ୍ତି ।"

-ତା' କଥାର ସତ୍ୟତା ସମ୍ବନ୍ଧରେ ସନ୍ଦିହାନ ହୋଇ ପଡୁଥିଲା ଶେଖର । କିନ୍ତୁ ଆଉ ଖୋଳତାଡ କରିବା ସମ୍ବନ୍ଧରେ ଇଚ୍ଛା ନଥିଲା । ଯାହା କରୁଛି କରୁ । ପରିସ୍ଥିତି ଅସମ୍ଭାଳ ହେଲେ ସେ ହିଁ କେବଳ ପରିଣାମ ଭୋଗ କରିବ ।

ସେ ସ୍ତ୍ରୀ ଲୋକଟି ବାରମ୍ବାର ଆସୁଥିଲା । କେବେ ପୁଅଟିକୁ ସାଙ୍ଗରେ ଧରି ତ କେବେ ଏକା ଏକା । ଗୌର ବେପରୁଆ ଭାବେ ବୁଲୁଥିଲା ସେଇ ସ୍ତ୍ରୀ ଲୋକଟିକୁ ସାଙ୍ଗରେ ଧରି । ଥରେ ଦୁଇଥର ଶେଖରର ସାମନା ସାମ୍ନି ହୋଇଥିଲା । କିଛି କଥାବାର୍ତ୍ତା ହୋଇ ନଥିଲା । ଗୌରକୁ ଅପଦସ୍ତ ଅବସ୍ଥାରେ ପକାଇବାର ଇଚ୍ଛା ନଥିଲା । ତେବେ ତାର ଧାରଣା ଦୃଢ଼ୀଭୂତ ହୋଇଥିଲା, ଗୌର ସହିତ ସ୍ତ୍ରୀ ଲୋକଟିର ନିଶ୍ଚୟ ସମ୍ବନ୍ଧ ଅଛି । ବିବାହ କରିଛନ୍ତି କି ନା ସ୍ପଷ୍ଟ ବୁଝା ପଡୁନି । ତେବେ ଏକତ୍ର ସହାବସ୍ଥାନ ନିମନ୍ତେ ନିଷ୍ପତ୍ତି ନେଇଛନ୍ତି ।

କଥାଟା ବେଶିଦିନ ଲୁଚିଲାନି । ସଦା ପ୍ରଫୁଲ୍ଲ ଏବଂ ଚିନ୍ତାଶୂନ୍ୟ ଗୌର । ମଝିରେ ମଝିରେ ବିମର୍ଷ ହୋଇ ପଡ଼ିଲେ ଶେଖର ନିକଟକୁ ଆସୁଥିଲା । ସେଦିନ ଆଉ ଘରକୁ ଫେରୁନଥିଲା ବା ମଦ ଖାଉନଥିଲା । ବୁଝି ପାରେନା ଶେଖର ତା ବିମର୍ଷତାର କାରଣ । ସେ ବି କିଛି କହେନା । ଅଫିସ୍ ଯାଏନା । ଏଣେ ତେଣେ ବୁଲେ ବା ଶୋଇରହେ । ଦିନେ କହିଲା- "ବୁଝିଲୁ ଶେଖର, ମୋ ସ୍ତ୍ରୀର କେବଳ ଟଙ୍କା ଦର୍କାର । ନା ଅଛି ଯୌନ ଆବେଦନ ନା ଆକାଙ୍କ୍ଷା । ଆକର୍ଷଣ ତ କେବେଠୁ ହରାଇ ବସିଲାଣି । ଯାହା ରୋଜଗାର କରୁଛ ସବୁ ନେଇ ତା' ନିକଟରେ ଓଜାଡ଼ି ଦିଅ । ପୁଅ ଶ୍ୱାସ ଯୋଗୁଁ ବହୁତ କଷ୍ଟପାଏ । ନିୟମିତ ଔଷଧ ବ୍ୟବହାର କରେ । ସିଏ କ'ଣ ପାଠ ପଢ଼ିବ ? ତେବେ କ୍ଲାସକୁ ଯାଉଛି । ପଢ଼ି ଉଠି ଚାଲିଛି । ଫାର୍ମ୍‌ରେ କେବଳ ଖର୍ଚ୍ଚ ଚାଲିଛି, ତା' ପାଇଁ ଋଣ ହେଲାଣି । ଆଉ ଏ ଝିଅଟା ଆସି ପ୍ରତି ପନ୍ଦର ଦିନରେ ତା' ଖର୍ଚ୍ଚ ପାଇଁ ଟଙ୍କା ଦାବି କରୁଛି ।"

"କହୁଥିଲୁ ପରା ଶିଶୁ କଲ୍ୟାଣ ଯୋଜନାରେ ପରିଦର୍ଶିକା ହୋଇଛି ।"

"ହଁ । ତେବେ ତା' ପାଇଁ ତା' ପୁଅ ପାଇଁ ଟଙ୍କା ସଞ୍ଚୟ କରି ପକାଇବ ଯଥା ସମ୍ଭବ ।"

"ଆଉ ତୋ ସ୍ତ୍ରୀ ଏକଥା ଜାଣିଛି ?"

"ହଁ, ମାସ ଶେଷର ଦରମା, ଅନ୍ୟ ରୋଜଗାର ସବୁ ନେଇ ତା ନିକଟରେ ଢାଳିଦିଅ । ସବୁ ଟଙ୍କା ନେଇ ଖର୍ଚ୍ଚ କରିବାର ଯୋଜନା ପ୍ରସ୍ତୁତ କରିବ । ଅନ୍ୟ କଥା ଭାବିବାକୁ ତା'ର ଅବସର କାହିଁ ?"

-"ନାଇଁ ମୁଁ ତୋର ଏଇ ଦ୍ୱିତୀୟ ସଂସ୍ଥା ସମ୍ବନ୍ଧରେ ପଚାରୁଛି ।"

"ହଁ", ଏକ କୁଣ୍ଠିତ ସ୍ୱରରେ କହିଲା ଗୌର । ଏହାପରେ ଗୌରର ଲୁଚକାଳି ଖେଳିବାର କୌଣସି ଆବଶ୍ୟକତା ନଥିଲା । ଖୁବ୍ ସ୍ୱଚ୍ଛନ୍ଦ ଭାବରେ ସେଇ ଝିଅକୁ ନେଇ ସହରରେ ବୁଲୁଥିଲା । ବଜାର କରୁଥିଲା । ଶେଖରକୁ ଥରେ ଦୁଇଥର ନିମନ୍ତ୍ରଣ କରିଥିଲା ଖାଇବା ପାଇଁ । ନିମନ୍ତ୍ରଣ କଥା ଘରେ କହିବା ପାଇଁ ଭୁଲି ଯାଇଥାଏ । ତେଣୁ ଯେତେଥର ନିମନ୍ତ୍ରିତ ହୁଏ ସବୁଥର ଅର୍ଦ୍ଧଭୁକ୍ତ ଅବସ୍ଥାରେ ଫେରିବାକୁ ପଡ଼େ ଶେଖରକୁ । ଆଉ ଥରେ ହେଲେ ବି ନ ଯିବାକୁ ପ୍ରତିଜ୍ଞା କରେ । କିନ୍ତୁ ଯାଏ ।

ଗୌର ସ୍ତ୍ରୀକୁ କେବେ ଦେଖି ନଥିଲା ଶେଖର । ସେ ଖୁବ୍ ସୁନ୍ଦରୀ ବୋଲି ବନ୍ଧୁମାନେ କହୁଥିଲେ । ଫୋନ୍‌ରେ ଥରେ ଦୁଇଥର ଆଳାପ ହୋଇଛି । ସେତେବେଳେ ଗୌରର ଏଇ ଦ୍ୱିତୀୟ ସଂସ୍ଥା ସମ୍ବନ୍ଧରେ ସେ ଅବଗତ ଅଛନ୍ତି କି ନା ପଚାରିବାକୁ ଇଚ୍ଛା ହୁଏ । କିନ୍ତୁ ଶେଖର କଥାରେ କି ବିଶ୍ୱାସ । ଭଦ୍ରମହିଳା ଯଦି କୌଣସି ସୂଚନା ପାଇ

ନଥାନ୍ତି ତେବେ ବିସ୍ଫୋରଣ ଘଟିବ । ଗୌରର ପାରିବାରିକ ଜୀବନରେ ଝଡ଼ ଉଠିବ । ତା' ଅପେକ୍ଷା ପ୍ରକୃତ ଘଟଣା ଅସ୍ପଷ୍ଟ ଥାଉ ।

ଆଉ ଦିନେ ଗୋଟେ ବନ୍ଧୁମିଳନର ଆୟୋଜନ କରି ଶେଖରକୁ ନିମନ୍ତ୍ରଣ କଲା ଗୌର । ସବୁଥର ପରି ଅର୍ଦ୍ଧଭୁକ୍ତ ବା ଅଭୁକ୍ତ ଅବସ୍ଥାରେ ଫେରିବାକୁ ହେବ, ଏଥିରେ ସନ୍ଦେହ ନଥିଲା । ତଥାପି ଗଲା ଶେଖର । ଉଦ୍ଦେଶ୍ୟ, ମାତ୍ରାଧିକ୍ୟ ପିଇବାରୁ ନିବୃତ୍ତ କରିବ । ପହଞ୍ଚିବାବେଳକୁ ଗୌର ପ୍ରଳାପ କରୁଛି । ଅର୍ଦ୍ଧ ନିମିଳିତ ନୟନରେ ସମସ୍ତଙ୍କ ଚାହୁଁଛି ।

ଚାଖିବା ଭଳି ଟିକିଏ ଟିକିଏ ସୋଷାଡୁଛି ଗ୍ଲାସରୁ । ଅନ୍ୟମାନଙ୍କୁ ମାଇଚିଆ କହି ଆକ୍ଷେପ କରୁଛି ।

ଶେଖର ଆସିବା ଖବର ପାଇ ଅଳ୍ପ ଚକ୍ଷୁ ଖୋଲିଲା । ଖନେଇ ଖନେଇ କହିଲା, "ତୁ ଖାଇଦେଇ ଶୀଘ୍ର ଚାଲିଯା । ସନ୍ନ୍ୟାସୀମାନେ ଏ ଆସରରେ ଯୋଗ ଦିଅନ୍ତିନି । ତୁ କାଲି ଆସିବୁ ।"

କିଛି କହିଲାନି ଶେଖର । କହିଥିଲେ ମଧ୍ୟ କେହି ଶୁଣି ନଥାନ୍ତେ । ତୁରନ୍ତ ସେ ପଦାକୁ ଆସିଲା । ଆକାଶଟା ମେଘଢଙ୍କା ହୋଇଥିବାରୁ ଅନ୍ଧାର ଦିଶୁଥିଲା ପୃଥିବୀ; ଅନ୍ଧାର ଦିଶୁଥିଲା ଗୌରର ଭବିଷ୍ୟତ । ସେଥିରୁ ଉଦ୍ଧାର ପାଇବା ପାଇଁ କୌଣସି ବାଟ ଦିଶୁନଥିଲା । ହୋଟେଲରୁ ଖାଇ ଘରକୁ ଫେରିବା ବେଳକୁ ଅବସନ୍ନ ଲାଗୁଥିଲା ମାନସିକ ସ୍ତରରେ ।

ପରଦିନ କାର୍ଯ୍ୟାଳୟ ଯିବା ରାସ୍ତାରେ ଗୌରକୁ ସାଙ୍ଗରେ ନେଇଯିବା ପାଇଁ ଇଚ୍ଛା ହେଲା ଶେଖରର । ଗୁଡ଼ାଏ ଅନୁପସ୍ଥିତି ଯୋଗୁଁ କର୍ତ୍ତୃପକ୍ଷ ବିରକ୍ତି ପ୍ରକାଶ କଲେଣି । ହୁଏତ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ପାଇଁ ଚିନ୍ତା କରୁଥାଇ ପାରନ୍ତି । ସିଏ ଅନ୍ତତଃ ଏହା ଜାଣୁ ।

ଦରଜା ଖୋଲି ଘର ଭିତରକୁ ସ୍ୱାଗତ କରୁଥିବା ମଣିଷଟି ସତେ ଯେପରି ଅନ୍ୟଜଣେ ଗୌର । ଗତ ସନ୍ଧ୍ୟାର ପ୍ରଳୟାଭିମୁଖୀ, ପଳାୟନପନ୍ଥୀ ମଣିଷଟି ନୂଆ ଜୀବନ ପାଇଛି । ସ୍ୱାଗତ କରୁଛି ସ୍ୱର୍ଣ୍ଣ ସକାଳକୁ, ସଖାକୁ... ସହୋଦରକୁ । ଉଚ୍ଚାରଣ କରୁଛି ପବିତ୍ର ମନ୍ତ୍ର । ଅଭିଯୋଗ ବାଢୁଛି ବନ୍ଧୁର ଖାତିରରେ ।

"କାଲି ଚାଲିଗଲୁ ଯେ କାହାକୁ କିଛି ନ କହି ତୋତେ ବହୁତ ଖୋଜିଲି । ହଉ କାଲି ନ ହେଲା ନାଇଁ ଆଜି ମୋ' ଘରେ ଖାଇବୁ । ବିଦ୍ୟା ଆସିଛି । ସିଏ ରୋଷେଇ କରିବ ।"

ବିଦ୍ୟା, ସେଇ ସ୍ତ୍ରୀ ଲୋକଟି ଯାହାକୁ ଗୌର ବିଧିବଦ୍ଧ ଭାବେ ବିବାହ

କରିନଥିଲା । ତେବେ ସେମାନେ ସ୍ୱାମୀ ସ୍ତ୍ରୀ ଭାବେ ରହୁଥିଲେ । ତା' ସାମ୍ନାରେ କାର୍ଯ୍ୟାଳୟ ଅନୁପସ୍ଥିତି ସମ୍ବନ୍ଧରେ ଆଲୋଚନା କରିବା ଉଚିତ୍ ମନେ କଲାନି ଶେଖର ।

କାର୍ଯ୍ୟାଳୟରେ ସେ ଦିନ ମଧ୍ୟ ଅନୁପସ୍ଥିତ ରହିଲା ଗୌର । ସନ୍ଧ୍ୟା ସମୟକୁ ତା' ନିକଟରୁ ଜରୁରୀ ଡାକରା ଆସିଲା । ଶୀଘ୍ର ପହଞ୍ଚିବା ପାଇଁ ତାଗିଦା, ଅଗତ୍ୟା ଯିବାକୁ ହେଲା ଶେଖରକୁ ।

ପହଞ୍ଚିବା ସମୟକୁ ତୁମୁଳ ଅବସ୍ଥା- ବିଦ୍ୟାସହ ଆଉ ଜଣେ ସ୍ତ୍ରୀ ଲୋକ । ନୂତନ ଆଗନ୍ତୁକା ଚିତ୍କାର କରୁଥିଲେ । ଅପରାଧୀ ଭଳି ତାଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲା ଗୌର । ଶେଖର ପହଞ୍ଚିବା ମାତ୍ରେ ଚିହ୍ନାଇ ଦେଲା, "ଇଏ ମାନସୀ, ମୋ' ସ୍ତ୍ରୀ, ଯାହା ସାଙ୍ଗରେ ତୁ ଫୋନ୍‌ରେ କଥାଭାଷା ହେଉ । ଏଇ ଘଣ୍ଟାଏ ହେଲା ଆସି ପହଞ୍ଚିଛି । ଆଉ ଦେଖ, ତୋର ଏଇ ଆତ୍ମୀୟାକୁ ଦେଖି ସେ କିପରି ସନ୍ଦେହୀ ହୋଇଉଠୁଛି ।" ବିଦ୍ୟା ଆଡକୁ ଇଙ୍ଗିତ କରି ସେ କହୁଥିଲା । "ତାକୁ ବାବା ସାଙ୍ଗେ ସାଙ୍ଗେ ନେଇଗଲୁ । ମାନସୀର ଆତ୍ମପ୍ରତ୍ୟୟ ଆସୁ ସେ ତୋର ଆତ୍ମୀୟା ।"

ମାନସୀ ଗୌରର ସ୍ତ୍ରୀ । ଯାହାକୁ ଶେଖର ପ୍ରଥମ କରି ଦେଖୁଥିଲା । ତାର ଉତ୍‌କ୍ଷିପ୍ତ ଏବଂ ଉତ୍ତେଜିତ ଅବସ୍ଥା ଦେଖି ଗୌର ସଙ୍କୁଚିତ ହୋଇ ଯାଇଥିଲା । ଶେଖର ମଧ୍ୟ ସ୍ତମ୍ଭୀଭୂତ । ତା' ସାଙ୍ଗରେ ସମ୍ଭ୍ରମ ଦୃଷ୍ଟିରୁ କିଛି ଆଳାପ କରିବା ସମ୍ଭବ ନଥିଲା । ତେଣୁ ପରିସ୍ଥିତିକୁ ସ୍ୱାଭାବିକ କରିବା ପାଇଁ ତା' ପାଟିରୁ ବାହାରି ପଡ଼ିଲା," ହଉ ବିଦ୍ୟା ଆସ । ଗୌରର ସ୍ତ୍ରୀ ଅଛି ଆଜି । ସେମାନେ ଖୁସି ଗପ କରନ୍ତୁ । ଆମେ ପରେ ଆସିବା ।"

ବିଦ୍ୟା କିଛି କହିଲାନି । ଯେଉଁ ଛୋଟ ବାକ୍ସଟି ଧରି ଆସିଥିଲା ତାକୁ ଧରି ବାହାରି ଆସିଲା । ସନ୍ଧ୍ୟା ହୋଇ ଆସୁଥିଲା । ବାଟରେ ସେମାନେ କିଛି କଥାବାର୍ତ୍ତା କରିନଥିଲେ । ଫେରିଯିବା ପାଇଁ ବସ୍ ବା ଟ୍ରେନ୍‌ର ସମୟ କେବେ ଜାଣିବାକୁ ଚାହିଁଥିଲା ଶେଖର । ବସ୍ ତ ନଥିଲା । ତେବେ ମଧ୍ୟରାତ୍ରି ବେଳକୁ ଗୋଟେ ଦ୍ରୁତଗାମୀ ଟ୍ରେନ୍ ଆସିବା କଥା । ସେଥିରେ ବିଦ୍ୟା ତା ଗନ୍ତବ୍ୟସ୍ଥଳକୁ ଯାଇ ପାରିବ । ଅନିଚ୍ଛା ସତ୍ତ୍ୱେ କର୍ତ୍ତବ୍ୟ ଦୃଷ୍ଟିରୁ ବିଦ୍ୟାକୁ ଧରି ଷ୍ଟେସନ ଆଡକୁ ଚାଲିଲା ଶେଖର ।



# ଚରିତ୍ରହୀନ

ନାରାୟଣ ରାଓଙ୍କ ପଡ଼ୋଶୀ ଭାବେ ରହିବା ପରଦିନ ହିଁ ତାଙ୍କ ସହ ସାକ୍ଷାତ ହୋଇଥିଲା ସୁଦୀପ୍ତର । ପଣସ, ପଟାସ, ଶାଳ ଜଙ୍ଗଲ ମଧ୍ୟରେ ଥିବା କେତୋଟି କ୍ୱାଟର ମଧ୍ୟରୁ ଗୋଟିକୁ ଅଧିକାର କରିବା ପାଇଁ ନିଷ୍ପତ୍ତି ନେଇ ଦୁଇଟି ଛୋଟ ପୁଅ ଓ ସ୍ତ୍ରୀ ସହିତ ଯେଉଁଦିନ ସୁଦୀପ୍ତ ପହଞ୍ଚିଲା, ଜାଗାଟା ନିର୍ଜନ ବୋଲି ସ୍ତ୍ରୀର ମନ୍ତବ୍ୟ ଯୋଗୁଁ ସାମାନ୍ୟ କ୍ଷୁବ୍ଧ ହେଲେ ହେଁ ତା' କଥାରେ କୌଣସି ଅତ୍ୟୁକ୍ତି ନଥିଲା । ବ୍ଲକ୍ ଅଫିସ୍ ନିକଟସ୍ଥ ସାନବଡ଼ ପନ୍ଦରଟି କ୍ୱାଟର ପରସ୍ପର ନିକଟରୁ ସ୍ୱାତନ୍ତ୍ର୍ୟ ରକ୍ଷାକରି ଛିଡ଼ା ହୋଇଥିଲେ । ସୁଦୀପ୍ତର ଗୋଟିଏ ପଟେ ବ୍ଲକର ମୁଖ୍ୟ କିରାଣୀ ଏଲ୍. ନରସିଂହମ୍ କ୍ଷୀଣ ଦୃଷ୍ଟି ସମ୍ପନ୍ନ ବୃଦ୍ଧା ମାଆକୁ ନେଇ ରହିଥିବା ବେଳେ ଅନ୍ୟପଟେ ବୟସର ଅତ୍ୟାଚାରକୁ ପ୍ରତିହତ କରି ଚକ୍‌ଚକ୍ ଦିଶୁଥିବା ନାରାୟଣ ରାଓ ।

ପାହାନ୍ତି ପାହାନ୍ତି ବସ୍‌ରୁ ଓହ୍ଲାଇ ଦୁଇଟି ରିକ୍ସାରେ କ୍ୱାଟର ନିକଟରେ ପହଞ୍ଚିବା ସମୟକୁ ଆକାଶ ଫର୍ଚ୍ଚା ହୋଇଯାଇଥିଲା । ଶୀତୁଆ ପବନକୁ ପ୍ରତିହତ କରିବା ପାଇଁ କ୍ରିଷ୍ଣା ସାନ ପୁଅକୁ ଶାଢ଼ୀ ପଣତରେ ବଡ଼ ପୁଅକୁ ତଉଲିଆରେ ଢାଙ୍କିଦେବା ପାଇଁ ଯତ୍ନ କରୁଥିଲା । ଉଞ୍ଚା ଉଞ୍ଚା ପଟାସ୍ ଗଛରେ ବସା ବାନ୍ଧିଥିବା ଅଜଣା ପକ୍ଷୀ ଦୁଇଟାଙ୍କ ନିଦ ଭାଙ୍ଗି ଯାଇଥିଲା । ସେମାନଙ୍କ ଡେଣାର ଫଡ଼ ଫଡ଼ ଶବ୍ଦ ପଣସ ଗଛର ଗହଳିଆ ପତ୍ରରେ ପ୍ରତିଧ୍ୱନିତ ହେଉଥିଲା । ନିର୍ଜନ ମନେ ହେଉଥିବା କଲୋନୀ ନିକଟରେ ଜଣେ ମଧ୍ୟ ମଣିଷ ଦେଖା ଯାଉନଥିଲେ । ତେବେ ଗୋଟେ ମାଲଭର୍ତ୍ତି ମିନିଟ୍ରକ୍ ଅତିକ୍ରମ କରିଯିବା ପରେ ସୁଦୀପ୍ତ ଏକା ଏକା ରିକ୍ସାରୁ ଜିନିଷ ପତ୍ର ଓହ୍ଲାଇଲା । ଉଠାଣିରେ ଟାଣି ଟାଣି ଆଣିଥିବା ରିକ୍ସାବାଲା ଦୁଇଜଣ ଦୟା ବା କର୍ତ୍ତବ୍ୟବୋଧ ଯୋଗୁଁ ସାହାଯ୍ୟ କରିଥିଲେ ଯଥାସମ୍ଭବ ।

ପକେଟ୍‌ରୁ ଚାବି କାଢ଼ି ଦରଜା ନିକଟକୁ ଗଲା ସୁଦୀପ୍ତ । ତାଲା ନିକଟକୁ ହାତ ବଢ଼ାଇବାକୁ ସେ ଜାଣିଜାଣି ବିଳମ୍ବ କଲା । ସେ ଚାହୁଁଥିଲା ଆକାଶ, ବସୁଧା ଆଲୋକିତ ହେଉ ଏବଂ ସେଇ ଆଲୋକର ପ୍ରତିଫଳନ ଗୃହ ଅଭ୍ୟନ୍ତରରେ ପ୍ରବେଶ କରୁ । ଆଗରୁ ଥରେ ମାତ୍ର ସେ ଘରଟି ଦେଖିବାକୁ ଆସିଥିଲା । ଝରକା ଭାଙ୍ଗି ଯାଇଥିବା ଯୋଗୁଁ

ପଟାଦେଇ ଦାଣ୍ଡଘରଟିକୁ ନିବୁଜ କରି ଦିଆଯାଇଥିଲା । ତେଣୁ ଗୃହ ଅଭ୍ୟନ୍ତରରେ ଅନ୍ଧକାର ଆଉ ଅସରପାଙ୍କ ରାଜତ୍ୱ ଚାଲିଥିବ । କ୍ରିଷ୍ଣା ଅସରପାକୁ ଡରେ । କିଛି ସମୟ ଅପେକ୍ଷା କରାଯାଇପାରେ ବରଂ ।

ରାସ୍ତା ଉପରେ ମଣିଷମାନଙ୍କର ଚଳପ୍ରଚଳ ଆରମ୍ଭ ହେବାପରେ ଚାବି ଖୋଲିଲା ସୁଦୀପ୍ତ । ଧୂଳି ଜମିଯାଇଥିବା ଚଟାଣରେ ଦୌଡ଼ି ଖେଳୁଥିବା ଚୁଟିଆ ମୂଷାମାନେ ଆକସ୍ମିକ ଆଗନ୍ତୁକମାନଙ୍କୁ ଟିକିଏ ଚାହିଁଦେଇ ଚଢ଼ିଗଲେ ଓହଳିଥିବା ବିଦ୍ୟୁତ୍ ତାର ଦେଇ । ନିର୍ଭୟ ଆଶ୍ରୟସ୍ଥଳ ଖପରଲି ଛାତ । ସୁଦୀପ୍ତ ଆଶ୍ଚର୍ଯ୍ୟ ହେଲାନାହିଁ । ଘର ତ ଆଶ୍ରୟସ୍ଥଳୀ । ମଣିଷ, ମାଙ୍କଡ଼, ମୂଷା, ଯାହାପାଇଁ ବି ହେଉ । ଭିତର କୋଠରୀ ଦୁଇଟି ଆଉଜା ହୋଇଥିଲା । ଖୋଲା ବାରଣ୍ଡା, ଅଗଣା ସାରା ଶୁଖିଲା ଆମ୍ବପତ୍ର ।

ବହୁଦିନରୁ ଅଳଙ୍କାର ଭାବେ ଝୁଲୁଥିବା ଅଳନ୍ଧୁ, ବୁଢ଼ିଆଣି ଜାଲ, ଉଲୁରି ପଡ଼ିଥିବା ଚୂନକାନ୍ଥଆଡୁ ଦୃଷ୍ଟି ପହଁରାଇ ଆଣି ଦୀର୍ଘଶ୍ୱାସ ଛାଡ଼ିଲା କ୍ରିଷ୍ଣା । ସୁଦୀପ୍ତ ଉପରେ ବିରକ୍ତି ପ୍ରକାଶ କରିବାର ଇଚ୍ଛାଟିକୁ ନିୟନ୍ତ୍ରିତ କରି ଚଟାଣ ଝାଡ଼ିବାକୁ ଆରମ୍ଭ କଲା । ବସ୍‌ଯାତ୍ରା ଜନିତ କ୍ଲାନ୍ତି ଓ ଅନିଦ୍ରା ସତ୍ତ୍ୱେ ରୋଷେଇ କରିବାକୁ ପଡ଼ିବ । ବାହାରେ ଖାଇବା ସୁଦୀପ୍ତ ମତରେ ଅନାବଶ୍ୟକ, ଅପବ୍ୟୟ । କାମ କରିବାରେ ଅନଭ୍ୟସ୍ତ କ୍ରିଷ୍ଣା ଅଳ୍ପ ପରିଶ୍ରମରେ ଧଇଁସଇଁ ହୋଇଯାଏ ଏବଂ ଚାପା କ୍ରୋଧ ପ୍ରକାଶ କରେ । ସୁଦୀପ୍ତ କରିବାକୁ ଆସିଲେ ବାରଣ କରେ । ପୁଅ ପିଲା ଏବଂ ଝିଅ ପିଲାଙ୍କ କାମ ମଧ୍ୟରେ ଲକ୍ଷ୍ମଣ ରେଖା ଟାଣି ଦେଇଛି ସିଏ । କେବେ ଅତିକ୍ରମ କଲେ ପାଟିକରେ । ସୁଦୀପ୍ତ ବୁଝାଇବାକୁ ଚେଷ୍ଟାକରେ । ସମସ୍ତ ଦୋଷ ନିଜ ଉପରକୁ ନେଇଯାଏ । ତା'ପରେ ପରିବେଶ ଶାନ୍ତ ହୁଏ । ପରିସ୍ଥିତି ବଦଳେ । ଆଜିର ପରିସ୍ଥିତି ଅଲଗା । କ୍ରିଷ୍ଣା ପୁଅମାନଙ୍କୁ ଶୁଆଉଥିଲା, ସୁଦୀପ୍ତ ଝାଡୁ ଧରି ଅଗଣାରେ ଜମା ହୋଇଥିବା ଆମ୍ବପତ୍ର ବାରିଆଡ଼କୁ ନେଇ ଜମା କରୁଥିଲା ।

ପାଦ ଶବ୍ଦ ଶୁଣାଗଲା ବାରଣ୍ଡାରେ । ଘର ଭିତରୁ ଉଠି ଆସିଲା କ୍ରିଷ୍ଣା ସାନ ପୁଅର କାନ୍ଦ ସତ୍ତ୍ୱେ । ଛିଡ଼ା ହେଲା ସୁଦୀପ୍ତ । ବୁଢ଼ୀ ଜଣେ, ଦୃଷ୍ଟିଶକ୍ତି କ୍ଷୀଣ । ଆସ୍ତେ ଆସ୍ତେ ପାଦ ପକାଉଥିଲେ । ସମସ୍ତଙ୍କୁ ଶୁଣାଇଲା ଭଳି କହିଲେ- "ତୁମେମାନେ ଆଜି ଆସିଲ କି ଝିଅ ?" କ୍ରିଷ୍ଣାର ଇଚ୍ଛା ହେଉଥିଲା କହିବାକୁ ଆମେ ନଆସିଥିଲେ ଆପଣ ଘରେ ପ୍ରବେଶ କରିଥାନ୍ତେ କିପରି ? ସିଏ ସୁଦୀପ୍ତ ଆଡ଼କୁ ଚାହିଁଲା ।

ଇଏ ନରସିଂହମ୍‌ଙ୍କର ମାଆ । ଆମ ପଡ଼ୋଶୀ ।

ଘର ଝଡ଼ାଝଡ଼ି କରୁଛ ତ ? ତା'ପରେ ରୋଷେଇ କରିବ । ହଉ ମୁଁ ପଛେ ଆସିବି । ବୁଢ଼ୀ ଫେରି ଆସିଲା ।

ଘର ଓ ଅଗଣା ଝାଡୁ ସରିବା ପରେ ଆଗରୁ ଠିକ୍ କରିଥିବା ଓ କଲୋନୀରେ ଛୋଟ ଛୋଟ କାମ କରୁଥିବା ଗୋଟେ ମଧ୍ୟବୟସ୍କା ସ୍ତ୍ରୀ ଲୋକକୁ ଡାକି ଆଣିଲା ସୁଦୀପ୍ତ । ଉଦ୍ଦେଶ୍ୟ, ନଳକୂଅ ବା କପି କଳ ଲାଗିଥିବା କୂଅରୁ ଘର ପାଇଁ ପାଣି ଆଣିବ । ସ୍ତ୍ରୀ ଲୋକଟି ପାଣି ଆଣି ସାରିବା ପରେ ଚାଲି ନଯାଇ ଅପେକ୍ଷା କଲା ତା ପ୍ରାପ୍ୟ ପାଇଁ । କ୍ରିଷ୍ଣା ଇତିମଧ୍ୟରେ ଗାଧୁଆ ଶେଷ କରିସାରିଥିଲା । ପୂର୍ଣ୍ଣ ସମୟ ରଖିବାପାଇଁ ପିଲାଟିଏ ଆବଶ୍ୟକ । ଛୋଟପିଲା ହେଲେ ପାଣି ଆଣି ପାରିବନି । ଏତେବଡ଼ ସ୍ତ୍ରୀଲୋକକୁ ଖାଇବା ପିଇବା ଓ ମାସିକ ଦରମା ଦେଇ ରଖିବା ସମ୍ଭବ ନୁହେଁ । ମାଟି କାମ ବା ଜଙ୍ଗଲର ଜାଳ ସଂଗ୍ରହ କରିବାକୁ ଯାଉଥିବା ସେଇ ସ୍ତ୍ରୀଲୋକଟି ଚବିଶ ଘଣ୍ଟା ବନ୍ଧାହୋଇ ରହିବାକୁ ଚାହୁଁ ନଥିଲା । ଆପାତତଃ ସ୍ଥିର ହେଲା, ସକାଳ ସନ୍ଧ୍ୟାରେ ଆସି ପାଣି ଅଣା, ବାସନମଜା ସହିତ ଘରର ଛୋଟ ଛୋଟ କାମ କରିବ । ତଥାପି ସିଏ ରାଜି ହେଲାନି । କେବଳ ସକାଳେ ଆସିବ । ସବୁ କାମ ଶେଷ କରି ଚାଲିଯିବ । କ୍ରିଷ୍ଣା ରାଜି ହେଉନଥିଲା । ସୁଦୀପ୍ତ ବୁଝାଇଦେଲା- ଅନ୍ୟ ବିକଳ୍ପ ମିଳିବା ପର୍ଯ୍ୟନ୍ତ କାମ କରୁଥାଉ ।

ଅଫିସ୍ ଯିବାପାଇଁ ତରତର ହେଉଥିଲା ସୁଦୀପ୍ତ । ପିଲାମାନଙ୍କୁ ଆଣିବା ପାଇଁ ସେ ପାଞ୍ଚଦିନ ଛୁଟି ନେଇଥିଲା । ଦୁଇଦିନ ଅଧିକ ରହିଯାଇଛି । ସହକର୍ମୀ ହେଲେ ମଧ୍ୟ ବରିଷ୍ଠ ଅଧିକାରୀଙ୍କୁ ସିଏ ଅସନ୍ତୁଷ୍ଟ କରିବାକୁ ଚାହେଁନା । ମଝିରେ ମଝିରେ ସିଏ ଅସନ୍ତୋଷ ପ୍ରକାଶ କରନ୍ତି । ସମସ୍ତଙ୍କ ସାମ୍ନାରେ ସତର୍କଟା ମାଡ଼ ମାରିଲା ଭଳି ଲାଗେ । ମନେ ମନେ ରାଗିଲେ ବି ଚୁପ୍ ରହେ ସୁଦୀପ୍ତ ।

କ୍ରିଷ୍ଣା ପାଇଁ ଜାଗାଟା ସମ୍ପୂର୍ଣ୍ଣ ନୂଆ । ସକାଳ ବେଳାଟା ହୋଟେଲ୍‌ରୁ ଆଣି ଖାଇବାର ପ୍ରସ୍ତାବ ଦେଲା ସୁଦୀପ୍ତ । କ୍ରିଷ୍ଣା ଭାବିଲା ଶୋଇ ପଡ଼ିବ । ତା' ହୋଇ ପାରିଲାନି । ସୁଦୀପ୍ତ ପଦାକୁ ଗୋଡ଼ କାଢ଼ିବା ମାତ୍ରେ ଭେଟିଲା ବେହେରାବାବୁଙ୍କ ସ୍ତ୍ରୀଙ୍କୁ । ସିଏ ପ୍ରସ୍ତାବ ଦେଲେ, "ଆଜି ଆସିଛନ୍ତି । ସକାଳ ବେଳା ଆମ ଘରେ ଖାଇବେ ।" ଅଗତ୍ୟା ଫେରିବାକୁ ହେଲା ସୁଦୀପ୍ତକୁ । କ୍ରିଷ୍ଣା ସାଙ୍ଗେ ପରିଚୟ କରାଇଦେଲା । ସକାଳ ଓଳିଟା ତାଙ୍କର ଅତିଥି ହେବାର ନିମନ୍ତ୍ରଣ ଜଣାଇଦେଲା ।

ବସ୍‌ଯାତ୍ରା ଜନିତ କ୍ଳାନ୍ତି ନିବାରଣ ନିମନ୍ତେ ଶୋଇବାର ଆଗ୍ରହ ଦମନ କରି ବସିଲା କ୍ରିଷ୍ଣା । ଭଦ୍ରମହିଳା ଗପୁଥିଲେ । ସୁଦୀପ୍ତ କ୍ୱାଟର ପଛପଟେ ସେମାନେ ରହନ୍ତି । ବେହେରାବାବୁ ସ୍ୱାସ୍ଥ୍ୟ ସହକାରୀ ଭାବେ ରହିଗଲେଣି ସେଇ ଜାଗାରେ ପାଖାପାଖି ପନ୍ଦର ବର୍ଷ । ଉପକୂଳ ଜିଲ୍ଲାର ଲୋକ ସେମାନେ । ପୁରୀ ସହରରେ ତାଙ୍କ ବାପଘର । ଝିଅ ପୁଅ ଦୁଇଜଣ । ଝିଅ ଜିନା ଦଶମ ପାଶ୍ କରି ଘରେ ବସିଛି । ପୁଅ ମଣ୍ଟୁ ନବମ ଶ୍ରେଣୀରେ ପଢୁଛି । କ୍ରିଷ୍ଣା ସବୁ ଶୁଣୁଥିଲା, କିଛି କହୁ ନଥିଲା । ମଝିରେ ମଝିରେ ହାଇ

ମାରୁଥିଲା । ତା'ର ଆଖିପତା ମୁଦି ହୋଇ ଆସୁଥିଲା । କ୍ରିଷ୍ଣାର ତନ୍ଦ୍ରା ବିଜଡ଼ିତ ଆଖି ଓ କ୍ରମ ଅନ୍ୟମନସ୍କତା ଦେଖି କହିଲେ, "ଯାଆନ୍ତୁ ଶୋଇ ପଡ଼ିବେ । ହାଲିଆ ଲାଗୁଥିବ ।"

ଅତ୍ୟଧିକ କ୍ଲାନ୍ତି ସତ୍ତ୍ୱେ ନିଦ ଆସୁନଥିଲା । ହାତ ପାଦର ମାଂସପେଶୀମାନ ଅସାଡ଼ ହୋଇ ଯାଇଥିଲେ । ଆଖି ବୁଜି ପୁଅମାନଙ୍କ ପାଖେ ଗଡ଼ିବା ବ୍ୟତୀତ ତା'ର କିଛି ଚିନ୍ତା ମୁଣ୍ଡକୁ ପଶୁନଥିଲା । କ'ଣ ଅଛି କ'ଣ ନାହିଁ, ଏ ଚିନ୍ତାରେ ସେ ବ୍ୟତିବ୍ୟସ୍ତ ହେଉଥିଲା । ଅଳ୍ପ ରୋଷେଇ ସରଞ୍ଜାମ, ଅତ୍ୟାବଶ୍ୟକ ବିଛଣା ଅଜଣା ଲୋକଙ୍କ ସାଙ୍ଗରେ ଚଳିବା ନିମନ୍ତେ ସ୍ୱଳ୍ପ ଅଭିଜ୍ଞତା ସହିତ ଦୁଇ ଛୋଟ ପୁଅଙ୍କ ସାମ୍ରାଜ୍ୟର ପ୍ରତିକୂଳ ଗୋଟେ ସମ୍ପୂର୍ଣ୍ଣ ଅପରିଚିତ ଜାଗା । କେତେ ଚିହ୍ନିଛି ସୁଦୀପ୍ତ ଏଇ ଛଡ଼ାଛଡ଼ି ହୋଇ ରହିଥିବା ପରିବାରମାନଙ୍କୁ । କେତେ ଆପଣେଇ ପାରିବ କ୍ରିଷ୍ଣା ଏଇ ନିର୍ଜନ ପରିବେଶକୁ !

ଜାଫ୍ରି ଖଡ଼ଖଡ଼ ହେଲା । ଉଠିବା ଛଡ଼ା ଅନ୍ୟ ଉପାୟ ନଥିଲା । ପିଣ୍ଡାତଳେ ସେଇ ବୁଢ଼ୀ । ନରସିଂହମ୍‌ଙ୍କ ମାଆ । ଆସ୍ତେ ଆସ୍ତେ ପାଦ ପକାଇ ଭିତରକୁ ଆସିଲେ । ତାଙ୍କୁ ବସାଇବା ପାଇଁ ଚୌକିଟିଏ ନଥିଲା । ଶୋଇବା ଘର ସାମ୍ନାରେ ନିଃସଙ୍କୋଚରେ ବସିଲେ ସିଏ । ଅନିଚ୍ଛା ସତ୍ତ୍ୱେ ସାହଚର୍ଯ୍ୟ ଦେବାକୁ ପଡ଼ିବ । ବୁଢ଼ୀଙ୍କୁ ଏକା ରହିବାକୁ ହେଉଥିଲା ନିଶ୍ଚୟ । ସୁଦୀପ୍ତ ଅଧିକାର କରିଥିବା କ୍ୱାଟର ଖାଲିଥିଲା । ଅନ୍ୟପଟରେ ଅବିବାହିତ କାର୍ଯ୍ୟବ୍ୟସ୍ତ ଯୁବ ଗୋଷ୍ଠୀ ଉନ୍ନୟନ ଅଧିକାରୀ । ପୁଅ ନଥିବା ବେଳେ କାହା ସଙ୍ଗରେ ଗପ କରିବେ ? କେତେ ସମୟ ନୀରବରେ ବସିବେ ? ତେଣୁ କ୍ରିଷ୍ଣା ପହଞ୍ଚିବା ସଙ୍ଗେ ସଙ୍ଗେ ହାଜର ହୋଇ ଗଲେଣି । ନିରୀହ ସ୍ୱାର୍ଥରହିତ ଉପସ୍ଥିତି ।

ଗଳ୍ପ ଆରମ୍ଭ ହେଲା । ମିଳିଗଲା ସାଥିଟିଏ ଶ୍ରୋତାଟିଏ, ତା' ନିକଟରେ ସବୁ କହିଯିବେ । ବୋହୂ କୋରାପୁଟ ତହସିଲ ଅଫିସରରେ କିରାଣୀ ଅଛି । ନାତି ନାତୁଣୀ ଦୁଇଜଣ କଲେଜରେ ତା ପାଖରେ ରହି ପଢୁଛନ୍ତି । ବୋହୂ ମାସେ ଦୁଇମାସରେ ଥରେ ଆସେ । ଖୁବ୍ ବେଶିରେ ଦୁଇ ତିନିଦିନ ରହେ । ପୁଅର ପେଟମରା ବେମାର ଅଛି । ଅନେକ ଔଷଧ ପରେ ଭଲ ହେଉନି । ତାଙ୍କ ନିଜ ଆଖିରେ ଅପରେସନ୍ ହୋଇଥିଲା । ତଥାପି ଭଲ ଦିଶୁନି । ରୋଷେଇ କରିବାରେ ଅସୁବିଧା । ପୁଅ ସାହାଯ୍ୟ କରେ । ବୋହୂ ପୁଅ ଏକାଠି ରହିଲେ ଭଲ ହୁଅନ୍ତା । ପୁଅ ଆଗ୍ରହ ପ୍ରକାଶ କରୁନି ।

ଆମ୍ବଗଛରୁ ପତ୍ର ଓ ଶିମିଳିଗଛରୁ ତୁଳା ଆସି ସଫା ଅଗଣାରେ ଜମା ହେଉଥିଲା । ଲେଉଟାଣି ଖରା ବାରଣ୍ଡାର ତଳ ପାହାଚକୁ ଛୁଇଁଲାଣି । ଭୋକରେ କ୍ରିଷ୍ଣାର ପେଟ ଆଉଣ୍ଠିଲାଣି । ସୁଦୀପ୍ତର ବା ଜିନା ବୋଉଙ୍କର ଦେଖାନାହିଁ । ପୁଅ ଦୁହେଁ ଉଠିଲେଣି । ସାନପୁଅ ପାଇଁ ସେରେଲାକ ତିଆରି କରିବାକୁ ହେବ । ସୁଦୀପ୍ତ କହୁଥିଲା କାଠ କୋଇଲା

ଓ କାଠ ଉଭୟ ଗଛିତ ଅଛି, ଷ୍ଟୋଭ୍ ମଧ୍ୟ । ବର୍ଷକିଆ ପୁଅ କ୍ରିଷ୍ଣାର କାନିଧରି ଟାଣିଲାଣି । ଏଇଟା ତା'ର ଖାଇବାକୁ ଦେବା ପାଇଁ ଅଳି ।

"ମାଉସୀ ସାନପୁଅର ଖାଇବା ସମୟ ହେଲାଣି । ତାକୁ ସେରେଲାକ ଦେବି ।" ଉଠିଗଲା କ୍ରିଷ୍ଣା । ନରସିଂହମ୍‌ଙ୍କ ମା' ପଦା ଆଡ଼କୁ ଗୋଡ଼ ବଢ଼େଇଲେ । ବଡ଼ପୁଅ ଘୋଡ଼ା ହେଉଥିଲା ଓ ସାନପୁଅ ତା' ଉପରେ ବସୁଥିଲା । ଓହ୍ଲାଇଦେବା ମାତ୍ରେ ସିଏ କାନ୍ଦୁଥିଲା । ଜିନାର ମା' ଘର ଭିତରକୁ ଆସିଲେ ଓ ଖାଇବାକୁ ଯିବା ପାଇଁ ଅନୁରୋଧ କଲେ ।

ସିଏ ଆସନ୍ତୁ, ସୁଦୀପ୍ତକୁ ଉଦ୍ଦେଶ୍ୟ କରି କହିଲା କ୍ରିଷ୍ଣା ।

ବେହେରାବାବୁ ମଧ୍ୟ ଆସି ନାହାନ୍ତି ।

ସେମାନେ ବାହାରକୁ ଆସିଲେ । ଆକାଶିଆ ଗଛର ଛାଇ ମୂଳକୁ ବେଢ଼ାଇ ରଖିଥିଲା । କଲୋନୀର ମୁଣ୍ଡରେ ସେମାନଙ୍କ ଆଡ଼କୁ ପଛକରି ଠିଆ ହୋଇଥିବା ଜଣେ ସ୍ତ୍ରୀଲୋକ ଛଡ଼ା ଆଉ କେହି ଦେଖାଯାଉନଥିଲେ । ନରିସିଂହମ୍‌ଙ୍କ ମା' ଘରେ ପଶି କବାଟ ବନ୍ଦ କରିସାରିଥିଲେ । ସେଇ ଦିଗରୁ ବେହେରାବାବୁ ମଟରସାଇକେଲ୍‌ରେ ଆସିବା କଥା । ସୁଦୀପ୍ତ ମଧ୍ୟ । ସାମ୍ନା ରାସ୍ତାରୁ ଓହ୍ଲାଇ କଡ଼ା ଇସ୍ତ୍ରୀ ପୋଷାକ ପିନ୍ଧା ମଣିଷ ଜଣେ ସେମାନଙ୍କ ଆଡ଼କୁ ଅଗ୍ରସର ହେଉଥିଲେ । ତାଙ୍କ ବୟସ ତିରିଶ ପାଖାପାଖି ମନେହେଉଥିଲା । ତାଙ୍କ ମୁଣ୍ଡରେ ସାମ୍ନା ଓ ମଝି ଅଂଶରେ ଚୁଳ ନଥିଲା । ଅପେକ୍ଷାକୃତ କମ୍ ବୟସର ସ୍ତ୍ରୀଲୋକ ଜଣେ ତାଙ୍କୁ ଅନୁସରଣ କରୁଥିଲା ।

ନିଃସଙ୍କୋଚରେ ଠିଆ ହୋଇଥିଲେ ଜିନାର ମାଆ । ପାଖ ଘର ଜାଫ୍ରି ଦର୍ଜା ଖୋଲି ସେମାନେ ଭିତରକୁ ଆସିଲେ । ଚେହେରାଟା ଭଲଭାବରେ ଦେଖି ନହେଲେ ମଧ୍ୟ ମନେ ହେଉଥିଲା ମଧ୍ୟମ ଧରଣର ସ୍ୱାସ୍ଥ୍ୟ । ରଙ୍ଗ କଳା, ଅନାକର୍ଷଣୀୟ । ତାଙ୍କ ବିଷୟରେ କିଛି ପଚାରିବାକୁ ଇଚ୍ଛା କରୁଥିବା କ୍ରିଷ୍ଣାର ଚିନ୍ତାରେ ପୂର୍ଣ୍ଣଚ୍ଛେଦ ପକାଇ ବେହେରାବାବୁ ଓ ସୁଦୀପ୍ତ ଆସି ପହଞ୍ଚିଲେ ।

ସାରା ଉପରଓଳିଟା ଘରେ ରହିଲେ ସୁଦୀପ୍ତ ଓ ରୋଷେଇଘର ସଜାଡ଼ିବାରେ କ୍ରିଷ୍ଣାଙ୍କୁ ସାହାଯ୍ୟ କଲେ । ଜିନାବୋଉ ଚାକରାଣୀଟିକୁ ସାଥିରେ ଆଣି ଆଗରୁ ଥିବା ଚୂଲିର ଝିଙ୍କାଗୁଡ଼ିକୁ ସଜାଡ଼ି ଦେଲେ । ଏଇ କାମଟି ପାଇଁ କ୍ରିଷ୍ଣା ସେମାନଙ୍କୁ ଅପ୍ୟାୟିତ କରିବାକୁ ଚାହୁଁଥିଲା । ଚା' କରିବା ପାଇଁ କୌଣସି ଯୋଗାଡ଼ ହୋଇ ପାରିଲାନି । ଜିନାବୋଉଙ୍କର ଜିନିଷଗୁଡ଼ିକ ସଜାଡ଼ିବାରେ କୁଣ୍ଠା ନଥିଲା । ମଝିରେ ମଝିରେ ସିଏ ଗପ କରୁଥିଲେ । ବେହେରାବାବୁଙ୍କ ସହ ତାଙ୍କର ପ୍ରେମ, ଛୁଆମାନଙ୍କ ଜନ୍ମର ବ୍ୟବଧାନ, କଲୋନୀ ଲୋକମାନଙ୍କର ବ୍ୟବହାର, ବିଶେଷକରି ତାଙ୍କ ପଡ଼ୋଶୀ ଦାସବାବୁଙ୍କ

ସ୍ତ୍ରୀର ଅଯଥା ସନ୍ଦେହ ଆଉ ଆଇ.ପି.ଓ.ଙ୍କ ସ୍ତ୍ରୀର ଅହଂକାର । କ୍ରିଷ୍ଣା କାହାରିକୁ ଜାଣି ନଥିଲା । ତେଣୁ ସେମାନଙ୍କଠାରୁ ଯଥା ସମ୍ଭବ ଦୂରତ୍ୱ ରକ୍ଷା କରିବା ନିମନ୍ତେ ଜିନା ବୋଉଙ୍କର ସାବଧାନତା କ୍ରିଷ୍ଣା ମନରେ କୌଣସି ପ୍ରଭାବ ପକାଇଲାନି ।

"ଆମେ ଠିଆ ହୋଇଥିବା ସମୟରେ ଯେଉଁ ଭଦ୍ରବ୍ୟକ୍ତି ଆସି ପାଖ କ୍ୱାଟରରେ ପଶିଲେ... ?"

କ୍ରିଷ୍ଣାର ସନ୍ଦେହୀ ପ୍ରଶ୍ନରେ ହସିଲେ ଜିନାବୋଉ । ଗୋଟେ ବଡ଼ ଆବିଷ୍କାରର ତଥ୍ୟ ଅଜ୍ଞ ମଣିଷମାନଙ୍କ ଆଗରେ ବିତରଣ କରିଦେବା ପାଇଁ ସୁଯୋଗ ମିଳିଗଲା । ସର୍ପ ପଦ୍ମତୋଳା ଶୁଣେ ।

ବୁଝିଲେ ମାଡ଼ାମ୍, "ଏଇ ରାଓବାବୁ, ଆପଣଙ୍କ ପଡ଼ୋଶୀ, ବିବାହ କରି ନାହାନ୍ତି । କାହିଁକି କରିବେ ? ବିଦ୍ୟାଳୟମାନଙ୍କର ଉପ ପରିଦର୍ଶକ । ଅନେକ ଶିକ୍ଷୟିତ୍ରୀ, ସେମାନଙ୍କର ଅନେକ କାମ ରାଓବାବୁଙ୍କ ପାଖରେ । ରାଓବାବୁ ସେମାନଙ୍କ କାମ କରିବେ । ଆଉ ପ୍ରତିଦାନରେ ସେମାନେ ରାଓବାବୁଙ୍କର କୌଣସି ବାଞ୍ଛିତ, ଅବାଞ୍ଛିତ ଇଚ୍ଛା ପୂରଣ କରିବେନି ? ଆପଣ ତ ପାଖରେ ରହିଲେ । ଦେଖିବେ କେତେ ଝିଅ ପାଖକୁ ଆସୁଛନ୍ତି । କେତେ ହସର ହିଲ୍ଲୋଳ ଖେଳିବ । ଫୁଲର ମହକ ଛୁଟିବ । ସୁଗନ୍ଧ, ପ୍ରସରିଯିବା ପାଇଁ ବିଶେଷ କିଛି ମାଧ୍ୟମର ଆବଶ୍ୟକ ପଡ଼େନି । ବାୟୁ ସର୍ବବିଦ୍ୟମାନ ।"

ରାତିରେ ଶୋଇବା ସମୟରେ ଆଶଙ୍କାଟି ବ୍ୟକ୍ତ କଲା କ୍ରିଷ୍ଣା ସୁଦୀପ୍ତ ନିକଟରେ ।

"ଆମ ପଡ଼ୋଶୀ ରାଓବାବୁ ।"

"ହଁ,କ'ଣ ହେଲା ସୁଦୀପ୍ତର ଖାମଖିଆଲି ପ୍ରଶ୍ନ ।"

"ବିବାହ କରି ନାହାନ୍ତି ।"

"ହଁ, ନକରନ୍ତୁ । ଆମର କ'ଣ ଯାଏ ଆସେ ।"

"ଜିନା ବୋଉ କହୁଥିଲେ ତାଙ୍କ ପାଖକୁ ଅନେକ ଝିଅ ଆସନ୍ତି ।"

"ହଁ, ହୋଇଥିବ । ଆମ ବିଭାଗର ନୁହନ୍ତି ତ । ଆମର କାହିଁକି ମୁଣ୍ଡବ୍ୟଥା ।"

"ତୁମର ନୁହେଁ ମୋର । ତୁମେ ତ ଅଫିସ୍ ଚାଲିଯିବ । ଛୋଟପିଲା ଦୁଇଟାଙ୍କୁ ନେଇ ମୋତେ ଘରେ ରହିବାକୁ ହେବ । ଲୋକଟାର ଚେହେରାରୁ ମୋତେ ବେଖାପ ଲାଗୁଛି । ଚନ୍ଦା, କଳା ଆଉ ପିନ୍ ପିନ୍ ଶରୀର । ପୋଷାକପତ୍ର ଚକ୍‌ଚକ୍, କୁଆ ପରରେ ଚୂନ ଲେପି ଦେଲାଭଳି । ଲୋକଟା ନିଜକୁ ଖେଳୁଆଡ଼ ପ୍ରତିପାଦିତ କରିବା ପାଇଁ ଯତ୍ନଶୀଳ ।"

ଅନ୍ୟ ଜଣେ ମଣିଷର ବ୍ୟକ୍ତିଗତ ଜୀବନକୁ ନେଇ ମସ୍ତିଷ୍କ ଭାରାକ୍ରାନ୍ତ କରିବାର

ମାନସିକତା ନଥିଲା ସୁଦୀପ୍ତର । ସାରା ଦିନଟା କାର୍ଯ୍ୟବ୍ୟସ୍ତ ରହି ତାକୁ କ୍ଲାନ୍ତ ଲାଗୁଥିଲା । ସେ ଶୋଇବାକୁ ଇଚ୍ଛା କରୁଥିଲା । "ଆଚ୍ଛା ଦେଖିବା," କହି ସେ କଡ଼ ଲେଉଟାଇଲା ଓ କିଛି ସମୟ ପରେ ଘୁଙ୍ଗୁଡ଼ି ମାରିଲା ।

ପରଦିନ ଡେରିରେ ନିଦ ଭାଙ୍ଗିଲା ସୁଦୀପ୍ତର । ଯଦିଓ ଖୁବ୍ ସକାଳୁ ଉଠିବା ତା'ର ଅଭ୍ୟାସ । କ୍ରିଷ୍ଣା ଚାକରାଣୀକୁ କାମ ବରାଦ କରୁଥିଲା ଆଉ ପୁଅମାନେ ଶୀତବସ୍ତ୍ରରେ ଢାଙ୍କି ହୋଇ ଏପଟ ସେପଟ ହେଉଥିଲେ । ସେମାନଙ୍କୁ ନିତ୍ୟକର୍ମ ଶେଷ କରିବା ପାଇଁ ତାଗିଦା କରୁଥିଲା କ୍ରିଷ୍ଣା । ସାନ ପୁଅର ନିଦ ଭାଙ୍ଗିଯିବା ପରେ ମାଆକୁ ବିଛଣାରେ ନଦେଖି କାନ୍ଦ ଆରମ୍ଭ ହେଲା । ଗାଧୁଆ ଘରେ ପାଣି ଢଳା ହେବା ଶବ୍ଦ ଓ ସେଠାରେ କ୍ରିଷ୍ଣାର ଉପସ୍ଥିତି ଯୋଗୁଁ ପୁଅକୁ କୋଳରେ ଧରି କ୍ୱାଟର ସାମ୍ନାକୁ ଆସିଲା ସୁଦୀପ୍ତ । ବର୍ଷା ପାଣିରେ ଭାସି ଆସୁଥିବା ବାଲି ଯୋଗୁଁ ଜାଗାଟା ପରିଷ୍କାର । ଛାପି ଛାପିକିଆ ଖରା ଏକ ଭିନ୍ନ ରୁଚିର ଭ୍ରମ ସୃଷ୍ଟି କରୁଥିଲା । ପାଞ୍ଚବର୍ଷର ପୁଅ ଆସି ପାଖରେ ଠିଆ ହେଲା, ଗୋଟେ ସାହାରା ଭଳି । ଆଗାମୀର ସଙ୍କେତ ।

ବ୍ଲକ୍ ଅଫିସ୍ ସାମ୍ନା ବର୍ଷା ମାପକ ଏବଂ ପତାକା ଉତ୍ତୋଳନର ପିଣ୍ଡି ଅପେକ୍ଷା କରୁଥିଲେ ସବୁ ଦିନିଆ ଅତିଥିମାନଙ୍କୁ । ଖୁବ୍ ଛନ ଛନ ଲାଗୁଥିଲା ପରିବେଶ । କ୍ରିଷ୍ଣା ବାଳ ଶୁଖାଇବା ବାହାନାରେ ପଦାକୁ ବାହାରି ଆସିଲା ଏବଂ ସୁଦୀପ୍ତ ନିକଟରେ ଛିଡ଼ା ହେଲା । ସାନ ପୁଅ ବ୍ୟସ୍ତହେଲା ମାଆକୋଳକୁ ଯିବା ପାଇଁ । କଲୋନୀର ଅନ୍ୟ ମଣିଷମାନଙ୍କ ପାଇଁ ତଥାପି ସକାଳ ହୋଇନଥିଲା । ଜଣେ ମଧ ମଣିଷ ପଦାରେ ଦେଖାଯାଉ ନଥିଲେ । ହଳଦୀ ରଂଗ ଶାଳ ପତ୍ରରେ ନାଚୁଥିଲା ପାଣିଚିଆ ଖରା । ଜହ୍ନା କ୍ଷେତରେ ଚଅଁର ଉନ୍ମୋଚିତ ହେବାକୁ ଆତୁର ହେଉଥିଲା । ଝୁଡ଼ି, କୋଦାଳ ଧରି ରାସ୍ତାରେ ମଜୁରିଆ । ସୁଦୀପ୍ତକୁ ପରିବେଶ ଲାଗୁଥିଲା ନିଃସଙ୍ଗ, ନିର୍ଜନ, ନିରାସକ୍ତ । ପାଖ କ୍ୱାଟର ଜାଫ୍ରିଖୋଲି ଯେଉଁ ହସ ହସ ମୁହଁଟି ପଦାକୁ ଆତ୍ମପ୍ରକାଶ କଲା ସେଇଟା ଥିଲା ସ୍ୱଚ୍ଛଦର୍ଶନ ନାରାୟଣ ରାଓଙ୍କର ।

ଦରଜା ବନ୍ଦ କରିବାର ଉପକ୍ରମ ନକରି ଫାଟକ ବାହାରକୁ ଆସିଲେ ନାରାୟଣ ରାଓ । ଆକାଶ ରଙ୍ଗର ପ୍ୟାଣ୍ଟ ସାଙ୍ଗକୁ ଇନ୍ କରା ହୋଇଥିବା ଧଳା ସାର୍ଟ ତାଙ୍କୁ ଖୁବ୍ ମାନୁଥିଲା । ଚକ୍ ଚକ୍ ଜୋତା । ଚକ୍ ଚକ୍ ମଥା । ସ୍ୱଳ୍ପ ବାଳର ସଯତ୍ନ ସଜଡ଼ା ତାଙ୍କ ବ୍ୟକ୍ତିତ୍ୱକୁ ପରିପୁଷ୍ଟ କରୁଥିଲା । ପ୍ରକୃତିର ଦାନ ପ୍ରତି ସମ୍ମାନ ପ୍ରଦର୍ଶନ ନିମନ୍ତେ ଯଥେଷ୍ଟ ସତର୍କତା ।

ସୁଦୀପ୍ତ ଏବଂ କ୍ରିଷ୍ଣା ନିକଟକୁ ଆସି ସମ୍ମାନ ପ୍ରଦର୍ଶନ କରିବା ସହ ଆତ୍ମ ପରିଚୟ ଦେଲେ ନାରାୟଣ ରାଓ । ସ୍କୁଲ ସବ୍‌ଇନସ୍ପେକ୍ଟର ।

ହସିଲା ସୁଦୀପ୍ତ, "ଭଲ ହେଲା । ବିପଦ ଆପଦରେ ଆପଣଙ୍କ ଭଳି ଜଣେ ପଡ଼ୋଶୀର ସାହାଯ୍ୟ ନିଶ୍ଚୟ ଆଶା କରିବୁ ଆମେ ।"

ହସିଲେ ନାରାୟଣ ରାଓ । କୃତ୍ରିମତା ଶୂନ୍ୟ ସେଇ ହସର ଲହର ସଂକ୍ରମିତ ହେଲା ବାୟୁମଣ୍ଡଳକୁ- ପଣସ ଗଛର ଘଞ୍ଚ ଡାଳପତ୍ରକୁ, ବୃକ୍ଷ ଶୀର୍ଷର ପକ୍ଷୀ ନୀଡ଼କୁ ବିମର୍ଷ ବସୁଧାକୁ, ବିଚଳିତ କ୍ରିଷ୍ଣାର ଅନ୍ତରକୁ । ଉଦ୍‌ଗତ ଉତ୍କଣ୍ଠାକୁ ଚାପି ଦେବାର ଲକ୍ଷ୍ୟନେଇ ସେଠୁ ଅପସରି ଯିବାକୁ ଚାହୁଁଥିଲା ସେ ଅଥଚ ଏପରି କାର୍ଯ୍ୟଟି ଭଦ୍ରଜନୋଚିତ ନୁହେଁ ।

"ମୁଁ ବା କି କାର୍ଯ୍ୟରେ ଲାଗି ପାରିବି ? ପଡ଼ୋଶୀ ହେଲେବି ଏକୁଟିଆ ରହୁଛି । କେବେ କେମିତି ହାତରେ ରୋଷେଇ କରି ଖାଉଛି । ସ୍କୁଲ ପରିଦର୍ଶନରେ ଗଲେ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର କ୍ରୋଧର ଶିକାର ହେଉଛି । ଶିକ୍ଷକମାନଙ୍କର ପାଠ ପଢ଼ାଇବାର ଅନାଗ୍ରହ ଯୋଗୁଁ କର୍ତ୍ତୃପକ୍ଷ କ୍ଷୁବ୍ଧ । ସପ୍ତାହାନ୍ତ ରବିବାରରେ ଭଉଣୀର ବିବାହ ନ ହୋଇଥିବା ଯୋଗୁଁ ମାଆର ବିମର୍ଷ ହୃଦୟକୁ ଶାନ୍ତ କରିବା ପାଇଁ ଗୁଡ଼ାଏ ମିଛ କଥା କହୁଛି । ଏକାନ୍ତ ମୁହୂର୍ତ୍ତମାନଙ୍କର ପ୍ରତିରୋଧ କରିବା ପାଇଁ ଗୁଡ଼ାଏ ବହି ଥାକରେ ସଜାଇଛି । ଅକ୍ଷତ ଅବସ୍ଥାରେ ଥିବା ଯୋଗୁଁ ସେମାନଙ୍କ ପରିହାସର ପାତ୍ର ହେଉଛି ।"

ଗୋଟିଏ ଲହରରେ ଏତେ ଗୁଡ଼ାଏ କଥା ନିର୍ଭୁଲ ଭାବେ କହିପାରିଥିବା ଯୋଗୁଁ ଆନନ୍ଦ ନା ବିସ୍ମୟ, କେଉଁ ସତ୍ତାରେ ସେ ବିଚରଣ କରୁଥିଲେ ବୁଝି ପାରିଲେନି ନାରାୟଣ ରାଓ ।

"ସାର୍, ମୋର ଆଜି କେତୁଟା ସ୍କୁଲ ପରିଦର୍ଶନ କରିଯିବାର ଅଛି । ସୁବିଧା ହେଲେ ମୋ କ୍ୱାଟରକୁ କେବେ ଆସନ୍ତୁ ।" କୌଣସି ଉତ୍ତରକୁ ଅପେକ୍ଷା ନକରି ଫେରିଗଲେ ନାରାୟଣ ରାଓ ଓ ସ୍କୁଟରରେ ବସି କୁଆଡ଼େ ଚାଲିଗଲେ ।

ନାରାୟଣ ରାଓଙ୍କଠାରୁ କେବେ ଯେ କିଛି ସାହାଯ୍ୟ ଆବଶ୍ୟକ ପଡ଼ିବ ଓ ସେ ତାଙ୍କ କରୁଣାସିକ୍ତ ହସ୍ତ ପ୍ରସାରଣ କରି ଛିଡ଼ା ହୋଇଯିବେ, ଏ ଆଶା ନଥିଲା ସୁଦୀପ୍ତର । ସେହିପରି ନାରାୟଣ ରାଓଙ୍କ ନିମନ୍ତ୍ରଣ । ଦୁର୍ନାମକୁ ସାମ୍ନା କରିବାପାଇଁ ଖାତିର ନଥିବା ଜଣେ ଅବିବାହିତ ଯାଯାବର ମଣିଷ ହାତରେ ସମୟ କୁଆଡ଼େ ଆସିବ ପଡ଼ୋଶୀଙ୍କ ସାଙ୍ଗେ ଅନ୍ତରଙ୍ଗ ଆଳାପ ନିମନ୍ତେ ।

ତେବେ ସମୟ ଚାଲେ, ବ୍ୟସ୍ତ ରହେ ସୁଦୀପ୍ତ । ଗୃହକର୍ମ, ପୁଅମାନଙ୍କର ଯତ୍ନ ପରେ କିଛି ସମୟ ବଳିଗଲେ ଗୃହ ବର୍ହି ପଦାରେ ରାସ୍ତା, ବ୍ଲକ୍ ଅଫିସ ସାମ୍ନାରେ ଏପଟସେପଟ ହେଉଥିବା ମଣିଷ ଏବଂ ଅଚଞ୍ଚଳ କଲୋନୀଆଡ଼କୁ ଚାହେଁ କ୍ରିଷ୍ଣା । ଥରେ ଦୁଇଥର ବିଦ୍ୟୁତ୍ ଯନ୍ତ୍ରୀ ପାଢ଼ୀବାବୁଙ୍କ ସ୍ତ୍ରୀ ଏସ୍.ଇ.ଓ. ସେଠୀବାବୁଙ୍କ ସ୍ତ୍ରୀ, କନିଷ୍ଠ

ଯନ୍ତ୍ରୀ ବାଡ଼ତିଆଙ୍କ ସ୍ତ୍ରୀଙ୍କୁ ସେଇ ବାଲି ଅରାକରେ ଦେଖିବାକୁ ମିଳିଥିଲା । ତେବେ କଲୋନୀରେ ଗୋଟିଏ ନୂଆ ପରିବାରର ଆଗମନ ଯୋଗୁଁ ସେମାନଙ୍କ ଉପସ୍ଥିତି କେବଳ ସୌଜନ୍ୟ ସାକ୍ଷାତ ଛଡ଼ା ଆଉ କିଛି କୁହାଯାଇ ନ ପାରେ । ଜିନାର ମା' କିନ୍ତୁ ଟିକିଏ ଫୁର୍ସତ୍ ପାଇଲେ ଆସନ୍ତି । ଦାଣ୍ଡ ପଟର ବୃକ୍ଷଲତା ରହିତ ବାଲି ଅରାକରେ ଠିଆହୋଇ ଗପ କରୁ କରୁ ରାଓବାବୁଙ୍କ ଘର ଆଡ଼କୁ ଚାହାନ୍ତି । ଜାଫ୍ରି ଖୋଲାଥିଲେ ତା' ଭିତରୁ ନାରୀ ପୁରୁଷର ବାର୍ତ୍ତାଳାପ ଶୁଣିବାକୁ ଚେଷ୍ଟା କରନ୍ତି । ଝିଅ ପିଲାଟିଏ ଆସିଲେ କେତେ ସମୟ ସିଏ ରାଓବାବୁଙ୍କ ବସାରେ ଅବସ୍ଥାନ କରୁଛି, ଲକ୍ଷ୍ୟ କରନ୍ତି । କ୍ରିଷ୍ଣା ଏମିତି ଝିଅପିଲାମାନଙ୍କର ଆଗମନ ଲକ୍ଷ୍ୟ କରିଛି କି ନା ପଚାରନ୍ତି ।

କ୍ରିଷ୍ଣା ପ୍ରଥମେ ପ୍ରଥମେ ନାରାୟଣ ରାଓଙ୍କ କ୍ୱାଟରରେ ନାରୀ ପୁରୁଷଙ୍କ ସମ୍ମିଳିତ କଣ୍ଠସ୍ୱର ଶୁଣୁଥିଲେ ଉତ୍ସୁକ ହୋଇପଡୁଥିଲା । ଝିଅପିଲା ଜଣେ ରାଓବାବୁଙ୍କ କ୍ୱାଟରରେ ପଶୁଥିଲେ ବା ବାହାରି ଆସୁଥିଲେ ତା'ର କାରଣ ମନେ ମନେ ଖୋଜୁଥିଲା । ସେମାନେ କୌଣସି ପଲ୍ଲୀ ଗାଆଁର ଶିକ୍ଷୟିତ୍ରୀ ହୋଇଥିବେ ବୋଲି ଭାବି ନେଉଥିଲା । ତାଙ୍କ ଚାଲିଚଳନର ସ୍ୱଚ୍ଛନ୍ଦତା ଆଉ ବେପରୁଆ ବ୍ୟବହାର ଲକ୍ଷ କରି ତାଙ୍କ ମନରେ ଯେ କୌଣିସି ଆବିଳତା ଥାଇପାରେ କଳ୍ପନା କରିପାରୁ ନଥିଲା ।

ମଝିରେ ମଝିରେ ଦୁଇ ଚାରିଦିନ ପାଇଁ କୁଆଡ଼େ ଚାଲିଯାଆନ୍ତି ନାରାୟଣ ରାଓ । ତାଙ୍କ ବନ୍ଦ ଜାଫ୍ରି ନିକଟରୁ ଶିକ୍ଷକ ଶିକ୍ଷୟିତ୍ରୀମାନେ ଫେରି ଯାଉଥିବାର ଲକ୍ଷ୍ୟ କରନ୍ତି ସୁଦୀପ୍ତ ଓ କ୍ରିଷ୍ଣା । ବଡ଼ ବିମର୍ଷ ଦେଖାଯାଉଥାନ୍ତି ସେମାନେ । ପୋଷାକପତ୍ରରେ କୌଣସି ଚାକଚକ୍ୟ ନଥାଏ । ମୁଖମଣ୍ଡଳ ଶେତା ଶେତା । ମରୁଡ଼ି ପ୍ରପୀଡ଼ିତ ଇଲାକାର ମଣିଷ ଭଳି । ନାରାୟଣ ରାଓଙ୍କ ଅନୁପସ୍ଥିତିରେ ହତାଶ ହୋଇ ପଡ଼ନ୍ତି । କୁଣ୍ଠିତ କୁଣ୍ଠିତ ଭାବ ନେଇ ଫେରନ୍ତି ସେମାନେ । ପ୍ରେମିକାର ଅଭିସାର ନେଇ କିଏ ଆସିଥାଇପାରେ, ବିଶ୍ୱାସ ହୁଏନା କ୍ରିଷ୍ଣାର । ଜିନା ବୋଉ ବିଶ୍ୱାସ କରନ୍ତି ।

ଥରେ ଘର ସାମ୍ନାରେ ଠିଆ ହୋଇଥିବା ବେଳେ ସୁଦୀପ୍ତ ଲକ୍ଷ୍ୟ କଲେ ନାରାୟଣ ରାଓଙ୍କ ଜାଫ୍ରିବନ୍ଦ ଘର ମଧ୍ୟକୁ ସାପଟାଏ ପଶିଲା । ଏଥିରେ ଆତଙ୍କିତ ହେବା ସଙ୍ଗେ ସଙ୍ଗେ ଘଟଣାଟିକୁ ରାଓବାବୁଙ୍କୁ ଜଣାଇ ଦେବାକୁ ବ୍ୟସ୍ତ ହୋଇ ପଡ଼ିଲେ, ଅଥଚ ତିନି ଚାରିଦିନ ପର୍ଯ୍ୟନ୍ତ ତାଙ୍କର ଦର୍ଶନ ନାହିଁ । ଏକଥା କ୍ରିଷ୍ଣାକୁ ଜଣାଇବାର ଆବଶ୍ୟକତା ନଥିଲା । ସିଏ ଡରିଯିବ । ଯେଉଁଦିନ କ୍ୱାଟରରେ ତାଙ୍କ ପ୍ରତ୍ୟାବର୍ତ୍ତନର ସୂଚନା ମିଳିଲା, ସାପ ଉପସ୍ଥିତି ସମ୍ବନ୍ଧରେ ଜଣାଇଦେବା ଉଚିତ୍ ମନେ କଲେ ସୁଦୀପ୍ତ । ଜାଫ୍ରି ନିକଟରେ ପାଟିଶୁଣି ସିଏ ବାହାରକୁ ଆସିଲେ । ସାପ ପ୍ରବେଶ ଖବର ପାଇ ବିଶେଷ ଆତଙ୍କିତ ହେବାର ଲକ୍ଷଣ ପ୍ରକାଶ ପାଇଲାନି ତାଙ୍କ ମୁଖମଣ୍ଡଳରେ । ଖୁବ୍ ସହଜ ଗଳାରେ

କହିଲେ, "ସାପ ପଶିଥିଲା ? ତେବେ ଚାଲନ୍ତୁ ଯିବା । ଏଇ ପାଖରେ ସାପ ମନ୍ତ୍ର ଜାଣିଥିବା ଜଣେ ଗୁଣିଆ ଅଛି ।" ତା' ପରେ ଘର ଭିତରକୁ ମୁହଁ ବୁଲାଇ କହିଲେ- "ସଂଘମିତ୍ରା, ତୁମେ ବସିଥାଅ । ସାର୍ କହୁଛନ୍ତି ମୋ ଘରେ ଗୋଟେ ସାପ ପଶିଥିଲା । ଆମେ ଜଣେ ଗୁଣିଆ ନିକଟକୁ ଯାଉଛୁ ।"

ସ୍କୁଟର ବାହାର କଲେ ନାରାୟଣ ରାଓ । ଦାଣ୍ଡଘର ଦରଜା ନିକଟରୁ ଯେଉଁ ପଚିଶ ତିରିଶବର୍ଷ ସଂଘମିତ୍ରାର ମୁହଁ ଦେଖାଗଲା ସେଥିରୁ ସମସ୍ତ ଲାବଣ୍ୟ ପୋଛିହୋଇଯାଇଥିଲା । ତା' ଆତୁର କଣ୍ଠରୁ ନିଃସୃତ ହେଲା- "ସାର୍ କେତେବେଳେ ଆସିବେ ?"

ସ୍କୁଟର ଷ୍ଟାର୍ଟ କରୁ କରୁ ତାଙ୍କ ବେପରୁଆ ସ୍ୱର ଉଛୁଳି ପଡ଼ିଲା, "ଖୁବ୍ ଶୀଘ୍ର ।"

ଝିଅଟି ଆସି ବାହାରେ ଛିଡ଼ା ହେଲା ଓ ଏପଟ ସେପଟକୁ ଚାହିଁଲା ।

ସ୍କୁଟର ଚଲାଉ ଚଲାଉ ଗପି ଚାଲିଥିଲେ ନାରାୟଣ ରାଓ । "ଏଇ ଚାକିରିରେ ଶିକ୍ଷକ ଶିକ୍ଷୟିତ୍ରୀମାନେ ଟିକିଏ ଶାନ୍ତିରେ ବସାଇ ଦେଉନାହାନ୍ତି । ସଦାବେଳେ କିଛି ନା କିଛି ଅଭିଯୋଗ ବା ଅପ୍ରାସଙ୍ଗିକ ଅନୁରୋଧ । ବାସଗୃହ, କାର୍ଯ୍ୟାଳୟ ସବୁଠି । ମୁଁ ଶିକ୍ଷାଦାନ କ୍ଷେତ୍ରକୁ ଚାଲିଯିବି । ସ୍ତର ଏକା । ଏଇ ଯେଉଁ ଝିଅଟାକୁ ଆପଣ ଦେଖିଲେ କେତେମାସ ଧରି ଅନୁପସ୍ଥିତ ଥିଲା । ଯୋଗ ଦେଉଣୁ ନ ଦେଉଣୁ ଛୁଟି ମଞ୍ଜୁର କରାଇନେବା ପାଇଁ ମୋ ପାଖକୁ ଦୌଡୁଛି । ଚାରିଦିନ ତଳେ ମନାକରିଦେଇଥିଲି । ସିଧା ଯାଇ ବି.ଡ଼ି.ଓ.ଙ୍କ ନିକଟରେ ହାଜର । କି ମନ୍ତ୍ର ଫୁଙ୍କା ଜଣାଅଛି ଏମାନଙ୍କୁ । ବି.ଡ଼ି.ଓ. ମୋତେ ତା'ଛୁଟି ଦରଖାସ୍ତ ପଠାଇବାକୁ ନିର୍ଦ୍ଦେଶ ଦେଇ ସାରିଲେଣି ।"

ସାପମନ୍ତ୍ର ଜାଣିଥିବା ଓ ମୁଣ୍ଡରେ ଚୁଟିକୁ ଅଦ୍ଭୁତ ଭଙ୍ଗୀରେ ବାନ୍ଧିଥିବା ଗାଉଁଲି ଲୋକଟା ବଡ଼ ଦର୍ପର ସହ କହିଲା, "ସାପ ମୋ ନାଁ ଶୁଣି ପଳାଇଯିବଣି । ଆପଣମାନେ ଯାଆନ୍ତୁ ।" ସୁଦୀପ୍ତର ତା କଥାରେ ମୋଟେ ପ୍ରତ୍ୟୟ ଆସିଲାନି । ନାରାୟଣ ରାଓ ତା କଥାକୁ ବିଶ୍ୱାସ କଲେ କି ନା ବୁଝାପଡ଼ିଲାନି । କାର୍ଯ୍ୟାଳୟ ସମୟ ହୋଇଥିବାରୁ ବାଟରେ ଓହ୍ଲାଇଗଲେ ସୁଦୀପ୍ତ ।

ତା'ପରେ ଅନେକବାର ଦେଖା ହୋଇଛି ନାରାୟଣ ରାଓଙ୍କ ସହ । ସଦାବେଳେ ପୋଷାକ ସାଙ୍ଗକୁ ଚକଚକ ମଥା । କ୍ରିଷ୍ଟାର ଚନ୍ଦା ଲୋକମାନଙ୍କ ପ୍ରତି ଏକ ନ୍ୟୂନ ମନୋଭାବ । ତା'ର ଧାରଣା ମଥାରୁ ବାଳ ଉଠିଗଲେ ସୌନ୍ଦର୍ଯ୍ୟ ନିଷ୍ପ୍ରଭ ହୋଇଯାଏ । ଚନ୍ଦା ଲୋକମାନେ କଦାପି ସୁନ୍ଦର ଲୋକମାନଙ୍କ ମଧ୍ୟରେ ସାମିଲ୍ ହୋଇ ପାରିବେନି । ସିଏ ବେଳେବେଳେ ପ୍ରଶ୍ନ କରେ, ଚନ୍ଦା ଲୋକମାନଙ୍କ ସହିତ ଝିଅମାନେ କିପରି ଜୀବନ ବିତାଇ ପାରୁଛନ୍ତି ? ଆଉ ଚନ୍ଦା ନାରାୟଣ ରାଓଙ୍କ କୋଉ ବିଶିଷ୍ଟ ଗୁଣ

ଝିଅମାନଙ୍କୁ ଆକୃଷ୍ଟ କରିପାରୁଛି । ସଦା ହସ ହସ ନାରାୟଣ ରାଓଙ୍କ ପ୍ରତି ଏପରି ଏକ ମନ୍ତବ୍ୟ ସୁଦୀପ୍ତଙ୍କୁ କ୍ଷୁବ୍ଧ କରେ । ଜିନା ବୋଉ ଆଉ ବେହେରାବାବୁଙ୍କର ତାଙ୍କ ପ୍ରତି ସନ୍ଦେହପୂର୍ଣ୍ଣ ଦୃଷ୍ଟି, ଯଦିଓ ସିଏ ଜଣେ ସାହାଯ୍ୟକାରୀ ମଣିଷ ଭାବେ କଲୋନୀରେ ଜଣାଶୁଣା ।

ଇତି ମଧ୍ୟରେ ତିନିମାସ ଅତିକ୍ରାନ୍ତ କରିଯାଇଥିଲା ଏବଂ ସୁଦୀପ୍ତର ସେଇ ଗ୍ରାମ୍ୟ ସହରଟିରେ ପ୍ରାୟ ସବୁ ଅଫିସରଙ୍କ ସଙ୍ଗେ ଆତ୍ମୀୟତା ଆସି ଯାଇଥିଲା । କାମ ନଥିବା ସମୟରେ ଜାତୀୟ ରାଜପଥରେ ଯେ କୌଣସି ଏକ ଜାଗାରେ ଠିଆହୋଇ ଗପ କରିବା ସମସ୍ତଙ୍କର ଏକ ନିଶାରେ ପରିଣତ ହୋଇଯାଇଥିଲା । ବୟସ ଓ ପଦବୀ ନିର୍ବିଶେଷରେ ସେମାନେ ପରସ୍ପରକୁ ଥଟ୍ଟା କରୁଥିଲେ । ଦିନେ ଏପରି ଠିଆ ହୋଇଥିବା ସମୟରେ ସୁଦୀପ୍ତ ମୁଣ୍ଡକୁ ଗୋଟେ ଦୁଷ୍ଟବୁଦ୍ଧି ଜୁଟିଲା । ସେ ସହସା ପଚାରି ଦେଲେ- "ରାଓ ସାର୍ ବାଳ ସବୁ ଉପୁଡ଼ି ଯିବା ପରେ ଆପଣଙ୍କୁ ଖରାପ ଲାଗେନା ?" ଏଭଳି ପ୍ରଶ୍ନର ସମ୍ମୁଖୀନ ଅନେକବାର ହୋଇଥିବେ ନିଶ୍ଚୟ । ତେଣୁ ସେ ଅପ୍ରସ୍ତୁତବୋଧ କଲେନି । ତାଙ୍କ ଚିରାଚରିତ ହସ ହସ ମୁହଁରେ ଉତ୍ତର ଦେଲେ- "ହଁ, ହଁ ଲାଗେ । ଲାଗେନା କାହିଁକି ? ତେବେ ଯଦି ମୋ କ୍ଷମତାର ପରିସରଭୁକ୍ତ ହୋଇଥାନ୍ତା, ତେବେ ମୋର ଏକା କାହିଁକି ଅନ୍ୟ କାହାରି ଚୁଳ ଝଡ଼ି ନଯିବା ପାଇଁ ବ୍ୟବସ୍ଥା କରିଥାନ୍ତି । ତା'ଛଡ଼ା ହାତ, ଗୋଡ଼ ଆଖି, ନାକ, କାନ, ସର୍ବୋପରି ମସ୍ତିଷ୍କ ବିକଳାଙ୍ଗ ହେବା ମଣିଷମାନେ ତ ବଞ୍ଚି ରହିବା ପାଇଁ ଉଦ୍ୟମ ଜାରି ରଖିଛନ୍ତି । ମୁଁ ସେମାନଙ୍କ ତୁଳନାରେ ଭାଗ୍ୟବାନ ନୁହେଁକି ? ସତ ନା ନୁହେଁ ?" ତା'ପରେ ସେ ତାଙ୍କ ପୂର୍ବ ପ୍ରସଙ୍ଗକୁ ଫେରି ଗପରେ ମାତିଗଲେ ।

ସୁଦୀପ୍ତଙ୍କୁ ଆଘାତ ବା ଅପମାନିତ କରିବା ଉଦ୍ଦେଶ୍ୟ ନଥିଲା ନାରାୟଣ ରାଓଙ୍କର । ସୁଦୀପ୍ତ କିନ୍ତୁ ଲଜ୍ଜିତ ବୋଧ କଲେ ।

ଏଇ ଘଟଣାର କିଛିଦିନ ପରେ ଶୁଣାଗଲା ନାରାୟଣ ରାଓ ତାଙ୍କ ଘର ପାଖ ଗୋଟେ ସ୍କୁଲକୁ ବଦଳି ହୋଇ ଚାଲିଯିବା ଚେଷ୍ଟାରେ ଅଛନ୍ତି । ସୁଦୀପ୍ତ ଓ କ୍ରିଷ୍ଣା ଲକ୍ଷ୍ୟ କରନ୍ତି ତାଙ୍କ ଦାଣ୍ଡ ଜାଫ୍ରି ଅନେକଦିନ ଧରି ବନ୍ଦଥାଏ । ଶିକ୍ଷକ/ଶିକ୍ଷୟିତ୍ରୀମାନେ ଆସି ଫେରିଯାଆନ୍ତି । ବେହେରାବାବୁ ଜିନାବୋଉଙ୍କଠାରୁ ଶୁଣାଯାଏ ଚାରିତ୍ରିକ ତ୍ରୁଟିର କ୍ରମନିମ୍ନତା ଓ କର୍ତ୍ତୃପକ୍ଷଙ୍କ ଅସନ୍ତୋଷକୁ ଏଡ଼େଇବା ପାଇଁ ନାରାୟଣ ରାଓ ପଳାୟନର ସୁବିଧା ପନ୍ଥାଟିକୁ ଅବଲମ୍ବନ କରୁଛନ୍ତି । ତେବେ ତାଙ୍କ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଯେଉଁ ଅଳ୍ପ ସମୟ ପାଇଁ ଦେଖା ମିଳେ ସେତିକିରେ ଆତ୍ମୀୟତା ବାଣ୍ଟିବା ପାଇଁ ତାଙ୍କର କାର୍ପଣ୍ୟ ନଥାଏ । କ୍ୟାମେରା ଆଣି ସାନପୁଅର ଫଟୋ ଉଠାଇବା, ବଡ଼ ପୁଅକୁ ରାତିରେ ଚନ୍ଦ୍ର

ତାରାଙ୍କ ସମ୍ବନ୍ଧରେ ଧାରଣା ଦେବାବେଳେ ସୁଦୀପ୍ତ ଯେ ଦିନେ ତାଙ୍କୁ ଆଘାତ ଦେଇଥିଲା ଏକଥା ଭୁଲି ଯାଇଥାନ୍ତି ।

ଦିନେ ନାରାୟଣ ରାଓ କୁଆଡୁ ଆସି ଡାଫ୍ଟ ଖୋଲୁଥିବା ବେଳେ ନଜର ପଡ଼ିଲା ସୁଦୀପ୍ତ ଉପରେ । ଘର ଭିତରକୁ ପ୍ରବେଶ ନକରି ସିଏ ପାଖକୁ ଆସିଲେ ଏବଂ କହିଲେ- "ଶାଁ, ସହର ସାରା ଗୋଟେ ସତ୍ୟତାହୀନ ଗୁଞ୍ଜନ ଶୁଣାଯାଉଛି । ଆପଣଙ୍କ ବିଭାଗର ବେହେରାବାବୁ କୁଆଡ଼େ ତାଙ୍କର ଜଣେ ମହିଳା ସହକର୍ମୀଙ୍କୁ ନିକଟରେ ଯୌନ ଆବେଦନ କରି ବିଫଳ ହେବା ପରେ ଅସଦ୍ ଆଚରଣ କରିଛନ୍ତି । ଏକଥା କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୁ ଆସିଛି ।" ସୁଦୀପ୍ତର କୌଣସି ମତାମତ ବା ସ୍ପଷ୍ଟୀକରଣକୁ ଅପେକ୍ଷା ନକରି କହିଲେ, "ମୁଁ ଜମା ଏକଥା ବିଶ୍ୱାସ କରିପାରୁନି । ନା କ'ଣ କହୁଛନ୍ତି ସାର୍ ?"

ସୁଦୀପ୍ତ କୁଣ୍ଠିତ କଣ୍ଠରେ କହିଲା, "ମୁଁ ମଧ୍ୟ ଶୁଣିଛି ।" ଆଉ କଥାଟିକୁ ଆଗେଇ ନେବା ପାଇଁ କାହାର ଇଚ୍ଛା ନଥିଲା । ସୁଦୀପ୍ତ ଜାଣିଥିଲା କଥାଟି ନିରାଟ ସତ ।

ଏଇ ଘଟଣାର ଅଳ୍ପଦିନ ପରେ ନାରାୟଣ ରାଓଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବା ପାଇଁ ଯେଉଁ ସଭାର ଆୟୋଜନ କରାଯାଇଥିଲା ସେଥିରେ ମଣ୍ଡଳର ସମସ୍ତ ଶିକ୍ଷକ ଶିକ୍ଷୟିତ୍ରୀ ଯୋଗ ଦେଇ ତାଙ୍କ କାର୍ଯ୍ୟାବଳୀର ଭୂୟସୀ ପ୍ରଶଂସା କରିଥିଲେ । କେତେକ ଖୁବ ମନଦୁଃଖ କରିଥିଲେ ମଧ୍ୟ ।



# ନଷ୍ଟ ପୁତ୍ରୀ

ଦାଣ୍ଡ କବାଟ କିଏ ବାଡ଼େଇଲାଣି । ସୁମା ଅପା, ସୁମା ଅପା ଡାକ ଶୁଣାଯାଉଛି । ଅନ୍ଧାରିଆ ବାରଣ୍ଡାକୁ ଆଲୋକିତ କରୁଥିବା ଚୁଲି ଭିତରକୁ କାଠଖଣ୍ଡେ ମୁହାଁଇ ଦେଇ ଉଠି ଆସିଲା ସୁମତି । ଏଇନେ କା'ର ଦରକାର ପଡ଼ିଲା ତା' ନିକଟରେ । ମାଆ ଯାଇଛି ପୋଖରୀ ଆଡ଼େ ତା ଅସୁସ୍ଥ ଶରୀରକୁ ନେଇ । ଶ୍ୱାସଯୋଗୁଁ ପେଲି ହୋଇ ପଡୁଥିଲେ ବି ଜୁଆଖେଳ ନିକଟରେ ବସିଥିବ ବାପା । ଆଉ ଭାଇଟା, କୋଉ ଦୁଷ୍ଟ ପିଲା ସାଙ୍ଗରେ ବୁଲୁଛି କେଜାଣି । ଘରେ ସୁମତି ଏକା । ଚିହ୍ନା ସ୍ୱର ଭଳି ଜଣା ପଡୁନି । ହାଣ୍ଡିରେ ଭାତ ଫୁଟୁଛି । ଛୋଟ ଛୋଟ ଆଳୁ କେଇଟା ଆଉ ଶୁଖିଲା ବାଇଗଣ ତିନି ଚାରିଟା ଡାଲାରେ ଥୁଆ ହୋଇଛି । ତେଲ ମସଲା କିଛି ନାହିଁ । ଭାତ ହୋଇଗଲା ପରେ ରଡ ନିଆଁରେ ପୋଡ଼ିଦେଲେ ଚଳିବ । ସାନ ଭଉଣୀଟା ବର୍ଷେ ହେଲା ବାହା ହୋଇଗଲାଣି । ଶାଶୁଘରେ ଯେପରି ଥାଉ । ପୋଡୁ କି ଜଳୁ । ଏପରି ଟାଆଁସା ଖରାରେ ଅଧାସିଝା ଅବସ୍ଥାରେ କଇଥା ତ ହେଉନି । ଅଧାଜଳା ଅବସ୍ଥାରେ ଛଟପଟ ହେବା ଅପେକ୍ଷା ପାଉଁଶ ହୋଇଯିବା ଶ୍ରେୟସ୍କର । ଗଳିର ଆଲୋକ ଖୁଣ୍ଟି ନିକଟରେ ସିଏ ପତଙ୍ଗ ଭଳି ଧକ୍‌କା ଖାଉଛି, କ୍ଳାନ୍ତ ହେଉଛି ଏବଂ ପକ୍ଷ ଚାଳନ କରି ଉଡିବାର ଚେଷ୍ଟା କରୁଛି ।

ସୁମତିକୁ ବେଳ ଅବେଳରେ ଏମିତି ଡକରା ପଡ଼ିବା କିଛି ନୂଆ କଥା ନୁହେଁ । ହେତୁ ପାଇବା ପିଲାଙ୍କଠାରୁ ଆରମ୍ଭ କରି ହେତୁ ହଜିଯାଉଥିବା ପ୍ରତ୍ୟେକଟି ମଣିଷ ଗାଆଁ ଭିତରେ ତାକୁ ଚିହ୍ନନ୍ତି । ଖାଲି ଚିହ୍ନା ଶବ୍ଦଟିର ପ୍ରୟୋଗ ତା' ପାଇଁ ଯଥେଷ୍ଟ ନୁହେଁ । ଅତି ଦରକାରୀ ମଣିଷଟିଏ, ବସ୍ତୁଟିଏ- ପା'ପୋଛ ଭଳି ପାଦ ପୋଛିବା ପାଇଁ ହେଉ ବା ମୁଣ୍ଡରେ ବୋହି ମୁକ୍ତି ପାଇବା ପାଇଁ ହେଉ ।

ଦାଣ୍ଡ ଦୁଆରଟା ଆଉଜା ହୋଇଥିଲା । ଡାକୁଥିବା ମଣିଷଟି ଖିଡିକି ଦିଆ ହୋଇଥିବ ଭାବି କବାଟରେ ହାତ ମାରିନି । ରଙ୍ଗଛଡ଼ା ପାପରା ଶାଢ଼ୀଟାକୁ ଭଲଭାବେ ଘୋଡ଼େଇ ହୋଇ ଦୁଆର ଖୋଲିଲା ସୁମତି । ଛୋଟ ପିଲାଟିଏ ଛିଡ଼ା ହୋଇଛି । ପୁଅ ପିଲାପରି ପ୍ୟାଣ୍ଟ୍‌ସାର୍ଟ, ଝିଅ ପିଲାପରି ବାଳ । ତା' ମଧୁର କଣ୍ଠରୁ ଶବ୍ଦ କେତୋଟି ଝରି

ପଡ଼ିଲା, "ସାନ ବାବୁ ତୁମକୁ ଡକେଇଛନ୍ତି ସୁମା ଅପା ।" କୌଣସି ପ୍ରଶ୍ନ ବା ପ୍ରତିକ୍ରିୟାକୁ ଅପେକ୍ଷା ନ କରି ଧାଇଁଗଲା ପିଲାଟି । ବଡ଼ ଡଉଲଡାଉଲ । ସବୁ ପିଲାମାନେ ବୋଧହୁଏ ଦେଖିବାକୁ ସୁନ୍ଦର । ତା ପିଲାବେଳେ ସେ ବି ଏମିତି ଚିକ୍କଣ ଦେଖାଯାଉଥିବ । ଖାଲି ପିଲାବେଳ କାହିଁକି ? ଯେତେଦିନ ପର୍ଯ୍ୟନ୍ତ ତା'ର ଧାରଣା ଥିଲା ଯେ ସେ ବାହା ହୋଇ ଶାଶୁଘରକୁ ଯିବ, ସେତେଦିନ ପର୍ଯ୍ୟନ୍ତ ତାର ସ୍ୱାସ୍ଥ୍ୟ ଅତୁଟ ଥିଲା । ପଚିଶ, ଛବିଶ, ତିରିଶ ବର୍ଷ ପୂର୍ଣ୍ଣ ହୋଇଗଲା । ବାପା କାମକରୁଥିବା ସୂତାକଳ ବନ୍ଦ ହୋଇଗଲା । ସାନ ଭଉଣୀ ସୁନ୍ଦର ଦିଶିଲା । ତା'ର ଅନ୍ୟମନସ୍କତା ସୁମା ଆଖିରେ ଧରା ପଡ଼ିଲା । ମାଆର ରୋଗ ବାହାରିଲା- ଚିନ୍ତା ରୋଗ, ଦର୍ପଣରେ ମୁହଁ ଦେଖିବାକୁ ଇଚ୍ଛାହେଲା ସୁମତିର । ନିଜ ଚେହେରାକୁ ସିଏ ନିଜେ ଚିହ୍ନି ପାରିଲାନି । ଡଉଲଡାଉଲ ଚେହେରା ନେଇ ଥୁକୁଲୁ ଥୁକୁଲ୍ ପାଦ ପକାଉଥିବା ଛୋଟ ଝିଅଟି ବୟସ୍କା ନାରୀରେ ପରିଣତ ହୋଇଯାଇଥିଲା । ଶୁଖିଲା ମୁହଁରେ ହସ ଆଣିବାକୁ ଚେଷ୍ଟାକରି ସେ ପାରୁନଥିଲା । ରକ୍ତହୀନତା ଯୋଗୁଁ ପାଣ୍ଡୁର ମୁହଁର ଗାଲ ଶେତା ପଡ଼ିଯାଇଥିଲା । ଶରୀରର ଚମଡ଼ା ହୁଗୁଳା ହେବାକୁ ଆରମ୍ଭ କରିଥିଲା । ତଥାପି ଆଶା ତୁଟି ନଥିଲା । ତାଙ୍କର କୌଳିକ ବୃତ୍ତି ଲୁଗା ବୁଣା କାମ ବାପା ତାକୁ ଶିଖାଇ ନଥିଲା । ଚାଷଯୋଗ୍ୟ ଯେଉଁ ଜମିଗୁଡ଼ା ତାଙ୍କର ବୋଲି ଶୁଣିଥିଲା, ସେଗୁଡ଼ାକ ବାପା ଦେଣାଦାରଠାରୁ ମୁକୁଳାଇବା ଅବସ୍ଥାରେ ନଥିଲା । ବଞ୍ଚିବାର ମୋହ ସୁମତିକୁ ସାହସୀ ସୈନିକରେ ପରିଣତ କରି ଦେଇଥିଲା । କୌଣସି କାମ କରିବାକୁ ତାର ଦ୍ୱିଧା ନଥିଲା । ତେଣୁ ବିବାହ, ବ୍ରତ, ଶୁଦ୍ଧିକ୍ରିୟା, ଏକୋଇଶା, ସ୍ୱନକ୍ଷତ୍ର ସମୟରେ ତା'ର ଆବଶ୍ୟକତା ଅନୁଭୂତ ହେଉଥିଲା । ପ୍ରଥମେ ପ୍ରଥମେ ବିନା ଆହ୍ୱାନରେ ସେ ପହଞ୍ଚିଯାଉଥିଲା । କେହି କିଛି ବରାଦ ନ କଲେ ମଧ ପାଣି ଆଣିବା, ପରିବା କାଟିବା, ହଣ୍ଡା କରେଇ ଡେକ୍‌ଚି ଇତ୍ୟାଦିକୁ ମନଯୋଗ ସହକାରେ ମାଜିବା, ମସଲା ବାଟିବା କାମଗୁଡ଼ିକୁ କରିଯାଉଥିଲା ଯନ୍ତ୍ରଭଳି । କାମ ଶେଷରେ ମିଳିଯାଉଥିଲା କିଛି ପାରିଶ୍ରମିକ । କ୍ରମେ କ୍ରମେ ତାର ଆବଶ୍ୟକତା ଅପରିହାର୍ଯ୍ୟ ହୋଇପଡ଼ିଲା- ଏଇସବୁ କାମ ପାଇଁ ସିଏ ଯାଚି ହୋଇଯିବା ଆବଶ୍ୟକ ପଡ଼ିଲାନି ।

ବିବାହ ଋତୁରେ ଅନେକ କାମ । ବହୁ ପୂର୍ବରୁ ବରାଦ । ସୁମତି ଆମ ଘରକୁ ଯିବ । ଗୋଟେ ଗୋଟେ ଦିନ ଦୁଇ ତିନିଟା ଘରର କାମଧରି ଶେଷ କରି ଦେଇପାରେ ବିନା କ୍ଳାନ୍ତିରେ । ତା'ର ବା ତା' ଠାରୁ କମ୍ ବୟସର ଝିଅମାନଙ୍କୁ ବିବାହ ବେଦୀରେ ଦେଖି ମ୍ରିୟମାଣ ହୋଇପଡ଼େ । ତେଣୁ କାମ ଶେଷ କରି ଶୀଘ୍ର ଫେରି ଆସେ । ଛୋଟ ଝିଅମାନଙ୍କର ବାହାଘରରେ କାମ ବେଶି । ବାଧ କଲେ କହୁଥିଲା ଡାକ୍ତରଖାନାକୁ ଯିବି ପରା । ରୋଗ, ଡାକ୍ତରଖାନା ପାଇଁ ତ ସମସ୍ତଙ୍କର ଡ଼ର । ରୋଗୀ ସେବା ବାହାଘର

ପାଣିଅଣା କାମଠାରୁ ନିଶ୍ଚୟ ଅଧିକ ଜରୁରୀ । କିଏ ମନା କରିପାରିବ ? ବୟସର ବାଛ ବିଚାର ନାହିଁ ରୋଗୀ ପାଲଟିବାରେ, ଯେପରି ନଥାଏ ଶ୍ମଶାନ ଘାଟକୁ ଆମନ୍ତ୍ରିତ ହେବାରେ ।

ରୋଗୀ ସେବା ସହିତ ସଂଶ୍ଳିଷ୍ଟ ହେବା ଯେତିକି ଆକସ୍ମିକ ତା'ଠାରୁ ଅଧିକ ଚମକପ୍ରଦ ତା' ଦୁଃସାହସିକତା । ବିବାହୋତ୍ତୀର୍ଣ୍ଣ ବୟସ ହେବାବେଳକୁ ତାଙ୍କର ପଞ୍ଚାୟତରେ କୌଣସି ସରକାରୀ ସ୍ୱାସ୍ଥ୍ୟସେବା ଉପଲବ୍ଧ ହେଉନଥିଲା । ତେଣୁ ସମସ୍ତେ ମୁହାଁଉଥିଲେ ସବୁଠାରୁ ନିକଟ ପନ୍ଦର କିଲୋମିଟର ଦୂରସ୍ଥ ଉପଖଣ୍ଡ ଚିକିତ୍ସାଳୟକୁ । ଜର, ସର୍ଦ୍ଦି, ଝାଡାକୁ ଶିକ୍ଷକ ରଙ୍କ ମିଶ୍ର ହୋମିଓପାଥି ଆଉ ଗୋଡ଼ ଭଙ୍ଗା, ମକଚି ହେବାକୁ ଉଦ୍ଧବ କବାରୀର ଚେରମୂଳି ଲୋକଙ୍କର ସାହା । ରଙ୍କ ମିଶ୍ରଙ୍କ ଔଷଧ ମୂଲ୍ୟ ଟଙ୍କାଏ; ଉଦ୍ଧବ କବାରୀର ପ୍ରତି ଲେପ ପିଛା ଦେୟ ଦୁଇଟଙ୍କା । ସେଥିରେ କିଛି ଉପଶମ ନ ହେଲେ ଦିନେ ଦୁଇଦିନ ପରେ ଚାଲ ଉପଖଣ୍ଡ ଚିକିତ୍ସାଳୟ । ସୁମତି ପାଖରେ ପଇସା ନଥାଏ; ବିଶ୍ୱାସ ମଧ୍ୟ ନୁହେଁ । ତାକୁ ବା କୋଉ ଲାଜ ଲାଗୁଛି ଏକୁଟିଆ ଯିବାକୁ । ଅଟକେଇବାକୁ ମଣିଷ ନାହାନ୍ତି । ଅଟକି ଯିବାକୁ କାମ ନାହିଁ । ଘରର ବା ଆଖପାଖର କେହି ଅସୁସ୍ଥ ହେଲେ ତାକୁ ଡାକ୍ତରଖାନା ନେଇଯିବା ଦ୍ୱାରା ସହର ଘୁରିଆସିବାର ସୁଯୋଗ ମିଳେ । ସକାଳ ଛଅଟା ମଧ୍ୟରେ ଗାଧୋଇ ପାଧୋଇ ରାଜ୍ୟ ପରିବହନ ନିଗମର ଏକମାତ୍ର ବସ୍‌କୁ ଅପେକ୍ଷା କରିବାକୁ ହୁଏ । ଖୁନ୍ଦାଖୁନ୍ଦି ବସ୍ ମଧ୍ୟରେ କେବେ ଜାଗାଟିଏ ମିଳିଗଲେ ଭାଗ୍ୟର କଥା । ପନ୍ଦର କିଲୋମିଟର ରାସ୍ତାକୁ ଅଧଘଣ୍ଟାର ସମୟ । ପହଞ୍ଚିବା ବେଳକୁ ଉପସ୍ଥିତ ଡାକ୍ତର ଆସି ନଥିବେ । ମେହେନ୍ତର ବା ମେହେନ୍ତରାଣୀ ଝାଡୁ କରୁ କରୁ ଅପରିଷ୍କାରର କାରଣ ରୋଗୀମାନଙ୍କୁ ନାନା ଅଶ୍ଳୀଳ ଭାଷାରେ ଗାଳି କରୁଥିବେ । ଠେଲା ଗାଡ଼ିରେ ବରା ପିଆଜି ଦୋକାନୀ ରୋଗୀ ଆତ୍ମୀୟମାନଙ୍କୁ ଜଳଖିଆ ବଢ଼ାଉ ବଢ଼ାଉ ପଇସା ଗଣୁଥିବ । ବାରଣ୍ଡାରେ କୁନ୍ଥାଉଥିବେ ଦୂର ଦୂରାନ୍ତରରୁ ଆସିଥିବା ରୋଗୀ । ପଡ଼ିଆରେ ଶୁଖୁଥିବ ଓଦା ଲୁଗା । ସୁମତି ନୂଆ ସହଯାତ୍ରୀ ରୋଗୀ ବା ରୋଗିଣୀଠାରୁ ପଇସା ନେଇ ଜଳଖିଆ ଆଣିଦେବା ପୂର୍ବରୁ ଦୋକାନ ସାମ୍ନାରେ ଠିଆ ହୋଇ କିଛି ଖାଇଦେଇଥିବ ।

ଡାକ୍ତର ଆସି ବସିବା ମାତ୍ରେ ଆଗ ପରୀକ୍ଷା କରାଇବା ନିମନ୍ତେ ପ୍ରତିଯୋଗିତା । ସୁମତିର ତରତର ନଥାଏ । ଟିକିଏ ଖାଲି ହୋଇଗଲେ ରୋଗୀର ଲକ୍ଷଣକୁ ସିଏ ବନେଇ ଚୁନେଇ କହେ । ରୋଗୀର ମଳମୂତ୍ର ନେଇଯାଏ ପରୀକ୍ଷାଗାରକୁ । ଔଷଧ କିଣିଆଣେ ଦୋକାନରୁ । ବେଳେବେଳେ ବଳକା ପଇସାରୁ ଦୁଇଚାରି ଟଙ୍କା ରଖିଦିଏ । ଫେରିବାର ଥିଲେ ପୁଣି ସେଇ ବସ୍‌କୁ ଅପେକ୍ଷା । ବସ୍ ଚାଲିଯାଇଥିଲେ ଟ୍ରେକର ବା ଟେମ୍ପୋର ସାହାଯ୍ୟ ନେବାକୁ ହୁଏ । ରୋଗୀ ରହିବା ଦରକାର ହେଲେ ଏକା ଫେରେ ସୁମତି ।

ଦିନେ କଥାଟା ଅଡୁଆ ହୋଇଗଲା । ଫେରି ଆସିବାକୁ ଥିବା ରୋଗୀଟିର ଅବସ୍ଥା ଭଲ ନଥିବାରୁ ଡାକ୍ତର ଓ୍ୱାର୍ଡରେ ଭର୍ତ୍ତି କରିଦେବାକୁ ପରାମର୍ଶ ଦେଲେ, ଅଥଚ ଦୂର ସମ୍ପର୍କୀୟ ଆତ୍ମୀୟମାନେ ରହିବାକୁ ପ୍ରସ୍ତୁତ ନଥିଲେ । ସୁମତିକୁ ପଚାରିଲେ ସମସ୍ତେ । ତା' ଉପରେ ନିର୍ଭର କରୁଛି ରୋଗୀର ଜୀବନ । କରୁଣାସିକ୍ତ ସୁମତି ରାଜି ହୋଇଗଲା ।

ଘରକୁ ଖବର ପଠାଇ ରହିଗଲା ସୁମତି ପୁରା ଗୋଟେ ସପ୍ତାହ । ସେଇ ଦିନଠୁ ଡାକ୍ତରଖାନାରେ ସେବା ଶୁଶ୍ରୂଷା ପାଇଁ ମଣିଷର ଆବଶ୍ୟକତା ପଡ଼ିଲେ ଖୋଜାପଡ଼େ ସୁମତିକୁ । ଖାଇବା ପିଇବା ବାଦ୍ ପାରିଶ୍ରମିକ । ଏଥିରେ କୌଣସି ଧରାବନ୍ଧା ନିୟମ ନଥିଲେ ମଧ୍ୟ ସମସ୍ତେ ଦିଅନ୍ତି । ମାସରେ ଥରେ ଦୁଇଥର ଯାଇ ଡାକ୍ତର, ନର୍ସ, ଆଟେଣ୍ଡାଣ୍ଟ, ଝାଡୁଦାର, ପ୍ରୟୋଗଶାଳା ସହାୟକମାନଙ୍କର ଚିହ୍ନା ହୋଇଗଲା ଏବଂ ଗାଆଁ ଲୋକଙ୍କର ଛୋଟ ମୋଟ କାମ ମଧ୍ୟ କରାଇପାରିଲା ।

ସାଙ୍ଗମାନେ ବାହାହୋଇ ଯାଇଥିବାରୁ ତାକୁ ଏକୁଟିଆ ଭଲ ଲାଗେନି ଗାଆଁରେ । କାମ ନଥିଲେ ଚାଲି ଚାଲି ବା ବସ୍‌ରେ ପହଞ୍ଚିଯାଏ ଡାକ୍ତରଖାନାରେ । ସହାୟକ ନଥିବା ରୋଗୀମାନଙ୍କ ଆଡକୁ ବଢ଼ାଇଦିଏ ତାର ଆଶ୍ୱାସନାମୟ ହାତ । ଔଷଧ ଖୁଆଇଦେବା, ପାଣି ଗରମ କରିବା ଡାକ୍ତର ବା ନର୍ସଙ୍କ ଠାରୁ ଔଷଧ ଖୁଆଇବାର ମାତ୍ରା ବୁଝି ଆସିବା, ଆବଶ୍ୟକ ପଡ଼ିଲେ ହାତଗୋଡ଼ ଆଉଁସିଦେବା ପାଇଁ ତା'ର ସଙ୍କୋଚ ନଥାଏ । ଇଚ୍ଛା ହେଲେ ସନ୍ଧ୍ୟା ପର୍ଯ୍ୟନ୍ତ ରହେ ନଚେତ୍ ସଅଳ ଫେରିଆସେ । ଏମିତି ଏକା ଏକା ସହରକୁ ଯିବା, ଡାକ୍ତରଖାନାର ଅଜଣାରୋଗୀଙ୍କ କାମ କରିବା ଏବଂ ଢେର ଦିନଯାଏ ବାହା ନହେବା ଅନେକଙ୍କ ଆଖିକୁ ଭଲ ଦେଖାଯାଉନଥିଲା । ସେମାନଙ୍କ ଭାଷାରେ ସିଏ ଗୋଟେ ବଜାର ବୁଲି ହୋଇଯାଇଥିଲା । ଏ ଖବର ତା' କାନରେ ପଡୁଥିଲା କି ନା କେହି କହି ପାରନ୍ତିନି । ତେବେ ପଡୁଥିଲେ ବି ସେ ଜମା ଖାତିର କରନ୍ତାନି । ସମବୟସ୍କ ପୁଅପିଲାମାନଙ୍କ ମଧ୍ୟରୁ ଥରେ ଦୁଇଥର ଯେଉଁମାନେ ପଚାରି ଦେଇଥିଲେ, "କିଲୋ ସୁମା, କେବେ ବାହା ହେବୁ ?", ସେ ଚଟାପଟ୍ ଉତ୍ତର ଦେଇଦିଏ "ତମେ ଯେବେ ରାଜି ହେବ ।" ପଛରେ ଭୁଟ୍‌ଭାଟ୍ ହେଲେ ବି ସାମ୍ନାରେ କେହି କିଛି କହିବାକୁ ସାହସ କରନ୍ତିନି । ତା' ସାଙ୍ଗରେ କଥାଭାଷା ହେଲେ ବିପଦରେ ପଡ଼ିବାର ସମ୍ଭାବନା ଅଛି । ଯେପରି ପଡ଼ିଥିଲା ଶତପଥୀ କନେଷ୍ଟବଳ ।

ଶତପଥୀ କହେ ସେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଡାକ୍ତରଖାନାରେ ଆରୋଗ୍ୟ ହେଉଥିବା ସମୟରେ ସୁମା ଟଙ୍କା ମାଗିଲା । ତା' ପାଖରେ ଟଙ୍କା ନଥିଲା । ଦେବା ସମ୍ଭବପର ହେଲାନି, ତା'ପରେ ସୁମାର ଅଭିଯୋଗ । ଧର୍ଷଣ ଏବଂ ବଳାତ୍କାରର । ଶତପଥୀକୁ

ଯଦି କେବେ କେହି ଚାକିରି ଚାଲିଯିବାର କାରଣ ପଚାରେ ସେ କହିଚାଲେ, "ସେଇ ଖାନିକି ସୁମା କୁଆଡୁ କୁଆଡୁ ପେଟରେ ପିଲାଧରି ମୋ ମୁଣ୍ଡରେ ଅଠା ବୋଳିଲା । ହଜୁର ଧର୍ମାବତାର ମୋ କଥା ଜମା ଶୁଣିଲେନି । ମୁଁ ବ୍ରାହ୍ମଣପିଲା, ଚାକିରି ଛାଡ଼ିଦେଲି ।'

ଶତପଥୀ ବକ୍ତବ୍ୟରେ କେତେ ସତ୍ୟ ଆଉ କେତେ ମିଥ୍ୟା ଅଛି- ଏକଥା କେହି ଖୋଜିବାର ପ୍ରୟାସ କରିନି । କିନ୍ତୁ ଏକଥା ସତ ଗତ ଦଶବର୍ଷ ଧରି ସେ ଆଉ ଚାକିରିକୁ ଯାଉନି । ମଇଳା ଧୋତି ପଞ୍ଜାବି ପିନ୍ଧି ପର୍ବପର୍ବାଣୀ, ବିବାହ ବ୍ରତ ଇତ୍ୟାଦି କାର୍ଯ୍ୟୋପଲକ୍ଷେ ପୂଜାକର୍ମ ସଂପାଦନ କରିବାକୁ ଯିବାର ଲୋକେ ଦେଖନ୍ତି । ଭୂତ, ପ୍ରେତ ଦେବଦେବୀଙ୍କ ସହ ତା' କଥୋପକଥନର ବାହାପିଆ ଗପ ଶୁଣନ୍ତି । ସୁମତି ଯୋଗୁଁ ଲୋକଟାର ଚାକିରି ଚାଲିଗଲା ବୋଲି ସହାନୁଭୂତି ପ୍ରକାଶ କରନ୍ତି । ତେବେ ଚାକିରି ଥିବା ଅବସ୍ଥାରେ ଶତପଥୀ ଥରେ ଅସୁସ୍ଥ ହୋଇ ଡାକ୍ତରଖାନାରେ ଭର୍ତ୍ତି ହୋଇଥିଲା । ତା'ର ଦେଖାଶୁଣା ଦାୟିତ୍ୱ ନେବାପାଇଁ ସୁମତିକୁ ଅନୁରୋଧ କରିଥିଲା ତା' ସ୍ତ୍ରୀ । ସୁସ୍ଥ ହୋଇ ଆସିବା ପରେ ଶତପଥୀ ଘରକୁ ଯିବା ଆସିବା କରୁଥିଲା ସୁମତି । ହଠାତ୍ ଦିନେ ତା'ର ଆସିବା ବନ୍ଦ ହୋଇଗଲା ଏବଂ ତିନି ଚାରି ମାସ ପର୍ଯ୍ୟନ୍ତ ଗାଆଁରେ ତାକୁ କେହି ଦେଖିଲେନି । ତା'ର ଫେରି ଆସିବା ବେଳକୁ ଶତପଥୀର କୋର୍ଟ୍ ଦୌଡ଼ା ଆରମ୍ଭ ହୋଇଗଲାଣି । ସେତେବେଳେ ସେ ସୁମାକଥା ମୋଟେ ମନେ ପକାଇ ପାରୁନଥିଲା ବା ଦେଖିଲେ କଥାଭାଷା କରୁନଥିଲା । ସେଇ ଦିନଠୁ ସୁମତି ଶତପଥୀ ଘରକୁ ଯାଇନି । ତେଣୁ ସମସ୍ତେ ଧରିନେଇଛନ୍ତି ସୁମା ସଙ୍ଗେ ଅସଦ୍ ଆଚରଣ ଯୋଗୁଁ ଶତପଥୀ ଚାକିରି ହରାଇଛି । ସୁମା ଥାନାରେ ଏତଲା ଦେଇଥିବ । କନେଷ୍ଟବଳ ବିରୁଦ୍ଧରେ ଏତଲାକୁ ଥାନାବାବୁ ଗ୍ରହଣ ନ କଲେ ସିଧା ଚାଲିଯାଇଥିବ ବିଚାରପତିଙ୍କ କାମରାକୁ ନ ହେଲେ ଘରକୁ । ତା'ର ବା କୋଉ ଡର ଅଛି ? ବଖାଣିଥିବ ଶତପଥୀ କନେଷ୍ଟବଳର ଧର୍ଷଣ ଚେଷ୍ଟା ବା ଧର୍ଷଣ । କେତେ ଦିନ ସେଇ ବିଚାର ଚାଲିଥିବ କେହି ଜାଣନ୍ତିନି । କିନ୍ତୁ ଶତପଥୀ ପ୍ରଥମେ ନିଲମ୍ବିତ ହୋଇ ବୋଧହୁଏ କେଶ୍‌ରେ ହାରିଯାଇଛି । ତେଣୁ ତାକୁ ଚାକିରିରୁ ବହିଷ୍କାର କରାଯାଇଛି । ସୁମତିକୁ କାହିଁକି ଏଥିପାଇଁ ଦାୟୀ କରାଯିବ ? ସିଏତ ଯାହା ସତ ତାହା କହିଛି ।

ଏବେ ତାକୁ କେହି ଡାକ୍ତରଖାନା ଯିବା କିମ୍ବା ବାହା ପୁଆଣିରେ କାମ ସମ୍ଭାଳିବା ପାଇଁ ଡାକିବାକୁ ସାହସ କରୁନାହାନ୍ତି । ସମସ୍ତଙ୍କୁ ମୁହେଁ ମୁହେଁ ଜବାବ ଦେଇପାରୁଥିବା ଓ ଟିକିଏ ଭୁଲ୍ ଦେଖିଲେ ସଂଶୋଧନ କରିବାକୁ ଉପଦେଶ ବା ଆଦେଶ ଦେଇ ପାରୁଥିବା ସୁମାକୁ ସମସ୍ତଙ୍କର ଡର । କିଏ କିଏ କହନ୍ତି ତା'ର ସାମାନ୍ୟ ହାତ ଦୋଷ ଅଛି । ସୁବିଧା ପାଇଲେ ଛୋଟ ଛୋଟ ଜିନିଷ ଉଠାଇ ନିଏ । କିନ୍ତୁ କେହି ନିର୍ଦ୍ଦିଷ୍ଟ ଭାବେ କହି

ପାରନ୍ତିନି କାହାଘରୁ କୋଉ ଜିନିଷ ସୁମା ଉଠାଇ ନେଇଛି । ନିତିଦିନିଆ କାମ ପାଣି ଅଣା, ବାସନ ମଜା, ଗୁହାଳରୁ ଗୋବର ସଫା କରିବା ପାଇଁ ଗାଆଁରେ ଲୋକର ଅନେକ ଆବଶ୍ୟକତା ଅଛି । ସବୁଦିନ ଅସହାୟ ରୋଗୀମାନଙ୍କୁ ଡାକ୍ତରଖାନାକୁ ନିଆଯାଉଛି । ବିବାହ ବ୍ରତ ଇତ୍ୟାଦିରେ ସାହାଯ୍ୟ କରିବା ପାଇଁ ଲୋକମାନଙ୍କର ଆବଶ୍ୟକତା ପଡୁଛି । ଅଥଚ ସୁମାକୁ କେହି ଡାକୁ ନାହାନ୍ତି । ଯେତେସବୁ ଉଡା ଖବର ତା' ଜୀବନକୁ ବିପର୍ଯ୍ୟସ୍ତ କରି ଦେଉଛି । ବାପାଙ୍କର ଦାରିଦ୍ର୍ୟ, ଜୁଆଖେଳ ପ୍ରତି ମୋହ ଓ ସର୍ବୋପରି କନ୍ୟାର ଭବିଷ୍ୟତ ପ୍ରତି ଉଦାସୀନତା ଯୋଗୁଁ ସୁମା ଅଭିଆଡା ରହିଗଲା । କେଇଟା ଲୋକଙ୍କର ଅପପ୍ରଚାର ତାର ଅର୍ଦ୍ଧଭୁକ୍ତ ବା ଅଭୁକ୍ତ ରହିବାର ମୂଳ କାରଣ ।

ଆସନ୍ତା କାଲିକୁ ଅନିଶ୍ଚିତତା ମଧ୍ୟରେ ଦେଖୁଥିବା ସୁମାକୁ ଟିକିଏ ଆଶ୍ୱସ୍ତି ଲାଗିଲା, ଯେଉଁଦିନ ସାନବାବୁ ଗାଆଁକୁ ଆସି ତାକୁ ଡକାଇ ପଠାଇଲେ । ତାକୁ ଭାରି ଡର ଲାଗୁଥିଲା । ଗାଆଁରେ ତାଙ୍କୁ ସମସ୍ତେ ଡରନ୍ତି । ଗାଆଁର କ୍ଷେତ, ଖମାର, ତୋଟା ପୋଖରୀ- ସବୁଠି ତାଙ୍କ ପୂର୍ବପୁରୁଷଙ୍କ ମାଲିକାନାର ସ୍ୱାକ୍ଷର । ପ୍ରାକୃତିକ ସଂଘାତରେ ଶୀଳାଖଣ୍ଡ କ୍ଷୟହେବା ଭଳି ସମସ୍ତ ବିଭବ ଧୋଇ ହୋଇଯାଇଛି ବା କର୍ଦ୍ଦମାକ୍ତ ମୃତ୍ତିକାରେ ପୋତି ହୋଇପଡ଼ିଛି । କୋଉ ପୁରୁଷର ରାଧାକୃଷ୍ଣ ମଠ ସନ୍ଧ୍ୟା ଧୂପର ଘଣ୍ଟ ଲୋକମାନେ ଶୁଣୁନାହାନ୍ତି । ଝୁଲଣ ଯାତ୍ରାର ଆଲୋକ ସଜ୍ଜା ପାଇଁ ଟଙ୍କା ଦେଉନାହାନ୍ତି ସାନବାବୁ । ତାଙ୍କ ମତରେ ଏସବୁ ବାଜେ ଖର୍ଚ୍ଚ । ନିଜ ମାଲିକାନାରେ ଥିବା ଜମିଗୁଡ଼ା ପଡ଼ିଆ ପଡ଼ି ଘାସ ଉଠିଛି । ଏକ ବହୁରାଷ୍ଟ୍ରୀୟ କମ୍ପାନୀର କ୍ଷେତ୍ରୀୟ ଅଧିକାରୀ ଭାବେ ଗୋଟେ ସହରରୁ ଆଉ ଗୋଟେ ସହର ବୁଲୁଥାନ୍ତି ମାସସାରା । ବଡ଼ବାବୁ ସନ୍ନ୍ୟାସୀ ହୋଇ ଚାଲିଯିବା ପୂର୍ବରୁ ବୁଝୁଥିଲେ ଗାଁ ସମ୍ପତ୍ତିର ଖବର । ସାନବାବୁ ଏସବୁ ପ୍ରତି ବୀତସ୍ପୃହ । ବାରବୁଲା ମଣିଷ । ପ୍ରଥମ ପତ୍ନୀ ଅଧ୍ୟାପିକା ଥିଲେ । ଏମିତି ବୁଲା ଚାକିରି ଛାଡ଼ିଦେବା ପାଇଁ କେତେ ପ୍ରବର୍ତ୍ତାଉଥିଲେ । ପିଲାପିଲି ହେବା ପୂର୍ବରୁ ଗୋଡ଼ ହାତ ଫୁଲିଯାଇଥିଲା । ନିଃଶ୍ୱାସପ୍ରଶ୍ୱାସ ନେବାକୁ କଷ୍ଟ ହେଉଥିଲା । ବଡ଼ବାବୁ ତାଙ୍କୁ ଅନେକ ଥର ନେଇ ଡାକ୍ତରଖାନାରେ ଦେଖାଇବାର ବ୍ୟବସ୍ଥା କରିଛନ୍ତି । ଛୁଆ ଜନ୍ମ ହେବାବେଳକୁ ଡାକ୍ତରଖାନାରେ ଭର୍ତ୍ତି ହୋଇଥିଲେ । ଛୁଆଟା ନୂତନ ସୂର୍ଯ୍ୟୋଦୟ ଦେଖିପାରିଲାନି; ସାନ ମା' ମଧ୍ୟ ଆଉ ଘରକୁ ଫେରିଲେନି । ସାନବାବୁ ଜୟପୁରରୁ ଆସି ଖବର ପାଇଲେ ବିଦ୍ୟୁତ ଚୁଲାରେ ଶବ ସଂସ୍କାର କରାଯାଇଛି ।

ଦ୍ୱିତୀୟ ଥର ବଂଶରକ୍ଷା କରିବା ପାଇଁ ସାନବାବୁ ଯାହା ସାଙ୍ଗରେ ନିବନ୍ଧିତ ହେଲେ ସିଏ ଗାଆଁଠାରୁ ଅନେକ ଦୂର ଗୋଟେ ଛୋଟ ସହରରେ ଛୋଟ ଛୋଟ ପିଲାମାନଙ୍କୁ ପାଠ ପଢାଉଥିଲେ । ପୁଅଟିଏ ହେବାପରେ ତାକୁ ଧରି ସିଏ ରହୁଥିଲେ

ସେଇ ସହରରେ । ସାନବାବୁ ଗାଆଁକୁ ଆସନ୍ତି ଏକା ଏକା । ଘର ଜଗାରଖା କରୁଥିବା ଏବଂ ଗୋଟିଏ ପାଖରେ ପିଲାଛୁଆ ସହ ରହୁଥିବା ଇନ୍ଦ୍ରମଣି ନିଜ ରୋଷେଇରୁ ଆଣି ଖାଇବାକୁ ଦେବାରେ ମୋଟେ ମନା କରନ୍ତାନି । ସାନବାବୁ ବାରଣ କରନ୍ତି । ଡକାଇ ପଠାନ୍ତି ସୁମାକୁ । ଘର ଝାଡୁକରିବା, ଗାଧୋଇବାକୁ ପାଣିଦେବା ଆଉ କେବେକେବେ ସାନବାବୁଙ୍କ ଇଚ୍ଛା ହେଲେ ରୋଷେଇ କାମଟା ମଧ୍ୟ କରିବାକୁ ପଡ଼େ ସୁମାକୁ । ବାସନ ମାଜି ଫେରି ଆସିବା ବେଳକୁ ଇନ୍ଦ୍ରମଣି ଘରର ଆଲୁଅ ଲିଭି ଯାଇଥାଏ । ଗାଆଁଦାଣ୍ଡରେ କଦବା କେମିତି ଲୋକ ବୁଲୁଥାନ୍ତି ନଚେତ୍ କେବଳ କୁକୁର ଭୁକା ଆଉ ତାରାଙ୍କ ରୋଷଣୀ । ମଠ ବେଢ଼ାରେ ଓସ୍ତ ଗଛରେ ବାଦୁଡ଼ିମାନଙ୍କର ଆହାର ଅନ୍ୱେଷଣ । ଘରକୁ ଫେରି ଆସିବା ବେଳକୁ ମାଆ କାଶର ଲହର ଘରର ଚାରି କାନ୍ଥରେ ପ୍ରତିଧ୍ୱନିତ ହେଉଥାଏ । ଶୋଇ ପଡ଼ିଥିବା ସାନଭାଇ ନିକଟରେ ବସିଥାଏ ସାନ ଭଉଣୀଟା । ସେ ହିଁ କେବଳ ସୁମା ଦୁଃଖରେ ଦରଦୀ, ଅପାଟା ବାହାହୋଇ ପାରିଲାନି ।

ଗୋଟିଏ କନ୍ଥାରେ ଲଗାଲଗି ହୋଇ ଶୋଇଥିବା କୁମା ଯେତେବେଳେ ପ୍ରସ୍ତାବ ଦିଏ, "ଅପା, ତୋର ତ ଏତେ ଜଣାଶୁଣା, କୋଉଠି ବାହାହୋଇ ପଡୁନୁ ।" ସୁମା ଉତ୍ତର ଦିଏ, "ତୋ କାମଟା ଆଗ ଶେଷ କରେ ।" ପାଞ୍ଚବର୍ଷ ବ୍ୟବଧାନର ସାନ ଭଉଣୀକୁ ସେ କିପରି ବୁଝାନ୍ତା ଯେ ଗୋଟେ ନିର୍ଦ୍ଧନ, ଯୌବନ ଅତିକ୍ରାନ୍ତ ଝିଅ ସହିତ ବାହାଘର ଖେଳଖେଳିବାକୁ ଅନେକ ଆଗେଇ ଆସିବେ, ସତ ସତିକା କିନ୍ତୁ ଜଣେ ବି ବାହାରିବେନି । ଏକଥା କେବେ କହିବା ଆବଶ୍ୟକ ମଣିନି । ସମସ୍ତ ସାମର୍ଥ୍ୟ ବିନିଯୋଗ କରି କୁମାପାଇଁ ଖୋଜିଛି ବର । ସଫଳ ହୋଇଛି । ବାପାଙ୍କୁ ବୁଝାଇ ଖଣ୍ଡେ ଜମି ବିକ୍ରିକରି ଦେଇଛି । ସାନବାବୁ, ଗାଆଁର ଅନ୍ୟ ମାନ୍ୟଗଣ୍ୟ ଲୋକମାନଙ୍କୁ ନିମନ୍ତ୍ରଣ କରିଛି । କିଏ ଆସିଛି, କିଏ ଆସିନାହାନ୍ତି ।

କୁମା ବାହାହୋଇଯାଇଛି । ମଝିରେ କେବେ କେମିତି ଆସେ । ତା' ସ୍ୱାମୀ କଳ ତନ୍ତରେ କାମ କରେ ।

ଭଉଣୀକୁ ବାହା କରାଇ ପାରିଥିବାର ସନ୍ତୋଷରୁ କିଛି ସାନ୍ତ୍ୱନା ମିଳେ । ସିଏ ଝଗଡ଼ା କରିପାରିଥାଆନ୍ତା । ଏଥିରେ କି ଲାଭ । ଅସୁବିଧାର ସମ୍ମୁଖୀନ ହେଉଥିବା ମଣିଷ ପ୍ରତି ଦରଦୀ ସ୍ୱର କ୍ୱଚିତ୍ ଶୁଣାଯାଏ । ପିମ୍ପୁଡ଼ି ଆକାରର ଘଟଣାକୁ ହାତୀର ସ୍ୱରୂପ ଦେବାକୁ ଲୋକର ଅଭାବ ହୁଏନା । ଭଉଣୀ ବାହାଘର ବେଳେ ପାଞ୍ଚ ହଜାର ଟଙ୍କା ସାହାଯ୍ୟ କରିଥିଲେ ସାନବାବୁ । ଭୋଜି ଖାଇବାକୁ ଆସିଥିବା ପଡ଼ୋଶୀମାନେ ଟିପ୍ପଣୀ ଦେଇଥିଲେ । କ୍ଷୀରିଟାରେ ଚିନି କମ୍ ପଡ଼ିଥିଲା । ରାନ୍ଧୁଣିଆଟାକୁ ଜମା ରାନ୍ଧି ଆସେନା । ତରକାରୀଟା ପୋଡ଼ି ଦେଇଥିଲା । ଛିଞ୍ଚଡା ନ କରି ମାଛ କରିଥିଲେ ଭଲ

ହୋଇଥାନ୍ତା । ଡାଲିଟା ଖାଲି ପାଣି । ସୁମା କିଛି କହି ପାରୁନଥିଲା । କଣ୍ଟା ଫୁଟୁଥିବା ପାଦ ବୁଝିପାରେ ଯନ୍ତ୍ରଣା କେତେ ମର୍ମାନ୍ତିକ ।

ସାନବାବୁ ଡକାଇ ପଠାଇଛନ୍ତି । ଉଲ୍ଲସି ଉଠିଲା ସୁମା । ନିଶ୍ଚୟ କିଛି ଦିନ ରହିବେ ।'ସକାଳଠାରୁ ରାତି ପର୍ଯ୍ୟନ୍ତ ତା'ର କାମ ଲାଗିବ । ସେ କିନ୍ତୁ ସାଙ୍ଗେ ସାଙ୍ଗେ ଯାଇ ପାରିଲାନି । ମାଆ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ । ଭାତ ଫୁଟୁଛି । ଚୁଲିର ରଡ ନିଆଁ ଦିକ୍ ଦିକ୍ କରୁଛି । ମାଆ ସଦାବେଳେ ପୋଖରୀରୁ ଡେରିରେ ଫେରେ । ଶ୍ୱାସ ସାଙ୍ଗକୁ ଝାଡ଼ା ସଫା ହୁଏନା । ଅଗତ୍ୟା ଅପେକ୍ଷା କରିବାକୁ ହେବ ।

ମାଆ ପହଞ୍ଚିବା ବେଳକୁ ପଢ଼ିଶାଘର ପିଲାଙ୍କର ସନ୍ଧ୍ୟା ପ୍ରାର୍ଥନା ଶୁଣାଗଲାଣି । "ଭାତ ବସିଛି ଓହ୍ଲାଇ ଦବୁ । ସାନବାବୁ ଡକାଇଛନ୍ତି ମୁଁ ଯାଉଛି ।" ମାଆର ଅନୁମତି "ହଁ, ଯା" ଶୁଣିବାକୁ ତାର ଧୈର୍ଯ୍ୟ ନଥିଲା । ରୋଗ ଦାରିଦ୍ର୍ୟ, ଅସହାୟତା ମଧ୍ୟରେ ସନ୍ତୁଳିତ ହେଉଥିବା ମାଆ ପକ୍ଷେ କିଛି କହିବା ଆବଶ୍ୟକ ନଥିଲା । ସୁମା କୌଣସି ଅନୁମତିକୁ କେବେ ଅପେକ୍ଷା କରିନି ।

ସୁମା ପହଞ୍ଚିବା ବେଳକୁ ଚୌକି ଉପରେ ବସି ଖଟ ଉପରେ ଗୋଡ଼ ରଖିଥିଲେ ସାନବାବୁ । ତାଙ୍କୁ କିଛି ନ ପଚାରି ଘର ଝାଡୁ କରିବାରେ ଲାଗିଗଲା ସୁମା । ତା'ପରେ ପାଣିଅଣା । ରୋଷେଇ ଆରମ୍ଭ ନିମନ୍ତେ ପ୍ରସ୍ତୁତ ହେବା ବେଳକୁ ବାରଣ କଲେ ସାନବାବୁ ।

"ଆଜି ତେବେ କଣ ଖାଇବ ?" -"ପଚାରିଲା ସୁମା । କିଛି ଖାଇବିନି ।" ସେ ଆଉ କିଛି କହିଲେନି । ଚୁପ୍‌ଚାପ ରହିବା ତାଙ୍କ ପ୍ରକୃତିର ପରିପନ୍ଥୀ । ବାହାର ପିଣ୍ଡାରେ ଅପେକ୍ଷା କଲା ସୁମା ।

କେତେ ସମୟ ପରେ କହିଲେ, "ଗୋଟେ କଥା କହିବାର ଥିଲା ।" ବିଜୁଳି ବତୀର ସୀମିତ ଆଲୋକ ତାଙ୍କୁ ଅସହ୍ୟ ବୋଧ ହେଉଥିଲା । ସିଏ ଆଖି ବୁଜି ବସିଥିଲେ । ସୁମାର ପାଦଶବ୍ଦରେ ସେ ସଜାଗ ହେଲେନି । ପ୍ରାୟ ପାଞ୍ଚମିନିଟ୍ ପରେ ତାଙ୍କ ଆଖି ଖୋଲିଲା । ଖୁବ୍ ଧୀର ସ୍ୱରରେ କହୁଥିଲେ, "ଖୁବ୍ ହତାଶ ଲାଗୁଛି ସୁମା ।"

"ହତାଶ ଲାଗୁଛି କାହିଁକି ?" ଆଶ୍ଚର୍ଯ୍ୟ ହୋଇ ଚାହିଁଲା ସୁମା । "ତୁ ଯାହାକୁ କହୁଛୁ ସାନ ମା', ମାନେ ମୋର ଦ୍ୱିତୀୟ ସ୍ତ୍ରୀ- ରହିଛି ଯାଇ କୋଉ ଜଙ୍ଗଲ ଭିତରେ । ଉଚା ଉଚା ଶାଳବଣ ଭିତରେ ସ୍କୁଲଟା । ଦିନରେ ଗୋଟେ ବସ୍ ଯାଏ । ଦେହ ଖରାପ ହେଲେ ଡାକ୍ତର ପନ୍ଦର କିଲୋମିଟର ଦୂରରେ । ଋତୁକାଳୀନ ପରିବା ଯାହା ମିଳେ । ସେଠାରେ ଦୁଇ ଚାରିଦିନ ରହିଲେ ମ୍ୟାଲେରିଆ ଜୀବାଣୁ ଧରି ଆସିବାଟା ନିଶ୍ଚିତ । ସେଇ ଜାଗା ଛାଡ଼ି ସେ ଆସିବାକୁ ନାରାଜ । ମୋତେ ଗଣ୍ଡେ ରୋଷେଇ କରି ଦେବାକୁ

କେହି ନାହିଁ । ପରିଦର୍ଶନରେ ସହରରୁ ସହର ବୁଲିବା ବେଳେ ହୋଟେଲରେ ଖିଆ । ଘରକୁ ଆସିଲେ ତୋର ନଚେତ୍ ଇନ୍ଦ୍ରମଣୀର ଦୟାହେଲେ ଗଣ୍ଡେ ଖାଇବାକୁ ମିଳିବ ।”

ସାନବାବୁ ଚୁପ୍ ହେଲେ । ଅପେକ୍ଷା କଲେ ସୁମାର ପ୍ରତିକ୍ରିୟାକୁ । ସିଏ କିଛି କହିଲାନି ।

ପୁଣି ପାଟି ଖୋଲିଲେ ସାନବାବୁ, “ସେଇ ଜିଦ୍‌ଖୋର ସ୍ତ୍ରୀ ଲୋକଟା ଜଙ୍ଗଲ ମଝିରେ କି ଆନନ୍ଦ ପାଉଛି ଯେ ପୁଅଟାକୁ ଧରି ପଡ଼ିଛି । ସ୍ୱେଚ୍ଛାସେବୀ ସଂସ୍ଥା ଯେତିକି ଟଙ୍କା ଦେଉଛି ସେତକ ତାକୁ ନିଅଣ୍ଟ । ଭାବୁଛି ଛାଡପତ୍ର ଦେଇଦେବି ।”

ଚମକି ପଡ଼ିଲା ସୁମା, ନା ସାନବାବୁ ନା । ତମେ ତ ବୁଲୁଛ କୁଆଡେ, ସାନ ମା କିପରି ଏକୁଟିଆ ରହନ୍ତେ ଗାଁରେ । ସେଠି ପିଲାଙ୍କୁ ପାଠ ପଢ଼ାଉଛନ୍ତି ? ଦିନଗୁଡ଼ା କଟିଯାଉଛି । ଟଙ୍କା କ'ଣ ବଡ଼ କଥା ? ନିଜ ଗୋଡ଼ରେ ଠିଆ ହେବାର ଗୋଟେ ଆତ୍ମସନ୍ତୋଷ ତାଙ୍କୁ ମିଳୁଛି । ତାଙ୍କୁ ଛାଡପତ୍ର ଦେଇଦେଲେ ଟିକିପୁଅଟି କାହାକୁ ବାପା ବୋଲି ଚିହ୍ନାଇବ ଯେ ।”

“ଆଉ ମୁଁ । ମୁଁ ଗାଆଁ ଛାଡ଼ି ଆଉ କୁଆଡ଼େ ଯିବି ? ଯେତେବେଳେ ଆସିବ ଡକାଇ ପଠାଇବ । ମୁଁ କ'ଣ ଦିନ କେଇଟା ସମ୍ଭାଳି ପାରିବିନି ।”

ସାନ ବାବୁ ସ୍ତବ୍ଧ । କେତେ କଲ୍ୟାଣମୟୀ ସମ୍ବେଦନଶୀଳ ନାରୀର ସତ୍ତା ଲୁଚିଛି ସୁମା ନିକଟରେ ।

“ତୁ ଆଜି ଯା ସୁମା । ଯେତେବେଳେ ଆବଶ୍ୟକ ପଡ଼ିବ ଡକାଇ ପଠାଇବି ।”

ସୁମା ଅପେକ୍ଷା କଲାନି । ବାହାରିଗଲା ଅନ୍ଧାରେ ଅନ୍ଧାରେ ।



# ପାପ

ଗାୟତ୍ରୀ ଷ୍ଟିଲ୍ ଗରାଟା ଭୂମି ଉପରେ ରଖି ଟ୍ୟାପ୍‌ଟା ଖୋଲି ଦେଲା । ସବୁଦିନ ପରି ସରୁଧାରରେ ପାଣି ଆସୁଛି । ପୂର୍ଣ୍ଣ ହେବାକୁ କେତେ ସମୟ ଲାଗିବ କିଏ ଜାଣିଛି । ଏମିତି ଧୀରେ ଧୀରେ ଆସି ପୂରା ବନ୍ଦ ହୋଇଯାଇପାରେ । ସେ ଆଜି ଏକା । ଅନ୍ୟ ସ୍ତ୍ରୀ ବା ଝିଅମାନେ ଆସିଲେ ଗରାଟିମାନ ଥୋଇ ଗପ ଜମାଇବେ ଏବଂ କ୍ରମକୁ ଅପେକ୍ଷା କରିବେ କିମ୍ବା ଗରା ଓଲଟାଇ ତା' ଉପରେ ବସିବେ । ଖାପଛଡ଼ା ସିନେମା ବା ସିରିୟାଲ ସମ୍ବନ୍ଧରେ  ଆଲୋଚନା କରିବେ । ଗାୟତ୍ରୀ ବେଳେବେଳେ ସେମାନଙ୍କ ସଂଗେ ଯୋଗ ଦିଏ ଏବଂ ନିଜ ପସନ୍ଦର ଅଭିନେତାଙ୍କ ଅଭିନୟର ଆଲୋଚନା କରେ । ଅନ୍ୟମାନଙ୍କ ପସନ୍ଦ ଅପସନ୍ଦକୁ ତା'ର ନଜର ନଥାଏ । କ'ଣ ବା ଆବଶ୍ୟକ । ଅନ୍ୟମାନେ କ'ଣ ତା'ର ଇଚ୍ଛା ଅନିଚ୍ଛାକୁ ସମ୍ମାନ ଦିଅନ୍ତି ? ସିଏ ଅନୁଭବ କରି ପାରେନି । ମୁନ୍‌ସିପାଲ୍‌ଟି ସାର୍ବଜନୀନ ପାଣି ଟ୍ୟାପ୍ ଚାରିପଟେ ଥିବା ସିମେଣ୍ଟ୍ ଚଉତରା ଫାଟିଗଲାଣି । ଛିଟିକା ପାଣି ପଡ଼ି ଚତୁଃପାର୍ଶ୍ୱ ଜମି ଅରାକରେ ଦୁବଘାସ ଉଠିଛି, ପାଖରେ ଯାଇଥିବା କଚ୍ଚା ନର୍ଦ୍ଦମା ହୁଡ଼ାରେ ମଧ୍ୟ । ଆଉ ସବୁଆଡ ଶୁଖିଲା ଟାଇଁ ଟାଇଁ । ଉଦ୍ଭିଦ-ରହିତ ନିରସ ଶୁଷ୍କ ଟାଙ୍ଗରା ଭୂଇଁ ଦେଖିଲେ ବିରକ୍ତି ଲାଗେ ଗାୟତ୍ରୀକୁ । ବିରକ୍ତି ଲାଗେ ନର୍ଦ୍ଦମା ଧାରରେ  ମଳତ୍ୟାଗ କରୁଥିବା ପିଲାମାନଙ୍କୁ ଦେଖି । ପରିବେଶ ପ୍ରକୃତି ସମ୍ବନ୍ଧରେ ତା'ର କୌଣସି ଧାରଣା ନାହିଁ । ତେବେ ବି ଅପରିଷ୍କାର ଲାଗେ । ଭାଗ ଭାଗ ହୋଇ ରଖାଯାଇଥିବା ଶୁଖୁଆ, ମନ୍ଦାମନ୍ଦା ହୋଇ ଉଡୁଥିବା ମାଛି, ଭକ୍ ଭକ୍ କରି ଧୂଆଁ ଛାଡୁଥିବା ସ୍ତ୍ରୀଲୋକ ଆଉ ପାଦରେ ସ୍ଥିରତା ରଖୁନଥିବା ମଦ୍ୟପମାନଙ୍କ ପ୍ରତି ତା'ର ଗୋଟେ ଜନ୍ମଗତ ବିତୃଷ୍ଣା ।

ରାସ୍ତାଟାରେ ଏବେ ଗହଳି ନାହିଁ । ଆଉ ଖୁବ୍ ବେଶିରେ ଘଣ୍ଟାଏ ମଧ୍ୟରେ ଭିଡ଼ ଜମିଯିବ ଟ୍ୟାପ୍ ପାଖରେ । ଚଳଚଞ୍ଚଳ ହୋଇଯିବ ରାସ୍ତା । ଲରି, ବସ୍, ମଟରସାଇକେଲ ସବୁ ଦୌଡ଼ିବେ ଅବିଶ୍ରାନ୍ତ ଗତିରେ । ଆକାଶ ଆଚ୍ଛାଦିତ ହୋଇଯିବ ଧୂଳି ଏବଂ ଧୂମ୍ରପଟଳ ମଧ୍ୟରେ । ସଫାଇ କର୍ମଚାରୀମାନେ ବାଉଁଶ ଲଗା ଝାଡୁ ଧରି ରାସ୍ତାରୁ ଅଳିଆ ସଫା ନାଆଁରେ ଧୂଳି ଉଡ଼ାଇବେ । ଆଉ ଦଳେ ନର୍ଦ୍ଦମା ସଫା ଆଳନେଇ ଆବର୍ଜନା ସବୁ

ରାସ୍ତା ଧାରରେ ଜମା କରିବେ ଏବଂ ସେଥିରୁ ଗନ୍ଧ ବାହାରିବ । ଆବର୍ଜନା ସାଉଁଟୁଥିବା ପିଲାଗୁଡ଼ାକ ଲୁହାରଡ ଖଣ୍ଡକରେ ବିଦାରି ପକାଇବେ ଗଦାସବୁ । ହାଟକୁ ଯିବାପାଇଁ ବୋଝ ଧରି ରାସ୍ତା ଉପରକୁ ଉଠିଆସିବେ ସ୍ତ୍ରୀଲୋକମାନେ । କେତେବେଳେ ହସ ଖୁସିର କଥାବାର୍ତ୍ତା ତ କେତେବେଳେ କଳିତକରାଳ । କୁସନ୍‌ଛିନ୍ନ, ପରଦା ରହିତ ନାତିଦୀର୍ଘ ବସ୍ କିରୋସିନି ଧୂଆଁ ଛାଡ଼ି ଆସି ପହଞ୍ଚିଯିବ । ଉଠିଯିବେ ଦଳକଯାକ ସ୍ତ୍ରୀ ଘାଟିପାର ହାଟକୁ ଯିବା ନିମନ୍ତେ ।

ପାହାଡ଼ ସେପଟୁ ନାଲି ସୂର୍ଯ୍ୟ ଅଧା ଉଠିଲାଣି । ଗରା ପୂର୍ଣ୍ଣ ହୋଇନାହିଁ । ରାସ୍ତା ଧାରରେ ଛିଡ଼ା ହୋଇଥିବା ଘରର ପାରାପେଟ ଆଡକୁ ଚାହିଁଲା ଗାୟତ୍ରୀ । ସେଇଟା ସଦାବେଳେ ନିଃସଙ୍ଗତାକୁ ଆବୋରି ବସିଥାଏ । ମାତ୍ର ଚାରିମାସ ହେଲା ସମୀରଣ ଆସି ରହିଛନ୍ତି । ସକାଳୁ ସକାଳୁ ଉଠି ବାରଣ୍ଡାରେ ଏପଟୁ ସେପଟ ହେଉଥାନ୍ତି ବା ନିର୍ଜନ ରାସ୍ତା ଆଡକୁ ଚାହିଁଥାନ୍ତି । କୌଣସି ଏକ ଅନାମଧେୟ କମ୍ପାନୀର ସ୍ଥାନୀୟ ପ୍ରତିନିଧି ।

ଟ୍ୟାପ୍ ଚାରିପଟେ ଗରାମାନ ଜମା ହେଲାଣି । ଗାୟତ୍ରୀ କାଖକୁ ଗରା ଉଠାଇଲା । ପିଚୁ ରାସ୍ତା ଉପରେ ଦୁଇଶହ ପାହୁଣ୍ଡ ଗଲାପରେ ଫାଟକ ଖୋଲି ହତା ଭିତରକୁ ପଶିଲା । ଲୁହା ଚଦରର ସୁଉଚ୍ଚ କବାଟ କେଁ କରି ଶବ୍ଦ କଲା । ବସ୍ତା ବୋହୁଥିବା ମୂଲିଆମାନେ ମୁଣ୍ଡଟେକି ଚାହିଁଲେ । ଭାର ବୋହି ବୋହି କେତେଜଣଙ୍କର ଅଣ୍ଟା ନଇଁଗଲାଣି । ବଡ଼ି ଭୋରରୁ ଆସି କାମରେ ଲାଗିଛନ୍ତି । ଟ୍ରକ୍ ଟ୍ରକ୍ ଚାଉଳ ସରକାରୀ ଖାଦ୍ୟ ଗୋଦାମକୁ ଯିବ । ଦିନ ରାତି କାମ ଚାଲିଛି । ଧାନ ଅମଳ ପରେ ତିନିମାସ ପ୍ରବଳ କାମ । ମାଲିକ, ମୂଲିଆ, ଡ୍ରାଇଭର, ହେଲପର କାହାକୁ ଫୁରୁସତ ମିଳେନା । ବିହାରୀ ମାଲିକର ଜମା ଚାଉଳ ଦେବାକୁ ଇଚ୍ଛା ନଥାଏ । କିନ୍ତୁ ସରକାରୀ କଳକୁ ଡର । କ'ଣ ଗୋଟାଏ ତ୍ରୁଟି ଦର୍ଶାଇ ଲାଇସେନ୍‌ସ ବାତିଲ କରିଦେବେ । ଲକ୍ଷ ଲକ୍ଷ ଟଙ୍କାର ଲାଭ । ତେବେ ମୂଲିଆ, ଡ୍ରାଇଭର, ହେଲ୍‌ପର, ଗୁମାସ୍ତାମାନଙ୍କୁ ଟଙ୍କାଦେବା ବେଳକୁ ହାଲୁକ ଶୁଖିଗଲା ଭଳି ବ୍ୟବହାର କରେ । ନିର୍ଦ୍ଧାରିତ ଏବଂ ପ୍ରଚଳିତ ହାରଠାରୁ ଅନେକ କମ୍ ଦିଏ । ସେଇତକ ଦେବାପାଇଁ କାଳକ୍ଷେପଣ ନୀତି । ଗାୟତ୍ରୀର ସ୍ୱାମୀ ନରେନ୍ଦ୍ର ରାତ୍ରି ଜଗୁଆଳି । ଛୁଟି ନାହିଁ । ଆବଶ୍ୟକ ପଡ଼ିଲେ ମିଲ୍ ଡ୍ରାଇଭର ବା ଟ୍ରକର ହେଲ୍‌ପର । ନିହାତି ଜରୁରୀ ସମୟରେ ଅନ୍ୟ ଜଣକୁ ଲଗାଇ ଛୁଟି ନିଏ ।

କାର୍ଯ୍ୟାଳୟ ବନ୍ଦ । ନରେନ୍ଦ୍ର ଅଫିସ ସାମନାରେ ଠିଆହେବାକଥା । ଦେଖାନାହିଁ । ମାଲିକ ହନୁମାନ ପ୍ରସାଦର ପୁଅ ମିଲ୍ ସାମ୍ନାରେ ଟହଲ ମାରୁଛି । ତା' ମୁଣ୍ଡ ବାଳ ଓ ସାର୍ଟ ପ୍ୟାଣ୍ଟ ଉପରେ ଧୂସର ଆସ୍ତରଣ । ଗାୟତ୍ରୀ ପାଦ ଶବ୍ଦରେ ମିଲ୍ ଆଡୁ ମୁହଁ

ଫେରାଇ ତା' ଆଡକୁ ଚାହିଁଲା ସିଏ । ତା' ଦୃଷ୍ଟିରେ ଯାନ୍ତବ କ୍ଷୁଧା । ଗାୟତ୍ରୀ ଶଙ୍କି ଗଲାନି । ଟୋକାଟା ଆଖିରେ ଆଖି ମିଳାଇ ହସିବାକୁ ଚେଷ୍ଟା କରୁଛି । କ୍ଷୁଧାରେ ଆଉଟୁ ପାଉଟୁ ହୋଇଗଲା ପରି ଆହାରକୁ ଆମନ୍ତ୍ରଣ କରୁଛି । ଗାୟତ୍ରୀର କିଛି ଭାବାନ୍ତର ହେଲାନି । ଗରାରୁ ପାଣି ଚହଲି ଗୋଟିଏ ପାଖ ଶାଢ଼ୀ ବ୍ଲାଉଜ ଅଧାଅଧି ଓଦା ହୋଇଗଲାଣି । ସେ ନରେନ୍ଦ୍ର ଯାଦବକୁ ଖୋଜୁଥିଲା । ତା'ର ଦେଖାନାହିଁ । କୋଉଠି ଛପି କରି ଗଞ୍ଜେଇ ଟାଣୁଛି ନା ମାଲିକ ଘରେ ତା' ଦରବୁଢ଼ୀ ମେଦବୁହଳା ସ୍ତ୍ରୀର ଆଜ୍ଞା ପାଳନ କରିବାକୁ ଚାହିଁ ବସିଛି ! ଏଇ ସମୟଟାରେ ସିଏ ମିଲ୍ ସାମ୍ନାରେ ଟହଲ ମାରୁଥାଏ ବା ଫୁଲ ଦିଟା କୋଉଠୁ ସଂଗ୍ରହ କରି ମାଲିକ ଘରେ ଦେଇଆସେ ।

ଘରକୁ ଯାଇଥିବ ଅବା । ନରେନ୍ଦ୍ର କିନ୍ତୁ ଘର ଭିତରେ କେଉଁଠି ଦେଖାଯାଉ ନଥିଲା । ଶାଶୁ ଦାଣ୍ଡଘରର ଗୋଟେ କଣରେ ଶୋଇଛନ୍ତି । ଖରା ପଡ଼ିଲେ ଉଠନ୍ତି ! ସିଏ ଅସୁସ୍ଥତାକୁ ଆବୋରି ନେଇଛନ୍ତି ନା ଅସୁସ୍ଥତା ତାଙ୍କର ସହଚରୀ ହୋଇଯାଇଛି ବୁଝିପାରେନା ଗାୟତ୍ରୀ । ବାରମ୍ବାର ଡାକ୍ତରଖାନାକୁ ନେବାକୁ ପଡ଼େ । କେବେ ଆଖିକୁ ସ୍ପଷ୍ଟ ଦେଖା ନ ଯିବାର ତ କେବେ କ୍ଷୁଧା କମିଯିବାର ଅଭିଯୋଗ । ଅନେକ ଥର ରକ୍ତ ପରୀକ୍ଷା କରାଗଲାଣି ମଧୁମେହର ସନ୍ଦେହ ଦୂର କରିବା ପାଇଁ । ଗାୟତ୍ରୀ ନିଜେ ନେଇ ଯାଏ । ଚାଲି ଚାଲି ବା ରିକ୍ସାରେ । ଆଖି ଗୋଟିକରେ ପକ୍ୱ ପରଳ । ଅପରେସନ୍ କରାଇବାକୁ ନାରାଜ । ଦୃଷ୍ଟିଶକ୍ତି କ୍ଷୀଣ । କିନ୍ତୁ ଶ୍ରବଣ ଶକ୍ତି ପ୍ରଖର । ନରେନ୍ଦ୍ର ଛଡ଼ା ଅନ୍ୟ କାହା ସଙ୍ଗରେ କଥାବାର୍ତ୍ତା ନିମ୍ନ ସ୍ୱରରେ କରୁଥିଲେ ମଧ୍ୟ ଶୁଣି ପାରନ୍ତି ଏବଂ କହନ୍ତି, "କାହା ସଙ୍ଗେ କଥା ହେଉଛୁ କି ବୋହୂ ?" ଗାୟତ୍ରୀ ଚିଡ଼ି ଯାଏ । ମନେ ମନେ କହେ ଘୋଡ଼ା ମଦୁଆ ପୁଅ ପଛେ କାଠଗଡ଼ ଭଳି ଗଡୁଥାଉ, ବୋହୂ କାହା ସଙ୍ଗେ କଥା କହିବନି । ପାଣି ଗରା ରଖି ବାସନ ସବୁ କୁଣ୍ଡ ମୂଳେ ଜମା କଲା । ଝିଅ ଉଠିବା ପୂର୍ବରୁ କାମ ଶେଷ କରିବାକୁ ହେବ । ନଚେତ୍ ଗାଧୋଇ ମଧ୍ୟ ଦେବନି । ଗାଧୁଆଘର ନାହିଁ । କୂଅ ମୂଳେ ସବୁ ସ୍ତ୍ରୀ ଲୋକ ଗାଧାନ୍ତି । ବାସନ, ଲୁଗାପଟା ସଫା କରାଯାଏ । ରୋଷେଇ କରି ହୁଏନା କୂଅ ପାଣିରେ । ଡାଲି ସିଝେନା ଖାରି ଲାଗେ । ବେଳେବେଳେ ସମୀରଣ କୂଅମୂଳକୁ ଆସନ୍ତି । ତାଙ୍କର ଗାଧୁଆଘର ଅଛି । ଖଳାର ଶେଷ ମୁଣ୍ଡରେ କୂଅ । ସେଇ ଖଳାରେ ଏକା ଏକା ବୁଲୁଥାନ୍ତି । ହନୁମାନ ପ୍ରସାଦର ପୁଅ ତାଙ୍କୁ ଦେଖିଲେ ମିଲ୍ ଭିତରକୁ ପଶିଯାଏ । ନରେନ୍ଦ୍ରକୁ କେବେ କେମିତି କିଛି ଜିନିଷ ଆଣିବାକୁ ବରାଦ କରନ୍ତି । ନରେନ୍ଦ୍ର ନଥିଲେ ଗାୟତ୍ରୀକୁ ପଚାରନ୍ତି । ପ୍ରଥମେ ପ୍ରଥମେ ସଙ୍କୋଚ ଲାଗୁଥିଲା । ଏବେ ଲାଗେନା ।

କୂଅ ନିକଟରେ ଗାଧୋଉଥିବା ସମୟରେ ନରେନ୍ଦ୍ର ଘରକୁ ଫେରୁଥିବାର

ଦେଖିପାରିଲା ଗାୟତ୍ରୀ । ତା'ର ଘରକୁ ପ୍ରବେଶ କରିବା ପରେ ପରେ ଶାଶୁଙ୍କର ପାଟି ଶୁଣାଗଲା ଆଉ ଝିଅର କାନ୍ଦଣା । ଝିଅ ନିଦରୁ ଉଠି ପଡ଼ିଲା ବୋଧହୁଏ ଏବଂ ତାକୁ ନଦେଖି କାନ୍ଦିବା ଆରମ୍ଭ କରିଦେଲା । ନରେନ୍ଦ୍ର ଘର ମଧ୍ୟରେ ନିର୍ବିକାର ଭାବରେ ବସିଥିବ କିମ୍ବା ଶୋଇବାକୁ ଚେଷ୍ଟା କରୁଥିବ । ଝିଅକୁ ତୁନି କରାଇବାକୁ ତା'ର କେବେବି ଉଦ୍ୟମ ନଥାଏ । ତା'ର ଯେ ସେଇଟା କର୍ତ୍ତବ୍ୟର ଅଂଶବିଶେଷ ଏହା ବୁଝେନା । ପୋଷାକ ପରିଚ୍ଛଦରେ ଯତ୍ନ ନାହିଁ । ଖାଦ୍ୟପେୟର ରୁଚି ନାହିଁ । ଘର ଏବଂ ସ୍ତ୍ରୀର ଆବଶ୍ୟକତା ବୁଝିବାକୁ ଆଗ୍ରହ ନାହିଁ ।

ଶୀଘ୍ର ଗାଧୁଆ ଶେଷ କରି ଫେରି ଆସିଲା ଗାୟତ୍ରୀ । ଶୋଇବାଘର ଖଟ ଉପରେ ଗଡ଼ି ପଡ଼ିଛି ନରେନ୍ଦ୍ର । ଅନେକ ଗୁଡ଼ାଏ କାମ କରି କ୍ଲାନ୍ତ ହୋଇ ପଡ଼ିଥିବା ମଣିଷ ପରି ଭିଡ଼ିମୋଡ଼ି ହେଉଛି ଏବଂ ଘୁଙ୍ଗୁଡ଼ି ମାରୁଛି । ଝିଅ ବସିଛି ପାଖରେ । ଶାଢ଼ୀ ପାଲଟିବା ପରେ କାନ୍ଥରେ ଟଙ୍ଗା ଯାଇଥିବା ଦର୍ପଣ ସାମ୍ନାରେ ଠିଆ ହେଲା ଗାୟତ୍ରୀ । ତା' ଗୋରା ଦେହରେ ତଥାପି ଟୋପା ଟୋପା ପାଣି ଲାଗି ରହିଛି । ମୁହଁ ଉପରକୁ ଝୁଙ୍କି ପଡ଼ିଥିବା ଓଦା ବାଳକୁ ସଜାଡ଼ିବା ଅବସରରେ ତା' ଦେହ ଶୀତେଇ ଗଲା । ଦର୍ପଣ ଆଡୁ ମୁହଁ ଫେରାଇ ନରେନ୍ଦ୍ର ଆଡକୁ ଚାହିଁଲା ସିଏ । ଚକ୍ଷୁ ବୁଜି ପଡ଼ିଛି ମଣିଷଟା । ରାତିଯାକ ଶୋଇ ଶୋଇ ପୁଣି ଶୋଇବାର ପ୍ରଚେଷ୍ଟା । ବାହାନା କରୁନି ତ ! ହିମସିକ୍ତ, ନିରାସକ୍ତ । ଟିକିଏ ଉଷ୍ମତା ଅନୁଭବ କରୁନି । ସଦ୍ୟସ୍ନାତା ସ୍ତ୍ରୀ ନିକଟରେ ଛିଡ଼ା ହୋଇ ଟିକିଏ ସାନ୍ନିଧ୍ୟ ହେବାକୁ ଇଚ୍ଛା ହେଉନି ତା'ର ! ବାଳ ସଜାଡ଼ିବା ବାହାନାରେ ଦେହ, ମୁହଁରେ ହାତ ବୁଲାଇ ଆଣନ୍ତାନି ? ଗୋପନୀୟ କଥା କହିବାର ଅଭିନୟ କରି ମୁହଁଟା ଲମ୍ବାଇ ଆଣନ୍ତାନି ଗାଲ ଆଡ଼କୁ ? ଗାୟତ୍ରୀ ହାତ ଛାଟିଦେଲେ ଜୋର କରି କୁଣ୍ଢାଇ ଧରନ୍ତା । ଧେତ୍ କ'ଣ ଏସବୁ ଭାବୁଛି ସିଏ ! ନରେନ୍ଦ୍ର ନିକଟରୁ ଏସବୁ ଆଶା କରିବା ବୃଥା । ସ୍ପନ୍ଦନହୀନ ପ୍ରେମ ବିବର୍ଜିତ ମଣିଷଟା । ସକାଳ, ସନ୍ଧ୍ୟା, ଦ୍ୱିପ୍ରହର- କିଛି ବାଛବିଚାର ନାହିଁ । ପଇସା ପାଖରେ ଥିଲେ ମଦ ପିଇବାକୁ ଇଚ୍ଛାକରେ । ଦରମା ଯାହା ପାଇବା କଥା ଆଗତୁରା ନେଇ ଆସେ ଏବଂ ଭାଟିବାଲାକୁ ସୁଝି ଦିଏ । ଶଶୁରଙ୍କ ଅପମୃତ୍ୟୁ ଯୋଗୁଁ ଶାଶୁ ପାଉଥିବା ପେନ୍‌ସନ୍ ନଥିଲେ ଭାତ ମୁଠାଏ ମଧ୍ୟ ମିଳନ୍ତାନି ।

ଝିଅକୁ ବିଛଣାରୁ ଉଠାଇନେଇ ତା'ର ନିତ୍ୟକର୍ମ ଶେଷ କରିବାରେ ମନଦେଲା ଗାୟତ୍ରୀ । ତାକୁ ଟିକିଏ ସୁଷମ ଖାଦ୍ୟ ଦେବାକୁ ଇଚ୍ଛା ଥିଲେ ମଧ୍ୟ ସମ୍ଭବପର ହୁଏନା । ଭାତ ସାଙ୍ଗରେ ଡାଲି ଏବଂ ପରିବା ସିଝା ଦେଇ ବହୁ କଷ୍ଟରେ ଖୁଆଇବାକୁ ପଡ଼େ । ଦୋକାନରୁ ତେଜରାତି ଜିନିଷ ବାକିରେ ଆସେ । ଶାଶୁଙ୍କ ଔଷଧଟା ନିଶ୍ଚୟ କିଣିବାକୁ ପଡ଼େ । ଘର ଚଳାଇବା ନିମନ୍ତେ ତାଙ୍କୁ ବଞ୍ଚାଇ ରଖିବାକୁ ହେବ । ତାଙ୍କର ଫର୍ମାସୀ

ଶୁଣିବାକୁ ହେବ । ସବୁ ପ୍ରକାର ଭଲମନ୍ଦ ଖାଇବାକୁ ଇଚ୍ଛା । ପହଞ୍ଚାଇ ନପାରିଲେ ରୁଷନ୍ତି ବା ଚିତ୍କାର କରନ୍ତି । ନରେନ୍ଦ୍ର କିଛି ବୁଝେନା । ମଦ ଖାଇ ଦିନସାରା ଘୁମାଉଥାଏ ବା ରାତି ନ'ଟା ପରେ ହନୁମାନ ପ୍ରସାଦ ମିଲ୍ ଅଫିସରେ ଟ୍ରେଜେରୀ ବାକ୍ସକୁ ଜଗି ଟି.ଭି. ଦେଖୁଥାଏ ।

ଝିଅକୁ ଖୁଆଇ ସାରିବା ବେଳକୁ ଶାଶୁ ଦାନ୍ତ ଘଷୁଥିଲେ । ନରେନ୍ଦ୍ର ବାସି ବିଛଣାରେ ଘୁଙ୍ଗୁଡ଼ି ମାରୁଥିଲା । ଘର ସାରା ଭାସି ବୁଲୁଥିଲା ଦେଶୀ ମଦର କଡ଼ା ଗନ୍ଧ । କେତେ ସମୟ ପଡ଼ି ରହିବ ରହିଥାଉ । ଗାୟତ୍ରୀ ସେଆଡକୁ ଜମା ଚାହିଁବନି ଦିନ ଏଗାରଟା ପର୍ଯ୍ୟନ୍ତ । ରୋଷେଇ ଘରେ ଚୁଲି ଭିତରକୁ କାଠ ମୁହାଁଉ ମୁହାଁଉ ଝିଅ ଉପରେ ନଜର ରଖୁଥିଲା ସିଏ । ପୁରୁଣା କେତେଟା କଣ୍ଢେଇ, ବେଣ୍ଟ ଭାଙ୍ଗିଯାଇଥିବା ଚାମଚ, ନିବ୍ ନଥିବା ଦୁଇଟା କଲମ, ପୁରୁଣା ବ୍ୟାଟେରୀ ଧରି ଖେଳରେ ମଜ୍ଜି ଯାଇଥିଲା ସିଏ । କେତେବେଳେ ଗାୟତ୍ରୀ ନିକଟକୁ ଆସି ନିଆଁ ଆଡକୁ ହାତ ବଢ଼ାଉ ଥିଲା ତ କେତେବେଳେ ବାପା, ବାପା କହି ନରେନ୍ଦ୍ରକୁ ଉଠାଇବାକୁ ଚେଷ୍ଟା କରୁଥିଲା । ଜେଜୀମା ନିକଟକୁ ଯାଏନା । ତାଙ୍କର ବିରକ୍ତିକୁ ହଜମ କରିବା ଭଳି ଶକ୍ତି ନଥିଲା ତା'ର ।

ମଧ୍ୟାହ୍ନଭୋଜନ ଠିକ୍ ପୂର୍ବରୁ ନରେନ୍ଦ୍ର ଗାଧୋଇବା ପାଇଁ ଗଲା । ଖାଇବା ଥାଳି ନିକଟରେ ଭାତରେ ଗୋଡ଼ି, ପରିବା ଦରସିଝା ଓ ଡାଲିରେ ଅଧିକ ହଳଦୀ ପଡ଼ି ଯାଇଥିବାର ଅଭିଯୋଗ ବାଢ଼ିଲା । ଗାୟତ୍ରୀ କିଛି କହିଲାନି। ଏପରି ଅଭିଯୋଗ ନିତ୍ୟନୈମିତ୍ତିକ । ଅସଲ ସମସ୍ୟାଟି ହେଲା ଆମିଷ ନହେଲେ ନରେନ୍ଦ୍ରର ଭୋଜନ ରୁଚିକର ମନେ ହୁଏନା । ଏଥିପାଇଁ ସେ ଅନେକ ସମୟରେ ପାଟି କରୁଥିଲା ବା ଅଧା ଖିଆରୁ ଉଠି ଯାଉଥିଲା । ଗାୟତ୍ରୀକୁ ଭଲ ନଲାଗିଲେ ବି ସେ ଚୁପ୍ ରହୁଥିଲା । କିଛି କୈଫିୟତ ଦେବାର ଆବଶ୍ୟକତା ନଥିଲା । ସିଏ ଜାଣିଥିଲା, ପାଟି ଖୋଲିଲେ ନରେନ୍ଦ୍ର ରାଗିଯିବ ଏବଂ କ୍ରୋଧର ପରିପ୍ରକାଶ କଥାରେ ସୀମିତ ନରହି ଶାରୀରିକ ଯନ୍ତ୍ରଣା ଆଡ଼କୁ ପ୍ରସରିଯିବ । ତିନିଦିନତଳେ ଶାଶୁଙ୍କୁ ଡାକ୍ତରଖାନା ନେଇଯିବା ଏବଂ ତଦ୍‌ଜନିତ ରୋଷେଇରେ ବିଳମ୍ବ ହେବା ଯୋଗୁଁ ଗୋଟେ ଝଡ଼ ସୃଷ୍ଟି ହେଲା ଘରେ । ଗାୟତ୍ରୀ ଦେହର କିଛି ଅଂଶରେ ନୋଳା ଫାଟିଗଲା । ଏବେ ସୁଦ୍ଧା ସେଇ ଯନ୍ତ୍ରଣାର ଉପଶମ ହୋଇନି । ବେକ ନିକଟରେ କଳା ପଡ଼ିଯାଇଥିବା ଓ ରୁଗୁ ରୁଗୁ ହୋଇ ପୋଡୁଥିବା ଜାଗାଟି ଉପରେ ହାତ ବୁଲାଇ ଆଣିଲା ଗାୟତ୍ରୀ ।

ଶାଶୁଙ୍କୁ ଖାଇବାକୁ ଦେବା ଓ ନିଜେ ଖାଇସାରିବା ପରେ କିଛି ସମୟ ବିଶ୍ରାମ ନେବାକୁ ଚାହୁଁଥିଲା ସିଏ । ବିଶେଷ କଷ୍ଟକର ନହେଲେ ମଧ କାମସବୁ ଛିଣ୍ଡି ନଥିଲା ।

ରୋଷେଇ ପାଇଁ ସାର୍ବଜନୀନ ଟ୍ୟାପ୍‌ରୁ ପାଣି ଅଣା, ଘର ଝଡ଼ା, ବାସନ ମଜା, ଦୋକାନରୁ ଆବଶ୍ୟକୀୟ ସାମଗ୍ରୀ ସଂଗ୍ରହ ଆଦି କାମ ତାକୁ ହିଁ କରିବାକୁ ପଡୁଥିଲା । ଏହା ବାଦ୍ ଝିଅର ଯତ୍ନ, ଶାଶୁ ଏବଂ ନରେନ୍ଦ୍ରର ଫର୍ମାସୀ ।

ସଂଧ୍ୟା ହୋଇ ଆସୁଥିଲା । ବୁଡ଼ି ଯାଉଥିଲେ ସୂର୍ଯ୍ୟ । ସଦ୍ୟ ଅସ୍ତ୍ରାଘାତରୁ ଉଦ୍‌ଗତ ମେଞ୍ଚା ମେଞ୍ଚା ରକ୍ତ ପରି ଆକାଶ ଦେଖାଯାଉଥିଲା ଲାଲ୍। ଗାୟତ୍ରୀ ଭାବୁଥିଲା ତା' ଛାତିରେ ଗୋଟେ ତୀକ୍ଷ୍ଣ ଅସ୍ତ୍ର ବିଦ୍ଧ ହୋଇଯାଇଛି । ସେଥିରୁ ଲାଲ୍ ରକ୍ତ ପରିବର୍ତ୍ତେ ଏକ ଅବ୍ୟକ୍ତ ଯନ୍ତ୍ରଣା ନିର୍ଗତ ହୋଇଯିବାର ବାଟ ଖୋଜୁଛି । ବଣି ଦୁଇଟା ଖାଦ୍ୟ ଅନ୍ୱେଷଣରେ ଖଳାରେ ବୁଲୁଛନ୍ତି । ପାଖାପାଖି ଲାଗି ଯାଉଛନ୍ତି; କେତେବେଳେ ଆଗ, କେତେବେଳେ ପଛ । ନରେନ୍ଦ୍ର ଖାଇଦେଇ କୁଆଡ଼େ ବାହାରି ଯାଇଛି । ସଦାବେଳେ ବାହାରେ ବାହାରେ । ହନୁମାନ ବାଉଳ ଓ ଅଟାକଳର ଚବିଶ ଘଣ୍ଟିଆ ଅଲିଖିତ ଜଗୁଆଳି । ରାତି ନଅଟା ବେଳଠାରୁ ସକାଳ ନଅ'ଟା ପର୍ଯ୍ୟନ୍ତ କାମ କରିବା ପାଇଁ ତା'ର ଦରମା ଧାର୍ଯ୍ୟ କରାଯାଇଛି । ବାକି ସମୟଟା ବୁଲୁଥାଏ ମିଲ୍ ସାମ୍ନାରେ । କେବେ କେବେ ବାହାର ଲୋକମାନଙ୍କ ସଙ୍ଗେ ତାସ୍ ବା ଜୁଆ ଖେଳେ ।

ଗାୟତ୍ରୀ ରୋଷେଇ ଆରମ୍ଭ କରିବାକୁ ବାହାରିଲା । ତା'ର ବେଳେ ବେଳେ ବୁଲିଯିବାକୁ ଇଚ୍ଛା ହୁଏ । ଡାଲି ଚାଉଳ ଦୋକାନକୁ ମଝିରେ ମଝିରେ ଯାଏ । ମଧ୍ୟବୟସ୍କ ଦୋକାନୀଟା ତା' ବର୍ଦ୍ଧିତ ଉଦରକୁ ଦେଖାଇ ବସିଥାଏ। ପିନ୍ଧିଥିବା ପ୍ୟାଣ୍ଟ୍ ସାର୍ଟ ମଇଳା । ବଡ଼ ଅପରିଷ୍କାର ଲାଗେ ତା'ର ଚେହେରା । ପାଖରେ ଲୁଗା ଇସ୍ତ୍ରୀ କରୁଥିବା ଧୋବାଟା ନୂଆ ପୁରୁଣା ପୋଷାକ ମଧ୍ୟରେ ଏପରି ଲୁଚି ଯାଇଥାଏ ଯେ ମୁହଁଟା ସ୍ପଷ୍ଟ ଦେଖାଯାଏନା । ବୁଢ଼ା ଦରଜୀଟା କାମ ଛାଡ଼ି ମଝିରେ ମଝିରେ ଖଙ୍କାର ପକାଇବାକୁ ଆସେ । ଶ୍ୱାସ ଅଛି । ଅଣ୍ଟା ନଇଁଗଲାଣି । ବୁଢ଼ାଟାକୁ ଦେଖିଲେ ଦୟା ଲାଗେ । ଲାଗି ଲାଗି ରହିଥିବା ଏଇ ଦୋକାନ ତିନୋଟିର ନିୟମିତ ଗ୍ରାହକ ଗାୟତ୍ରୀ । କାମ ଥାଉ ବା ନଥାଉ, ଥରେ ନିଶ୍ଚୟ ଯାଏ ସେଇ ଦୋକାନ ନିକଟକୁ । ସେଠି ଠିଆ ହୋଇ ରାସ୍ତାରେ ଯାଉଥିବା ପୁଅଝିଅମାନଙ୍କୁ ଦେଖେ । ତା'ର ମଧ୍ୟ ଇଚ୍ଛା ହୁଏ ମନ୍ଦିର ବା ମାର୍କେଟ୍ ଆଡ଼େ ଯିବା ପାଇଁ । ମନ୍ଦିର ପାହାଚରେ ଘଡ଼ିଏ ବସିବା ପାଇଁ, କାଚ ଆଲମାରୀରେ ସଜା ହୋଇଥିବା ଜିନିଷସବୁ ଦେଖିବା ପାଇଁ । ଡର ଲାଗେ, ନରେନ୍ଦ୍ର ପାଟି କରିବ ।

ଶାଶୁ ଶୀଘ୍ର ଖାଇଦେଇ ଦାଣ୍ଡଘରେ ଶୋଇ ଯାଆନ୍ତି । ମିଲ୍‌ର ଘଣ୍ଟା ବାଜେ । ମଜୁରିଆମାନଙ୍କର ପାଟି ଶୁଣାଯାଏ । ହନୁମାନ ମିଲ୍‌ର ମାଲିକ, ଗୁମାସ୍ତା, ଡ୍ରାଇଭର, ହେଲପର ତରତର ହୁଅନ୍ତି ଘରକୁ ଯିବାପାଇଁ । ନରେନ୍ଦ୍ର ଯାଦବ କଲୋନୀରୁ ମିଲ୍ ଆଡକୁ ମୁହାଁଏ । ଗାୟତ୍ରୀ ଆଡକୁ ଚାହିଁବାକୁ ତା'ର ଖିଆଲ ନଥାଏ । ଝିଅ କେବେ ଚାହିଁଥାଏ ବା ଶୋଇ ପଡ଼ିଥାଏ ।

ଗୋଟିଏ ଦିନର କାମ ଶେଷ ହୋଇଯାଏ । ଗାୟତ୍ରୀର ଏହା ପରେ କେବଳ ଶୋଇଯିବା କଥା ସକାଳ ହେବା ପର୍ଯ୍ୟନ୍ତ । ଆଖିକୁ ନିଦ ଆସେନା । ପଡ଼ୋଶୀ ଧନୁର୍ଜୟ ପାଇକା ଓ ତା' ସ୍ତ୍ରୀ ରୂପମତୀର ପ୍ରେମାଳାପ ଅସ୍ପଷ୍ଟ ଶୁଣାଯାଏ । ଚୁଲିପାଖରେ ବସି ସେମାନେ ଗପ କରୁଥାନ୍ତି । ରୋଷେଇ ସହ ତାଳଦେଇ ଗପ ଚାଲିଥାଏ । ବିଛଣାରେ ପଡ଼ି ବାରଣ୍ଡାକୁ ଚାହେଁ ଗାୟତ୍ରୀ । ଉଠା ଚୁଲିରେ ତଥାପି ଦିକ୍ ଦିକ୍ କରୁଥାଏ କୋଇଲାର ନିଆଁ । ଶିଖାହୀନ ଉତ୍ତାପ ଆଚ୍ଛନ୍ନ କରି ରଖିଥାଏ ପରିବେଶ । କ୍ରମାଗତ ଅବହେଳା ଓ ଅତ୍ୟାଚାରର ଶିକାର ଗାୟତ୍ରୀ ଉତ୍ତେଜିତ ହୋଇପଡ଼େ । ଦେହର କ୍ଷୁଧା ଯୋଗୁଁ ଅତିଷ୍ଠ ଲାଗେ । ନରେନ୍ଦ୍ର ବୁଝେନା । ନିରୁତ୍ତାପ ମଣିଷଠୁ କ'ଣ ଅଧିକ ଆଶା କରାଯାଇପାରେ ? ଶାନ୍ତ ହେବାକୁ ଚେଷ୍ଟା କରେ ଗାୟତ୍ରୀ । ମନ ମଧ୍ୟକୁ ପଶିଆସେ ଅନେକ ଭାବନା, ଦୁର୍ଭାବନା ।

ଗାୟତ୍ରୀ ବାହାହୋଇ ଆସିଲା ପରେ ଖୁସି ହୋଇଯାଇଥିଲା ନରେନ୍ଦ୍ରକୁ ଦେଖି । ସୁନ୍ଦର ବଳିଷ୍ଠ ଚେହେରା ମଣିଷଟିର ଏକମାତ୍ର ସମ୍ବଳ ଥିଲା । ବାପାଙ୍କ ପ୍ରଚେଷ୍ଟାରେ ଘରୋଇ ପ୍ରତିଷ୍ଠାନରେ ଚାକିରି କରିବା ତା' ନିକଟରେ କଷ୍ଟକର ନଥିଲା । ଶାରିରୀକ ପରିଶ୍ରମ ପ୍ରତି ବିରାଗ ଯୋଗୁଁ କୌଣସିଠାରେ ସେ ଅଧିକ ଦିନ ରହିପାରିନଥିଲା । ଦିନସାରା ଘୁରିବା, ଗୁଡ଼ାଏ ଛତରାଙ୍କ ସାଙ୍ଗେ ମିଶି ତାସ୍ ବା ଲୁଡୁପାଲି ଖେଳିବା, ସୁବିଧା ମିଳିଲେ ମଦ ପିଇବା ଏବଂ ଘରକୁ ଫେରି ପରିବାରର ପ୍ରତ୍ୟେକ ଲୋକଙ୍କ ପ୍ରତି ଅସହିଷ୍ଣୁ ମନ୍ତବ୍ୟ ଦେବାରେ ତା'ର ସଙ୍କୋଚ ନଥିଲା । ଗାୟତ୍ରୀ ଉପଦେଶ ଦେବାକୁ ସାହସ କରିପାରୁନଥିଲା । ତା' ନିକଟକୁ ଶୋଇବାକୁ ଆସିଲା ବେଳେ ଆତଙ୍କିତ ହୋଇ ପଡୁଥିଲା ଗାୟତ୍ରୀ । ସେଠି ସ୍ନେହ ବା ପ୍ରେମର ସଙ୍କେତ ତ ନଥିଲା, ଅନ୍ଧାରରେ ଅମାନବୀୟ ଧର୍ଷଣର ଏକ ପ୍ରତିଛବି ତା' ମନ ମଧ୍ୟରେ ଆଙ୍କି ହୋଇ ଯାଉଥିଲା । ତାକୁ ଧର୍ଷଣ ଛଡ଼ା ଆଉ କ'ଣ ବା କୁହାଯାଇ ପାରିବ ? ଯେଉଁଠି ଆକର୍ଷଣ ନାହିଁ, ପ୍ରେମ ନାହିଁ ବା ପ୍ରତିଦାନ ନାହିଁ । ସେଇ ଅନିଚ୍ଛାକୃତ ପ୍ରକ୍ରିୟାର ପ୍ରତିଫଳ ଝିଅ । ବନ୍ୟା, ବାତ୍ୟା, ଭୂସ୍ଖଳନ ପରି ଦୈବ ଦୁର୍ବିପାକ, ହିଂସା, ଦ୍ୱେଷ, ରାଜନୈତିକ ତଥା ଧାର୍ମିକ ସଂକୀର୍ଣ୍ଣତା ସତ୍ତ୍ୱେ ପୃଥିବୀର ଦୈନନ୍ଦିନ ପ୍ରକ୍ରିୟାରେ କୌଣସି ପରିବର୍ତ୍ତନ ହେଉନଥିଲା । ଋତୁ ପରିବର୍ତ୍ତନ ଘଟୁଛି । ଗ୍ରହ ନକ୍ଷତ୍ରମାନଙ୍କ ଉଦୟ ଅସ୍ତରେ ପରିବର୍ତ୍ତନ ଘଟୁନି । ପ୍ରବଳ ଶକ୍ତି ସତ୍ତ୍ୱେ ଅନ୍ଧାରକୁ ପ୍ରତିହତ କରିପାରୁନି ଆଲୋକ । ପକ୍ଷୀମାନଙ୍କ କାକଳି ଶୁଣା ଯାଉଛି ସମସ୍ତ ଶବ୍ଦ ପ୍ରଦୂଷଣ ସତ୍ତ୍ୱେ । ନବଜାତ ଶିଶୁ କାନ୍ଦୁଛି । ମନ୍ଦ ମଳୟ ବହୁଛି ହୃଦୟର ଶୀତଳତାକୁ ଆବାହନ କରି । ଧେନୁ ବତ୍ସାକୁ କ୍ଷୀର ପିଆଉଛି ସର୍ବ ସମକ୍ଷରେ । ଫୁଲ ଫୁଟୁଛି । ମଧୁପ ଆହରଣ କରୁଛି ମଧୁ ।

ଗାୟତ୍ରୀ ନିଜକୁ ସାନ୍ତ୍ୱନା ଦେଲା ।

ଦୁଇଦିନ ପୂର୍ବରୁ ନରେନ୍ଦ୍ରର ଆଘାତ ଯେତିକି ବେଦନାଦାୟକ ନଥିଲା ତା'ଠାରୁ ବେଶି ମର୍ମାନ୍ତିକ ଥିଲା ତା'ର ଉପେକ୍ଷା । ଦେହ ଓ ମନସାରା ଚରିଯାଉଥିଲା ବିଷଧର ସରୀସୃପର ବିଷଭଳି ।

ଧନଞ୍ଜୟର ଆଉ ରୂପମତୀର ଆଳାପ ଶୁଣୁ ଶୁଣୁ ତାକୁ କେତେବେଳେ ନିଦ ଲାଗିଯାଇଥିଲା ଜାଣି ପାରିଲାନି ଗାୟତ୍ରୀ । ନିଦ ଭାଙ୍ଗିଲା ବେଳକୁ ଅନ୍ଧକାର ଆଚ୍ଛନ୍ନ କରି ରଖିଥିଲା ପୃଥିବୀକୁ, ଆକାଶକୁ । ଶରୀରକୁ ଆଚ୍ଛନ୍ନ କରିଥିଲା ସରୀସୃପୀୟ ତୃଷ୍ଣା । ନରେନ୍ଦ୍ରର ଉପେକ୍ଷା ତୀବ୍ରତର କରୁଥିଲା ସେଇ ତୃଷ୍ଣାକୁ । ଆତ୍ମା ନାମକ କୌଣସି ସୂକ୍ଷ୍ମ ବସ୍ତୁର ସତ୍ତା ସିଏ ଉପଲବ୍ଧି କରିପାରୁନଥିଲା । ସେ ମନେ କରୁଥିଲା ଏଇ ଦେହ ହିଁ ସତ୍ୟ । ସୁଖ, ସମ୍ଭୋଗ, ନିର୍ଯ୍ୟାତନାକୁ ତ ଉପଲବ୍ଧି କରି ହେଉଛି ।

ଝିଅ ଶୋଇଛି ଦେହଲଗ୍ନା ହୋଇ । ନରେନ୍ଦ୍ର ଗଡୁଥିବ ହନୁମାନ ରାଇସ୍ ଏଣ୍ଡ୍ ଫ୍ଲୋର୍ ମିଲ୍‌ସର ଟ୍ରେଜେରୀ ସାମନାରେ । ମଝିରେ ମଝିରେ ତା' ନିକଟରେ ଆଉ ଗୋଟେ ପିଲା ଶୋଇଥାଏ । ବିଶ୍ୱସ୍ତତା, ଆଜ୍ଞାବହତା ପ୍ରମାଣିତ କରିବା ପାଇଁ ନା ଯୌନ ଅକ୍ଷମତା ଘୋଡ଼ାଇବା ପାଇଁ ? ମଝିରେ ଉଠି ଆସୁନି ନରେନ୍ଦ୍ର, ଆଗେ ଆଗେ ଭାବୁଥିଲା ଗାୟତ୍ରୀ । ନିୟମିତ ନ ହେଲେ ମଧ୍ୟ କେବେ କେବେ ଝିଅକୁ ଦେଖିବା ବାହାନାରେ ଉଠି ଆସିବ । ଏବେ ଆଉ ଭାବୁନି । ନିଦ ଯୋଗୁଁ ବୁଝା ପଡୁନଥିଲା । ସଙ୍କୋଚ ଯୋଗୁଁ ଅଗ୍ରସର ହୋଇ ପାରୁନଥିଲା । ପାପବୋଧ ଗ୍ରାସ କରିବାର ଭୟ ଯୋଗୁଁ ମ୍ରିୟମାଣ ହୋଇ ପଡୁଥିଲା । ଶରୀରରେ ଯନ୍ତ୍ରଣା, ଦୁଇଦିନ ତଳ ନରେନ୍ଦ୍ର ଯନ୍ତ୍ରଣାର ଅବଶେଷ । ବ୍ୟଥା ଉପଶମକାରୀ ବଟିକା ଗୋଟେ ଦୁଇଟା ଖାଇଲେ ବି ହୁଅନ୍ତା । ପାଖରେ ନାହିଁ । ଡାକ୍ତରଖାନାକୁ ଯିବା ସମ୍ଭବପର ନୁହେଁ । ତା'ର ସମୀରଣ କଥା ମନେ ପଡ଼ିଲା । ନୂଆ ଯୋଗ ଦେଇଛି । ଗୋଟେ ଛୋଟ ଔଷଧ କମ୍ପାନୀରେ । ବିଶେଷ ଅଭିଜ୍ଞ ନ ହେଲେ ମଧ୍ୟ ଯନ୍ତ୍ରଣା ଉପଶମ କରିବାର ଉପଚାର ତାକୁ ନିଶ୍ଚୟ ମାଲୁମ ଥିବ ।

ବିଛଣାରେ ଉଠି ବସିଲା ଗାୟତ୍ରୀ ।

ଅନ୍ଧକାର ଅପସରି ଯାଉଛି । କାତି ଛଡ଼ା ସାପ ପରି ଏକ ନୂତନ ଉଦ୍ଭାସରେ ପୃଥିବୀ ଜାଗରିତ ହେଉଛି ।

ବର୍ତ୍ତମାନ ହିଁ ସର୍ବସ୍ୱ ।

ରୋଷେଇ ନିମନ୍ତେ ରାସ୍ତାଧାର ସାର୍ବଜନୀନ ଟ୍ୟାପ୍‌ରୁ ପାଣି ସଂଗ୍ରହ କରିବାକୁ ପଡ଼ିବ । ସେ ଅସୁସ୍ଥ ଅନୁଭବ କରୁଥିଲା । କିନ୍ତୁ ଆକାର ବା ସ୍ୱରୂପର ପରିସୀମା

ନିର୍ଣ୍ଣୟ କରିପାରୁ ନଥିଲା । ବାହାରକୁ ଆସି ସମୀରଣର ଛୋଟ ଘରଆଡକୁ ଚାହିଁଲା । ଶାଶୁଙ୍କ ଘୁଙ୍ଗୁଡ଼ି ଶୁଣାଯାଉଛି । ତାଙ୍କର ଉଠିବାର ସମ୍ଭାବନା ନାହିଁ । ଝିଅ ଅନେକ ଡେରିରେ ଉଠେ ।

ଖଳା ପାର ହୋଇ ପ୍ରଥମ ମହଲାରେ ରହୁଥିବା ସମୀରଣ ଘର ପାହାଚ ଚଢ଼ିଲା ଗାୟତ୍ରୀ । ତା' ଘର କାଚ ଝରକା ଦେଇ ଆଲୋକ ବିଛାଡ଼ି ହୋଇ ପଡୁଥିଲା ବାରଣ୍ଡାରେ । କରାଘାତ ପରେ ସମୀରଣ କବାଟ ଖୋଲିଦେଲା । ଗାୟତ୍ରୀକୁ ଦେଖି ସିଏ ଆଶ୍ଚର୍ଯ୍ୟ ହେଲାନି । ମଝିରେ ମଝିରେ ସିଏ ଆସେ ଏବଂ ଗୋଟେ ଦୁଇଟା ନମୁନା ଔଷଧ ନେଇଯାଏ । ତେବେ ଏତେ ସକାଳୁ ଆସେନା ।

ଘର ଭିତରକୁ ପଶୁ ପଶୁ କୌଣସି ଉପକ୍ରମ ବିନା ପଚାରିଲା, "କିଛି ଔଷଧ ବଟିକା ଅଛି ? ଦେହ ଖୁବ୍ ଦରଜ ହୋଇଛି ।" ମାଡ ବାଜି ନୀଳ ପଡ଼ିଯାଇଥିବା ହାତ ଓ ବେକ ଦେଖାଇଲା ଗାୟତ୍ରୀ । ଅନ୍ୟ ସମୟରେ ଦୂରରୁ ଥାଇ ସମୀରଣ ହୁଏତ ଦେଖିଥାନ୍ତା ଏବଂ ସମବେଦନା ଜଣାଇବା ସଙ୍ଗେ ସଙ୍ଗେ କିପରି ହେଲା ବୋଲି ପଚାରିଥାନ୍ତା । ପ୍ରାତଃକାଳର ସେଇ ନିର୍ଜନ ପରିବେଶ ଓ ଗାୟତ୍ରୀର ନିଃସଙ୍କୋଚ କଥାବାର୍ତ୍ତା ହୁଏତ ସମୀରଣ ମନରେ କିଛି ସାହସ ଆଣିଦେଲା । ଏକ ଦୁର୍ବାର ଆକର୍ଷଣରେ ହାତ ଏବଂ ବେକ ଆଉଁଷିବା ବେଳେ ନିଷିଦ୍ଧ ଇଲାକା ଆଡକୁ ତା' ଦୃଷ୍ଟି ପହଁରି ଯାଉଥିଲା ।

ସ୍ଥିର ଭାବରେ ଗାୟତ୍ରୀ ବସିଥିଲା ଏବଂ ତା'ର ନିଃଶ୍ୱାସ କ୍ରମେ କ୍ଷୀପ୍ରତର ହେଉଥିଲା...।

ଥରକର ଦୃଷ୍ଟି ବିନିମୟ ପରେ ସମୀରଣ ତା' ନିକଟରେ ବସି ପଡ଼ିଲା ।

କ୍ଲାନ୍ତ ଗାୟତ୍ରୀର ଶୋଇବାକୁ ଇଚ୍ଛା ହେଲା ।

ସମୀରଣ ସେହିପରି ବସିରହିଥାନ୍ତା ଯଦି ଗାୟତ୍ରୀ ସକାଳ ହାଟ ଗାଡ଼ି ଆଗମନର ଶବ୍ଦରେ ସତର୍କ ହୋଇନଥାନ୍ତା ।

ନମୁନା ଔଷଧ ଖୋଜିବାରେ ମନ ବିନିଯୋଗ କରିଥିବା ସମୀରଣ ଆଡକୁ ନ ଅନାଇ ତଳକୁ ଓହ୍ଲାଇଗଲା ଗାୟତ୍ରୀ । ତା' ଦେହର ଯନ୍ତ୍ରଣା ଅନେକ ପରିମାଣରେ କମିଯାଇଥିବାର ଅନୁଭବ କରୁଥିଲା । ଭାରାକ୍ରାନ୍ତ ମନକୁ ସାନ୍ତ୍ୱନା ଦେବାବେଳେ ସେ ଭାବୁଥିଲା, ପାପର ସଂଜ୍ଞା କ'ଣ ? ସମୀରଣ ନିକଟକୁ ଆସିବାଟା କ'ଣ ପାପକର୍ମର ନିକଟବର୍ତ୍ତୀ କୌଣସି ଘଟଣା ବା ଅଘଟଣ ହୋଇପାରେ ?

□□



**ଭିକାରୀ ପାଇକରାୟ**

ପିତା : ସ୍ୱର୍ଗତ ଜଗନ୍ନାଥ ପାଇକରାୟ
ମାତା : ସ୍ୱର୍ଗତ ଲାବଣ୍ୟମୟୀ ଦେବୀ
ଜନ୍ମସ୍ଥାନ : ଗ୍ରା: ଖଜୁରୀପଦା, ପୋ: ବାଣିଆ
ଭାୟା : କଳାପଥର, ଜି: କଟକ
ଶିକ୍ଷା : ଏମ୍.ବି.ବି.ଏସ୍, ଏମ୍.ଏସ୍.(ଶଲ୍ୟ ଚିକିତ୍ସା)

ଠିକଣା
ଏଚ୍.ଆଇ.ଜି ୩୩୧
କଳିଙ୍ଗ ବିହାର, କେ-୫
ପୋ: ପାତ୍ରପଡ଼ା, ଭୁବନେଶ୍ୱର-୭୫୧୦୧୯
ଫୋନ୍ : (୦୬୭୪) ୨୪୭୫୦୫୭
ମୋ : ୯୪୩୭୬୫୫୧୦୩

ଭିକାରୀ ପାଇକରାୟଙ୍କର 'ଋତୁ ବଦଳୁଛି' ଏକ ଅନନ୍ୟ ଗଳ୍ପ ସଂକଳନ । ସଂକଳନ ଆକାରରେ ପ୍ରକାଶ ପାଇବା ପୂର୍ବରୁ ଶ୍ରୀ ପାଇକରାୟଙ୍କର ଗଳ୍ପଗୁଡ଼ିକ ଭିନ୍ନ ଭିନ୍ନ ସମୟରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇସାରିଛି ଓ ପାଠକୀୟ ଆଦୃତି ଲାଭ କରିଛି । ଗଳ୍ପମାନଙ୍କରେ ପାଠକ ଏକ ସ୍ୱତନ୍ତ୍ର ଆବେଗ ଅନୁଭବ କରିପାରନ୍ତି । ଭିନ୍ନ ଶୈଳୀ ତଥା ବିଷୟବସ୍ତୁର ବିବିଧତା ଓ ଚରିତ୍ରମାନଙ୍କ ସହିତ ଅନ୍ତରଙ୍ଗତା ଗଳ୍ପଗୁଡ଼ିକର ବୈଶିଷ୍ଟ୍ୟ ।